# କାରାଗାରର କାହାଣୀ

ସୁରେନ୍ଦ୍ର ନାଥ ଦ୍ୱିବେଦୀ



# କାରାଗାରର କାହାଣୀ

ସୁରେନ୍ଦ୍ରନାଥ ଦ୍ୱିବେଦୀ



ଶ୍ରୀ ଦୁର୍ଗା ପବ୍ଲିକେଶନସ୍

# ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ

## ଲିଖିତ ପୁସ୍ତକାବଳୀ

୧– ମୋ ଜୀବନ ସଂଗ୍ରାମ — ଗ୍ରନ୍ଥ ମନ୍ଦିର, ବିନୋଦ ବିହାରୀ, କଟକ-୨

୨– ଅଗଷ୍ଟ ବିପ୍ଳବ — କଟକ ଟ୍ରେଡ଼ିଂ କମ୍ପାନୀ, କଟକ

୩– ଜୟପ୍ରକାଶଙ୍କ ଜୟଯାତ୍ରା — ଗ୍ରନ୍ଥ ମନ୍ଦିର, ବିନୋଦ ବିହାରୀ, କଟକ-୨

୪– ରାଜନୀତି ବିଚାର — ନାଲନ୍ଦା, ବିନୋଦ ବିହାରୀ ରୋଡ଼, କଟକ-୨

୫– Quest for Socialism
Fifty Years of Struggle in India — Radiant Publishers
E-155, Kalkaji,
New Delhi-110019

୬– କାରାଗାରର କାହାଣୀ — ଶ୍ରୀ ଦୁର୍ଗା ପବ୍ଲିକେଶନସ୍, ଭୁବନେଶ୍ୱର-୨

### -ଅନୁଦିତ-

ପଣ୍ଡିତ ନେହରୁଙ୍କ

୭– ମୋ ନିଜ କାହାଣୀ (୧ମ ଓ ୨ୟ ଭାଗ) — ଗ୍ରନ୍ଥ ମନ୍ଦିର,

୮– ବିଶ୍ୱ ଇତିହାସ (ତିନିଟି ଭାଗ) — ବିନୋଦ ବିହାରୀ, କଟକ-୨

### ❊ ଲେଖକଙ୍କ ଠିକଣା ❊

*ସ୍ଥାୟୀ ନିବାସ :*

ଗାୟତ୍ରୀ ନିବାସ
୩୫୭-ଶହିଦ୍ ନଗର
ଭୁବନେଶ୍ୱର-୭୫୧୦୦୭

*ହାଲ ନିବାସ :*

ଏ-୭୬, ସେକ୍ଟର-୫,
ରାଉରକେଲା-୭୬୯୦୦୨

KARAGARARA KAHANI

By :
SURENDRA NATH DWIVEDY

Cover Design :
ASIT MUKHARJEE

Publisher :
B. S. MISHRA
Shree Durga Publications
Ravi Talkies Road,
Bhubaneswar-751002

Printed at :
SHREE DURGA PRINTERS
Ravi Talkies Road,
Bhubaneswar-751002

First Publication : 1987

Price : Rs. 30-00

# କାରାଗାରର କାହାଣୀ

ଲେଖକ : ସୁରେନ୍ଦ୍ର ନାଥ ଦ୍ୱିବେଦୀ

ଶିଳ୍ପୀ : ଅସିତ୍ ମୁଖାର୍ଜ୍ଜୀ

ପ୍ରକାଶକ :
ଭବାନି ଶଙ୍କର ମିଶ୍ର



ଶ୍ରୀ ଦୁର୍ଗା ପବ୍ଲିକେଶନସ୍
ରବି ଟକିଜ୍ ରୋଡ୍, ଭୁବନେଶ୍ୱର—୭୫୧୦୦୨

ମୁଦ୍ରଣ :
ଶ୍ରୀ ଦୁର୍ଗା ପ୍ରିଣ୍ଟର୍ସ
ରବି ଟକିଜ୍ ରୋଡ୍, ଭୁବନେଶ୍ୱର—୭୫୧୦୦୨

ପ୍ରଥମ ପ୍ରକାଶନ : ୧୯୮୭

ମୂଲ୍ୟ — ଟ ୩୦—୦୦



**ବିଷୟ** | **ପୃଷ୍ଠା**


| | | |
|---|---|---|
| ୧ | ଜେଲ୍ ଯାତ୍ରା ଆରମ୍ଭ | ୧ |
| ୨ | ଜେଲ୍ ଲାଗି ପ୍ରସ୍ତୁତି | ୪ |
| ୩ | ଜେଲ୍ ଭିତରେ କେମିତିକା ଲୋକ | ୮ |
| ୪ | ଜେଲ୍ ଯିବା ପୂର୍ବରୁ | ୧୨ |
| ୫ | କେମିତି ଜେଲ୍ ଗଲି | ୧୬ |
| ୬ | କଟକ ଜେଲ୍ ଭିତରେ | ୧୯ |
| ୭ | କେହି କେବେ ମୂଲ୍ୟ ଦେଇ ପାରିବ | ୨୩ |
| ୮ | ଓଡ଼ିଶା ବାହାର ଜେଲ୍‌କୁ | ୨୭ |
| ୯ | କଟକରୁ ପାଟନା ଯାତ୍ରା | ୩୦ |
| ୧୦ | ପାଟନା କ୍ୟାମ୍ପ ଜେଲ୍ | ୩୪ |
| ୧୧ | ପୁଣି ସେହି କ୍ୟାମ୍ପ ଜେଲ୍ କଥା | ୩୮ |
| ୧୨ | ଜେଲ୍ ପରେ ଜେଲ୍ ଗଲୁ କିପରି | ୪୨ |
| ୧୩ | ସନ୍ଧି ନା ପୁଣି ଯୁଦ୍ଧ ଲାଗି ତିଆରି | ୪୬ |
| ୧୪ | କିଏ କଅଣ କଲେ | ୫୦ |
| ୧୫ | ଜେଲଭୋଗୀଙ୍କ ହାତରେ ନେତୃତ୍ୱ | ୫୪ |
| ୧୬ | ୧୯୩୨ ଆନ୍ଦୋଳନ ଓ ଆଇନ ଅମାନ୍ୟ | ୫୮ |
| ୧୭ | ସନ୍ଧି ବେଳେ ଓଡ଼ିଶାରେ ଜେଲ୍ | ୬୨ |
| ୧୮ | ଅନୁଗୁଳର ପରବର୍ତ୍ତି ଘଟଣା | ୬୬ |
| ୧୯ | ୧୯୩୨ ଓ ୩୩ର କାହାଣୀ | ୭୦ |
| ୨୦ | ୧୦୩୨ ଓ ୩୩ର ଆଉ କେତେ କଥା | ୭୩ |
| ୨୧ | ଗସ୍ତାରେ ଘୋଷଗ ଓ ଜେଲ୍ ଦଣ୍ଡ | ୭୭ |
| ୨୨ | ସ୍ୱରାଜ୍ୟ ସୈନିକଙ୍କ ଭିତରେ ଭିନ୍ନ ଚିନ୍ତା | ୮୧ |
| ୨୩ | ୧୯୪୦ ସତ୍ୟାଗ୍ରହ ପୂର୍ବରୁ | ୮୫ |

| ବିଷୟ | | ପୃଷ୍ଠା |
|---|---|---|
| ୨୪ | ଗାନ୍ଧୀ କେମିତିକା ସେନାପତି | ୮୮ |
| ୨୫ | ବ୍ୟକ୍ତିଗତ ସତ୍ୟାଗ୍ରହର ତ୍ରୁଟି | ୯୨ |
| ୨୬ | ପୁଣ ଜେଲ୍ ବାସ | ୯୬ |
| ୨୭ | ଜେଲ୍ ଯାତ୍ରାରେ ପୁଲିସର ହାତ | ୧୦୦ |
| ୨୮ | ବ୍ରହ୍ମପୁର ଜେଲ୍ | ୧୦୪ |
| ୨୯ | ବ୍ରହ୍ମପୁର ଜେଲ୍‌ର ଅନ୍ୟକଥା | ୧୦୮ |
| ୩୦ | ସାଙ୍ଗ ସାଥି ମେଳରେ | ୧୧୨ |
| ୩୧ | ସୀମିତି ସତ୍ୟାଗ୍ରହର ସୀମିତ ଫଳ | ୧୧୬ |
| ୩୨ | ଶେଷ ସଂଗ୍ରାମର ଧାରା | ୧୧୯ |
| ୩୩ | ଅଣ୍ଡର ଗ୍ରାଉଣ୍ଡ ବୋଲି କହିବ କାହିଁକି ? | ୧୨୩ |
| ୩୪ | ଓଡ଼ିଶାରେ ସଂଗଠନର ଢାଞ୍ଚା | ୧୨୭ |
| ୩୫ | ଗୋପନୀୟ ସଂଗଠନର ହାତ ଆଖି ଓ କାନ | ୧୩୧ |
| ୩୬ | କଟକ ବାହାରକୁ ଯିବା ବ୍ୟବସ୍ଥା | ୧୩୫ |
| ୩୬କ | ଆନ୍ଦୋଳନର ସ୍ୱରୂପ | ୧୩୯ |
| ୩୭ | ଗିରଫ ପୂର୍ବର ଅବସ୍ଥା | ୧୪୩ |
| ୩୮ | ଗିରଫ ଓ ଜେଲ୍ | ୧୪୭ |
| ୩୯ | ପୁଣି ବ୍ରହ୍ମପୁର ଜେଲ | ୧୫୧ |
| ୪୦ | ବିପ୍ଳବର ଲଗି ଫେଏରେ କଟକ | ୧୫୫ |
| ୪୧ | ଓଡ଼ିଶା ଷଡ଼ଯନ୍ତ୍ର ମକଦ୍ଦମା | ୧୫୯ |
| ୪୨ | କଟକରୁ କୋରାପୁଟ ଜେଲ | ୧୬୩ |
| ୪୩ | କୋରାପୁଟ ଜେଲ୍ ଜୀବନ | ୧୬୭ |
| ୪୪ | ଦୁର୍ଦ୍ଦଶା ବଢ଼ିବାକୁ ଲାଗିଲା | ୧୭୦ |
| ୪୫ | ଶେଷ ଜେଲ୍ ଜୀବନ | ୧୭୫ |



# ଗ୍ରନ୍ଥ ପ୍ରବେଶ.

ମୁଁ ଯେତେବେଳେ ହାଇସ୍କୁଲର ଛାତ୍ର, ବିପ୍ଳବୀ ଦ୍ୱିବେଦୀ ସେତେବେଳେ ଆମ ପାଖରେ ଜଣେ ପ୍ରବାଦ—ପୁରୁଷ । ଦେଶ ସେତେବେଳକୁ ସ୍ୱାଧୀନ ହୋଇ ସାରିଥିଲା । ସୁରେନ୍ଦ୍ର ବାବୁ କଂଗ୍ରେସ ଛାଡ଼ି ସୋସଲିଷ୍ଟ ପାର୍ଟିର ନେତୃତ୍ୱ ନେଇ ସାରିଥିଲେ । ଶାସନ କ୍ଷମତା ସହିତ ତାଙ୍କର କୌଣସି ସଂପର୍କ ନ ଥିଲା । ତଥାପି ଆମ ପାଖରେ ଯେକୌଣସି କ୍ଷମତାସୀନ ମନ୍ତ୍ରୀଙ୍କ ଅପେକ୍ଷା ତାଙ୍କର ବିପ୍ଳବୀ ଭବମୂର୍ତ୍ତି ଅଧିକ ଉଜ୍ଜ୍ୱଳ ଥିଲା । ୧୯୪୨ ଅଗଷ୍ଟ ଆନ୍ଦୋଳନ ବେଳେ ତୁଙ୍ଗ କଂଗ୍ରେସ ନେତାମାନେ ଗିରଫ ହୋଇ ଜେଲ ଗ୍ଲଲିଗଲା ପରେ ସେ ନିଜ ଜୀବନକୁ ବିପନ୍ନ କରି ଗୋପନରେ ପରମ ପରାକ୍ରମଶାଳୀ ବ୍ରିଟିଶ ଶକ୍ତି ବିରୁଦ୍ଧରେ ଯେପରି ଗଣ ଆନ୍ଦୋ- ଳନ ଗଢ଼ି ତୋଳିଥିଲେ; ତାହା ମୋ ଭଳି ସଦ୍ୟ-ସ୍ୱାଧୀନତା ପ୍ରାପ୍ତ ଦେଶର କିଶୋର; ଯୁବକମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିଥିଲା । ସେତେବେଳେ ପୋଲିସ ଆଖିରେ ଧୂଳି ଦେଇ ଆତ୍ମଗୋପନ କରିଥିବା ଅବସ୍ଥାରେ ସେ ଯେପରି ଲୁଚିଛପି ରାଜନୈତିକ ସଂଗଠନ କରୁଥିଲେ, ସେ ସଂପର୍କରେ ଅନେକ କାହାଣୀ ଶୁଣିବାକୁ ମିଳୁଥିଲା । ସେଥିରୁ କେଉଁଟି ସତ୍ୟ କେଉଁଟି ଅତିରଂଜନ, ତାହା ଜାଣିବାର ଉପାୟ ନ ଥିଲା । ସ୍ୱାଧୀନତା ପ୍ରାପ୍ତି ପରେ ଅଗଷ୍ଟ ପନ୍ଦର, ଜାନୁୟାରୀ ଛବିଶ ଆମ ପାଇଁ ଉତ୍ସବର ଦିନରେ ପରିଣତ ହୋଇ ଯାଉଥିଲା ।

ଅଗଷ୍ଟ ନ'ର ତାତ୍ପର୍ଯ୍ୟ ଧୀରେ ଧୀରେ ସ୍ମୃତିର ଥାକଗଳକୁ ଗ୍ରାସି ଯାଉଥିଲା । ସେଥିପାଇଁ ମାସିକ ସାହିତ୍ୟ ପତ୍ର 'ନବରବି'ର ସଂପାଦନା ସହିତ ସଂଯୁକ୍ତ ହେଲା ପରେ ମୁଁ ତାଙ୍କୁ ଅଗଷ୍ଟ ବିପ୍ଳବର ସ୍ମୃତିକୁ ନେଇ ଧାରାବାହିକ ଭାବରେ ସ୍ମୃତିକଥା ଲେଖିବାକୁ ଅନୁରୋଧ କରିଥିଲି । 'ନବରବି' ପୃଷ୍ଠାରେ ସେ ସ୍ମୃତିକଥା ପ୍ରକାଶିତ ହେଲା ପରେ ତାହା ପାଠକମାନଙ୍କ ଦ୍ୱାରା ଯେପରି ଆଦୃତ ହୋଇଥିଲା, ସାହିତ୍ୟ ପତ୍ରିକାରେ ରାଜ-ନୈତିକ ରଚନା ଲକ୍ଷ୍ୟ କରି ଅନେକ ନିରୋଳା ସାହିତ୍ୟିକ ସେହିପରି ଭ୍ରୂକୁଞ୍ଚନ କରିଥିଲେ । କିନ୍ତୁ 'ଅଗଷ୍ଟ ବିପ୍ଳବ' ପୁସ୍ତକ ଆକାରରେ ପ୍ରକାଶିତ ହେଲେ ପରେ ତାର ସାହିତ୍ୟିକ ମୂଲ୍ୟ ସଂପର୍କରେ ଆଉ କାହାରି ମନରେ ସନ୍ଦେହର ଅବକାଶ ରହି ନ ଥିଲା ।

ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ଜୀବନାନୁଭୂତି ଗତ ଅର୍ଦ୍ଧ ଶତାବ୍ଦୀ ବ୍ୟାପୀ ଆମ ଦେଶର ରାଜନୈତିକ ଇତିହାସ ସହିତ ନିବିଡ଼ ଭାବରେ ଜଡ଼ିତ । ୧୯୩୦ ମସିହାରେ ଦେଶର ସ୍ୱାଧୀନତା ସଂଗ୍ରାମରେ ଯୋଗଦେଲା ପର ଠାରୁ ଦେଶର ଦ୍ରୁତ ପରିବର୍ତ୍ତନ-ଶୀଳ ରାଜନୈତିକ ଘଟଣା ସ୍ରୋତରେ ସେ କେବଳ ନିଜକୁ ଭସାଇ ଦେଇ ନାହାଁନ୍ତି; ଘଟଣାର ମୋଡ ବଦଳାଇବା ପାଇଁ ମଧ୍ୟ ଆପୋଷହୀନ ଭାବରେ ଲଢ଼େଇ କରିଛନ୍ତି । ଦେଶର ସ୍ୱାଧୀନତା ସଂଗ୍ରାମ, ସମାଜବାଦୀ ଆନ୍ଦୋଳନ ଏବଂ ପାର୍ଲିଆ-ମେଣ୍ଟ ସଭ୍ୟ ଭାବରେ ବିଭିନ୍ନ ସମସ୍ୟା ସମ୍ପର୍କରେ ନିର୍ଭୀକ ମତ ଉପସ୍ଥାପନ ଦ୍ୱାରା ତାଙ୍କର ଜୀବନ କାହାଣୀ ଇତିହାସର ବିଷୟବସ୍ତୁ ହୋଇ ଯାଇଛି । ତାଙ୍କର ସଂଗ୍ରାମୀ ରାଜନୈତିକ ଜୀବନର ସେଇ ଆଗ୍ନେୟ ଆଲେଖ୍ୟ ଓଡ଼ିଆ ସାହିତ୍ୟକୁ ଯେ ସମୃଦ୍ଧ କରିଛି, ଏଥିରେ ସନ୍ଦେହ ନାହିଁ ।

ଓଡ଼ିଶାରେ ଓଡ଼ିଆ ଭାଷାରେ ରାଜନୈତିକ ସାହିତ୍ୟ ରଚନା କ୍ଷେତ୍ରରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ଠାରୁ ଆରମ୍ଭ କରି

ଭଗବତୀ ଚରଣ ପାଣିଗ୍ରାହୀଙ୍କ ପର୍ଯ୍ୟନ୍ତ ବହୁ ରାଜନୈତିକ ନେତା ନିଜ ସିଦ୍ଧିର ସ୍ୱାକ୍ଷର ରଖି ଯାଇଛନ୍ତି । 'ଅଗଷ୍ଟ ବିପ୍ଳବ' ଗ୍ରନ୍ଥ ପ୍ରକାଶିତ ହେବା ଆଗରୁ ଶ୍ରୀଯୁକ୍ତ ଦ୍ୱିବେଦୀଙ୍କର ପଣ୍ଡିତ ଜବାହାରଲାଲ ନେହେରୁଙ୍କ ଆତ୍ମଜୀବନୀ ଓ ବିଶ୍ୱ ଇତିହାସର ସରଳ, ସାବଲୀଳ ଅନୁବାଦ ଏବଂ 'କଂଗ୍ରେସ' ନାମକ ଏକ ରାଜନୈତିକ ଗ୍ରନ୍ଥ ମଧ୍ୟ ପ୍ରକାଶିତ ହୋଇ ସାରିଥିଲା । କିନ୍ତୁ 'ଅଗଷ୍ଟ ବିପ୍ଳବ' ପରେ 'ଜୟପ୍ରକାଶଙ୍କ ଜୟଯାତ୍ରା' 'ମୋ ଜୀବନ ସଂଗ୍ରାମ' ଓ 'ରାଜନୀତି ବିଚାର' ପ୍ରଭୃତି ଗ୍ରନ୍ଥ ରଚନାରେ ହାତ ଦେଇ ପରିଣତ ବୟସରେ ସେ ନିଜର ଅପୂର୍ବ ସାହିତ୍ୟ ପ୍ରୀତି ଓ ଅନନ୍ୟ ସୃଷ୍ଟି କ୍ଷମତାର ଯଥାର୍ଥ ପରିଚୟ ଦେଇଛନ୍ତି । ସେହି ଦୃଷ୍ଟିରୁ ବିଚାର କଲେ ଜଣେ ସଫଳ ଅନୁବାଦକ ଏବଂ ରାଜନୈତିକ ସାହିତ୍ୟଶିଳ୍ପୀ ଭାବରେ ସୁରେନ୍ଦ୍ର ବାବୁଙ୍କ ଅବଦାନ ଓଡ଼ିଆ ସାହିତ୍ୟକୁ ଅପରିସୀମ । ତାଙ୍କ ଭଳି ନିଜର ଗଭୀର ଭାବନା ଓ ଗମ୍ଭୀର ଚିନ୍ତାକୁ ସହଜ ସରଳ ଭାଷାରେ ପ୍ରକାଶ କରିବାର କୃତିତ୍ୱ କ୍ୱଚିତ ସାହିତ୍ୟିକଙ୍କ ଠାରେ ଦେଖାଯାଏ । ଅଭିଧାନରୁ ନୁହେଁ, ଜନ-ସମ୍ପର୍କର ଅଭିଜ୍ଞତା ମଧ୍ୟରୁ ହିଁ ସେ ନିଜର ଭାଷା ଓ ଶବ୍ଦ ଚୟନ କରି ଆଣନ୍ତି । ସାହିତ୍ୟ ସୃଷ୍ଟିର ଏହି ଦୁର୍ଲଭ ଦକ୍ଷତା କେବଳ ତାଙ୍କର ଅନୁବାଦ ଗ୍ରନ୍ଥ ମଧ୍ୟରେ ନୁହେଁ; ନିଜର ଆତ୍ମ ଜୀବନୀ 'ମୋ ଜୀବନ ସଂଗ୍ରାମ', 'ଅଗଷ୍ଟ ବିପ୍ଳବ' ଓ ରାଜନୈତିକ ରଚନା ସଂକଳନ 'ରାଜନୀତି ବିଚାର' ଗ୍ରନ୍ଥରେ ପ୍ରକଟିତ ହୋଇଛି ।

'କାରାଗାରର କାହାଣୀ' ତାଙ୍କର ସଦ୍ୟତମ ଗ୍ରନ୍ଥ । ଦଶମ ଶ୍ରେଣୀରୁ ପାଠପଢା ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲା ପରେ କାରାଗାର ହିଁ ଥିଲା ତାଙ୍କ ପାଇଁ ଏକ ପ୍ରକାର ଜୀବନ ବିଦ୍ୟାଳୟ । ଏହି କାରାଗାରର ଆବଦ୍ଧ କୋଠରୀରେ ସେ ଜବାହାରଲାଲଙ୍କ 'ମୋ ନିଜ କାହାଣୀ' ଓ 'ବିଶ୍ୱ ଇତିହାସ' ଭଳି ପୃଥୁଳକାୟ ଗ୍ରନ୍ଥ ଅନୁବାଦ କରିଥିଲେ । କାରାଗାରର

ନିର୍ଜନତା ମଧ୍ୟରେ ହିଁ ତାଙ୍କ ରାଜନୈତିକ ଚିନ୍ତା ଓ ଚେତନାର ବିକାଶ ଘଟିଥିଲା । ନିଭୃତ କାରାଗାରର କୋଠରୀ ହିଁ ଥିଲା ତାଙ୍କ ପାଇଁ ସ୍ୱାଧୀନତା ସଂଗ୍ରାମର ତପୋଭୂମି । ସେହି ଜାର କାହାଣୀ ମଧ୍ୟରେ ତତ୍କାଳୀନ ରାଜନୈତିକ ଜୀବନର ରେଖା ଚିତ୍ର ଏବଂ ଭାରତୀୟ ସହଯୋଦ୍ଧା ମାନଙ୍କର ଅନ୍ତରଙ୍ଗ ଆଲେଖ୍ୟ ଏହି ଗ୍ରନ୍ଥରେ ସେ ଏପରି ଭାବରେ ଚିତ୍ରାୟିତ କରିଛନ୍ତି ଯେ ଗୋଟିଏ ବିସ୍ମୃତପ୍ରାୟ ଗୌରବମୟ ଯୁଗର ଇତିହାସ ପାଠକ ସମ୍ମୁଖରେ ସ୍ୱତଃ ଅପୂର୍ବ ଦୀପ୍ତିରେ ଉଦ୍ଭାସିତ ହୋଇ ଉଠିଛି ।

ମୋ ଭଳି ତାଙ୍କର ଅନେକ ଅନୁରାଗୀ ପାଠକମାନଙ୍କ ପାଇଁ ଏହା ଏକ ଆନନ୍ଦର କଥା ଯେ ବିପ୍ଳବୀ ଦ୍ୱିବେଦୀଙ୍କ ଲେଖନୀରେ ଏବେ ସୁଦ୍ଧା ଅଗ୍ନି ସ୍ଫୁଲିଙ୍ଗ ଭରି ରହିଛି । ଏ ପରିଣତ ବୟସରେ ସୁଦ୍ଧା ତାଙ୍କର ଲେଖନୀକୁ କାଳି ଶୁଖି-ଯାଇନାହିଁ । ଆମର ଆଶା ଓ ଈଶ୍ୱରଙ୍କ ପାଖରେ ପ୍ରାର୍ଥନା ସେ ଆମ ଭିତରେ ଆହୁରି ଅନେକ ଅନେକ ବର୍ଷ ସକ୍ରିୟ ରହନ୍ତୁ ଏବଂ ତାଙ୍କର ସାହିତ୍ୟ ସାଧନା ଅବ୍ୟାହତ ରହୁ ।

3H ଲୁଇସ୍ ରୋଡ଼,
ଭୁବନେଶ୍ୱର—୧୪

-ବିଭୂତି ପଟ୍ଟନାୟକ-

卐

[ ୧ ]

# ଜେଲ ଯାତ୍ରା ଆରମ୍ଭ

ଜେଲ କଥା, ବହୁ ପୁରୁଣା କଥା । ଆଇବୁଢୀର ଗପପରି ମନେ ହେବ । ଗାନ୍ଧୀ ଅମଳର । ଗାନ୍ଧୀ ଜୋଉକାଳୁ ସଂସାର ତ୍ୟାଗ କଲେଣି । ଆମେ ଗାନ୍ଧୀଙ୍କ ହତ୍ୟା କଲୁ ; ତାହା ସଙ୍ଗେ ଗାନ୍ଧୀ କଥା ଭୁଲିଲୁ । ଖାଲି ଗାନ୍ଧୀଙ୍କୁ ଛାଡ଼ି ନାହୁଁ; ଗାନ୍ଧୀ ଆତ୍ମାର ବିନାଶ ଘଟିଛି । ଗାନ୍ଧୀଭୂତ ବି ଆମକୁ ଡରଉ ନାହିଁ । ଦେଶ ହୋଇଛି ସ୍ୱାଧୀନ; ଆମେ ହୋଇଛେ ମୁକ୍ତ । ସବୁଠାରୁ ବଡ ମୁକ୍ତି ମିଳିଛି ମହାତ୍ମା ଗାନ୍ଧୀଙ୍କ ନୈତିକ ବନ୍ଧନରୁ । ସେ ଶିଖାଉଥିଲେ ସାମ୍ରାଜ୍ୟ-ବାଦ କବଳରୁ ମୁକ୍ତି ପାଇବାକୁ ହେଲେ, ଅନ୍ୟାୟ ଆଗରେ ମୁଣ୍ଡ ନୁଆଁଇବ ନାହିଁ । ଲଠି, ଗୁଳି, ଫାସି, ମାଡ ସବୁ ସହ୍ୟ କର । ସମ୍ପତ୍ତି ଉଜୁଡ଼ି ବାଜ୍ୟାପ୍ତ ହୋଇଯାଉ; ପରୁଆ କର ନାହିଁ । ଅନ୍ୟାୟ ଦମନରେ ଭର୍ତ୍ତି ପଡନାହିଁ । ନିର୍ଭୀକ, ନିର୍ଭୟ ହୁଅ । ଆଇନକୁ ସମସ୍ତେ ଯଦି ଅମାନ୍ୟ କରିବେ ତାହା ଆଉ ରହିବ କିମିତି ? ବନ୍ଧୁକ ମୁନକୁ ଯଦି ଛାତି ଦେଖାଇବ ତାହା ହେବ ମୁର୍ଣ୍ଡିଆ, କାଟୁ କରିବ ନାହିଁ । ଆଇନକୁ ମାନି ନେଲେ ସିନା ତାହା ଷ୍ଟୁଲ ହେବ ? କେହି ଯଦି ନମାନିବେ, ଆଜ୍ଞା ପାଳନ ନକରିବେ ତେବେ ତାହା ଆପଣା ଛାଏଁ ଅକାମୀ, ଅଚଳ ହୋଇଯିବ । ସରକାରର ବଳ ହେଉଛି କୋର୍ଟ କଚେରୀ, ଜେଲ ଓ ପୋଲିସ । ଏହି ତିନୋଟି ଅସ୍ତ୍ରକୁ ଅକାମୀ କରିଦେଲେ ସରକାର କେମିତି ତିଷ୍ଠି ରହି ପାରିବ ।

ଏହି ସତ୍ୟ କେବଳ ବ୍ରିଟିଶ ସରକାର ପାଇଁ ପ୍ରଯୁଜ୍ୟ ନୁହେଁ । ସବୁ କାଳରେ ଯେ କୌଣସି ସରକାର ଆସୁ, ଏହି ତିନୋଟି ସତ୍ୟକୁ ଯଦି ଲୋକେ ପାଳନ କରିବେ ତେବେ ସରକାର ଗୁଡ଼ିକର ଅକଲ ଗୁଡୁମ ହୋଇଯିବ । ବ୍ରିଟିଶ ସରକାର କଣ କେବଳ ଆନ୍ତର୍ଜାତିକ ଘଟଣାର ପ୍ରଭାବ ଓ ବିଶ୍ୱଯୁଦ୍ଧର ପ୍ରତିକ୍ରିୟା

ଯୋଗୁଁ ଏ ଦେଶ ଛାଡ଼ି ଚାଲିଗଲା ! ଏହା ଆଂଶିକ ସତ୍ୟ ହୋଇପାରେ । ମାତ୍ର ସଂପୂର୍ଣ୍ଣ ସତ୍ୟ ନୁହେଁ । ଅସ୍ତ୍ରଶକ୍ତି ଅପେକ୍ଷା ଆହୁରି ବଡ ଶକ୍ତି ଗାନ୍ଧୀ ମହାତ୍ମା ପ୍ରୟୋଗ କଲେ । ଛୋଟ ଛୋଟ ପିଲାମାନେ ବେତ ମାଡରେ ହାତ ପାପୁଲି ଫାଟିଯାଇ ଧାର ଧାର ରକ୍ତ ବୋହୁଥିଲା ବେଳେ ଗାଉଥିଲେ– "ତୁମେ ମାର ଯେତେ ବେତ ମାରିବ; ଦେଶ ଲାଗି ଆମେ ଜୀବନ ଦେଇଛୁ, ତୁମେ କି ଆମକୁ ପାରିବ ?" ହାତ ଶୁଖି ନାହିଁ, ପଟି ଖୋଲି ନାହିଁ, ପାପୁଲି ଫୁଲା ଓ ଦରଜ କମି ନାହିଁ । ପୁଣି ସକାଳ ହେଉଣୁ ଅଫିମ ମଦ ଦୋକାନ ଓ ବିଲାତି ଲୁଗା ଦୋକାନ ଆଗରେ ପିକେଟିଂରେ ହାଜର– ପୁଣି ଗିରଫ, ବିଚାର, ଅନ୍ଧାଧୁନ୍ଧା ବେତ ପ୍ରହାର ଓ ଖଲାସ । ଦିନ ଦିନ ଧରି ଏଭଳି ଚାଲେ । "ଆମେ ରକ୍ତବୀର୍ଯ୍ୟ ବଂଶ, ଆମର ବିନାଶ ନାହିଁ ।" କାନ୍ଦ କାନ୍ଦ ଆଖିରେ କହୁଥିଲେ ଆମକୁ ଯେ ମାରିବ ସେ ଅନୁତାପରେ ଦଗ୍ଧ ହୋଇଯିବ । ଏହା ଥିଲା ପରମ ଶକ୍ତି ଅପୂର୍ବ ସାହସ ଓ ଅଦ୍ଭୁତ ଭାବରେ ଆନ୍ଦୋଳିତ କରୁଥିଲା ଲୋକ ମନ । ଧାରୁଆ ଅସ୍ତ୍ର ଠାରୁ ଥିଲା ଏହା ଅଧିକ ତୀକ୍ଷ୍ଣ ।

ଏହି ଅସ୍ତ୍ର ପ୍ରୟୋଗର ପ୍ରଭାବ ଲୋକେ ଅନୁଭବ କରନ୍ତୁ ନକରନ୍ତୁ ବ୍ରିଟିଶ ସରକାର ବୁଝୁଥିଲା । ତାଙ୍କ ଶାସନରେ ଅସ୍ଥିରତା ଆସୁଥିଲା । ୧୯୩୦ ମସିହାରେ ପେଶାଓ୍ୱାରରେ ଯେତେବେଳେ ସୈନ୍ୟମାନେ ସାଧାରଣ ନାଗରିକ ଶାନ୍ତିପୂର୍ଣ୍ଣ ରହିଥିଲା ବେଳେ ଗୁଳି ଚାଳନା କରିବାକୁ ଅସ୍ୱୀକାର କରି ଦେଲେ; କି ମୁସ୍କିଲ ପରିସ୍ଥିତି ! ମୋ ନିଜ ଜାଣତରେ ଦୁଇଟି ଘଟଣା ଏଥିରେ ଉଲ୍ଲେଖ କରଯାଇ ପାରେ । ୧୯୪୨ ଅଗଷ୍ଟ, "କର ବା ମର" ଆନ୍ଦୋଳନରେ ମୁଁ ଛପିରହି ନିର୍ଦ୍ଦେଶନାମା ବେଆଇନ ବୁଲେଟିନ ଜରିଆରେ ଜାରି କରିଥିଲି । ମିଲଟେରୀ ବା ପୁଲିସ ଯଦି ବନ୍ଧୁକ ଧରି ଯାଆନ୍ତି ଗ୍ରାମକୁ ଆକ୍ରମଣ କରିବା ନିମନ୍ତେ; ପଳାଇ ଯିବ ନାହିଁ । ଆଗରୁ ଗଜା ଟୋକାଙ୍କୁ ଧରି ମୃତ୍ୟୁବାହିନୀ ତିଆରି କରିଥିବ । ସେମାନେ ତାଙ୍କର ମୁକାବିଲା କରିବେ ନାହିଁ । ସମୁଖା ସମ୍ମୁଖୀ ହୋଇ ବେକରେ ଫୁଲହାର ପକାଇ ତାଙ୍କୁ ହସି ହସି ନମସ୍କାର କରି କହିବେ, ମାରିବେ ତ ଆମକୁ ମାରନ୍ତୁ, ଗାଁବାସୀ ନିରୀହଙ୍କୁ ରକ୍ଷା କରନ୍ତୁ । ଏଭଳି ଅଗ୍ରନକ ଅବସ୍ଥାରେ ସେମାନେ ଗୁଳି ନକରି ନିରସ୍ତ୍ର ହୋଇଯିବେ ।

ଏତିକିବେଳୁ ଆଉ ଦଳେ ତିଆର ହୋଇଥିବେ ପଛରୁ ଦଉଡ଼ି ଆସି ସେମାନଙ୍କୁ ଅବାକ କରିଦେବେ– ଯାହାକୁ କହନ୍ତି ଓଭର ପାଓ୍ୱାର କରି ବନ୍ଧୁକ ଆଦି ଛଡ଼ାଇ ନେବା ଉଦ୍ୟମ କରିବେ କଥାବାର୍ତ୍ତା ଚାଲିଥିବା ବେଳେ । ଦୁଇଟି ଯାଗାରେ ଏଭଳି ପ୍ରଚେଷ୍ଟା ହୋଇଥିଲା । ସଫଳ ହେଲା ନାହିଁ । ଗାଁ ଯୁବକମାନେ ଦେଶଲାଗି ଏପରି ନିର୍ଭୀକତା ଦେଖାଇବା ସେକାଳରେ କମ କଥା ନୁହେଁ । କେଉଁଠି କିନ୍ତୁ ଗୁଳି ହେଲା ନାହିଁ । ବହୁତ ଗୁଡ଼ିଏ ଗିରଫ ହୋଇ ଆସିଲେ । ମୋ ନିଜ କଥା ମୁଁ ଅନ୍ୟତ୍ର ବୋଧହୁଏ ଲେଖିଛି । ମତେ କଟକ ସହର ମାଡ଼ୁଆଡ଼ି ପଟି ଗେଟି ଉପରେ ଘୋଷାରି ଘୋଷାରି ଯେଉଁ ପୁଲିସ ଲହୁଲୁହାଣ କରି ପକାଇ ଥିଲେ ସେମାନେ ଥାନା ଭିତରକୁ ନେଇ ଯାଇ ନିଜେ କାନ୍ଦିଲେ ଏବଂ ନିଜ ଗାମୁଛାରେ ଦେହଯାକ ହୋଇ ଯାଇଥିବା ରକ୍ତ ଧୂଳି ପୋଛି ପକାଇଲେ । ସକ୍ରିୟ ଅହିଂସ ସଂଗ୍ରାମର ଅଲିଖିତ ପ୍ରଭାବ ବହୁ ପ୍ରାଣରେ ଆଲୋଡନ ସୃଷ୍ଟି କରିଥିଲା । ଏହା ଥିଲା ଗାନ୍ଧୀ ବିପ୍ଳବର ଧାରା ।

ଜାତୀୟ ଚେତନା ଓ ପ୍ରତିରୋଧ ଶକ୍ତି ଜାତ କରିବା ନିମନ୍ତେ ଗାନ୍ଧୀଙ୍କର ଏହାଥିଲା ଅଭିନବ ନିରସ୍ତ୍ର ଲଢ଼ାଇର କୌଶଳ । ଏହି ସବୁର ଆଦିପର୍ବ ହେଲା ଜେଲ ଭରିବା । ୧୯୨୧ରେ ଅସହଯୋଗ ବେଳୁ ଏହା ଆରମ୍ଭ ହେଲା । ମାତ୍ର ୧୯୩୦ ରୁ ୧୯୪୨ ପର୍ଯ୍ୟନ୍ତ ପର୍ଯ୍ୟାୟକ୍ରମେ ସତ୍ୟାଗ୍ରହ ଓ ଜେଲବରଣ ହେଲା ଗଣଆନ୍ଦୋଳନର ସ୍ୱରୂପ । ଏହି କେତେ ବର୍ଷ ଭିତରେ ବହୁବାର ଜେଲ ଯାଇଛୁ, ମାଡଗାଳି ଶୁଣିଛୁ, ଦୁଃଖ ନିର୍ଯ୍ୟାତନା ଭୋଗିଛୁ । ନଭେମ୍ବର ୧୬ ତାରିଖ ୧୯୩୦ ମସିହା । କାଠଯୋଡ଼ି ନଈ ବାଲିରେ ହେଲା ଲାଠିମାଡ଼ ଓ ଆମେ ଥୋକେ ଗିରଫ ହେଲୁ । ମୋର ତାହା ପ୍ରଥମ ଗିରଫ । ୧୭ ତାରିଖ ଦିନ ପୁଲିସ ବସରେ ଆମକୁ ଯେତେବେଳେ କଟକ ଜେଲକୁ ନିଆ ଯାଉଥିଲା– ଦେଖିଲି ଚୌଧୁରୀ ବଜାର ଛକ ପାଖରେ ଲୁହ ଛଳ ଛଳ ଆଖିରେ ଅନାଇଛନ୍ତି ମୋର ବାପା । ଖବର ପାଇ ମଫସଲରୁ ଦଉଡ଼ି ଆସିଥିଲେ ମତେ ଦେଖିବା ନିମନ୍ତେ । ବାପା ମଲେଣି ମାତ୍ର ସେ ଛଳ ଛଳ ଆଖି ସତେ କି ମତେ ବରବର ଚାହିଁ ରହିଛି ବିକଳ ହୋଇ !

卐

[ ୨ ]

# ଜେଲ ଲାଗି ପ୍ରସ୍ତୁତ

ଜେଲ ଯିବାରେ ମୋ ମନ ଖୁସି । ଏଇଥି ଲାଗି ପଢ଼ା ଛାଡ଼ିଥିଲି । ମହାତ୍ମା ଗାନ୍ଧୀଙ୍କ ଡ଼ାକରେ କୁର୍ଦ୍ଦି ପଡ଼ିଲି ସ୍ୱାଧୀନତା ସଂଗ୍ରାମ ଭିତରକୁ । ସେଥିରେ ପ୍ରାଥମିକ ଅବସ୍ଥାରେ ଜେଲ ଭରିବା ହେଲା ମୁଖ୍ୟ କାର୍ଯ୍ୟ । ଆମେ ଯେ ସବୁ ଆସିଥିଲୁ, ଆମ ଭିତରେ ପ୍ରତିଯୋଗିତା ଲାଗିଥାଏ, କିଏ କେତେ ଶୀଘ୍ର ଓ କେତେ ବେଶୀ ଜେଲଦଣ୍ଡ ପାଇବ । ୧୯୩୦ରେ ସବୁ ଠାରୁ ସହଜ ବାଟ ହେଲା ଲବଣ ସତ୍ୟାଗ୍ରହରେ ଯୋଗଦେବା । ମୋ ସାଙ୍ଗ ସବୁ ଗଲେ । ମାତ୍ର ମୋର ମାମୁଁ ପଣ୍ଡିତ ଆକୁଳି ମିଶ୍ର ସ୍କୁଲ ଛାଡ଼ିବା ବେଳେ ସିନା ଆପତ୍ତି ଉଠାଇଲେ ନାହିଁ, କିନ୍ତୁ ପାଖରୁ ଛାଡ଼ିବା ଲାଗି ପ୍ରସ୍ତୁତ ନଥିଲେ । ସତ୍ୟାଗ୍ରହ ଆଶ୍ରମରେ ଆମ ସାଥିମାନେ ରହୁଥିଲେ । ମାତ୍ର ସେମାନଙ୍କ ସାଙ୍ଗରେ ମୁଁ ରହି ପାରିଲି ନାହିଁ । ରହିବାକୁ ପଡ଼ିଲା ମାମୁଁଙ୍କ ପାଖରେ, ଘରେ । ଇଂରେଜ ଅମଳ । ସତ୍ୟାଗ୍ରହ ଆଶ୍ରମ ବା କଂଗ୍ରେସକୁ ଚାନ୍ଦା ଦେବାକୁ ଲୋକେ ଭୟ କରୁଥିଲେ । ଯାହା ବି ଦେଉଥିଲେ ଲୁଚାଇ, ଗୋପନରେ । ମାମୁଁ କିନ୍ତୁ ପ୍ରତି ମାସରେ ବିଧିମତେ ୨୫ ଟଙ୍କା ଦେଉଥିଲେ । ସେତେବେଳେ ୨୫ ଟଙ୍କା ବୋଇଲେ ବହୁତ ଗୁଡ଼ିଏ ଟଙ୍କା ।

ମୁଁ ଆଶ୍ରମରେ ରହିଲେ ମୋ ଲାଗି ତ ଟଙ୍କା ଖରଚ ହୁଅନ୍ତା । ତେଣୁ ମାମୁଁ ସେ ଚାନ୍ଦାକୁ ଆହୁରି ୨୫ ବଢାଇ ଦେଲେ । ସର୍ତ୍ତ କଲେ ମତେ ଆଶ୍ରମରେ ରହିବା ଲାଗି ବାଧ୍ୟ କରାଯିବ ନାହିଁ । ମୁଁ ଘରେ ରହିବି ମାତ୍ର ଆଶ୍ରମର ସବୁ କାର୍ଯ୍ୟରେ ଯୋଗ ଦେବି । ଆହୁରି ମଧ୍ୟ ଆଶ୍ରମର ପରିଚାଳକଙ୍କୁ ମନାଇ ନେଲେ ଯେ ମତେ କୌଣସି ଦୂର ଯାଗାକୁ ପଠାଯିବ ନାହିଁ । ପ୍ରତିଦିନ ଗତିରେ ମୁଁ

ଯେପରି ଘରକୁ ଫେରି ପାରିବି । ଫଳରେ ମୋ ମନ ଯେ କୁଳୁକୁଳୁ ହେଉଥିଲା ଲୁଣ ମାରି ଯାଇ ଜେଲ ଭୋଗିବାକୁ ତାହା ଭାଗ୍ୟରେ ଜୁଟିଲା ନାହିଁ ।

ମତେ କଟକ ସହରରେ ସୂତାକଟା ଶିକ୍ଷା ଦେବା ଓ ଅରଟ ମରାମତି କାର୍ଯ୍ୟ ଘରେ ଘରେ ଯାଇ କରିବାର ଦାୟିତ୍ୱ ଦିଆଗଲା । ଗାନ୍ଧୀଜୀ ପ୍ରତ୍ୟେକ ସତ୍ୟାଗ୍ରହୀ ଭଗବତ୍ ଗୀତାର ତୃତୀୟ ଅଧ୍ୟାୟ ପଠନ, ଏକ ଘଣ୍ଟାରେ ୩୦୦ ଗଜ ସୂତା କାଟିବାର ପ୍ରୟୋଜନ ବୋଲି କହି ଥାଆନ୍ତି । ତେଣୁ ମାମୁଁ ମତେ ଚମ୍ପାପୁର ଆଶ୍ରମକୁ ପଠାଇ ତୂଳାଭିଣା ଓ ସୂତାକଟା ଆଦି ଶିକ୍ଷା ଦିଆ-ଇଲେ ଏବଂ ଘରେ ସେ ନିଜେ ମାଉସୀ ଓ ଅନ୍ୟମାନଙ୍କୁ ସୂତାକଟା ଶିକ୍ଷା ଦେବାରେ ଲଗାଇ ଦେଲେ । ଆଶ୍ରମର ଡ଼ିଉଟି ଛଡ଼ା ଏହା ଏକ ଅଧିକା ଦାୟିତ୍ୱ । ଏଥିଲାଗି ପ୍ରତିଦିନ ଆଶ୍ରମରେ ଯାଇ ରିପୋର୍ଟ ଲେଖାଇବାକୁ ପଡ଼େ । ଜେଲ ଯିବା ଲାଗି ଏଣେ ମୋ ମନ ଛଟପଟ ହେଉଥିଲା ।

ସତ୍ୟାଗ୍ରହ ଆଶ୍ରମ ଆଉକିଛି ନୁହେଁ । ସ୍ୱରାଜ୍ୟ ଶ୍ରମିକଙ୍କୁ ତାଲିମ ଦେବା କେନ୍ଦ୍ର କହିଲେ ଚଳେ । ସଦ୍ୟ ସ୍କୁଲ କଲେଜ ଓ ଅନ୍ୟ ସ୍ତରରୁ ଆସିଥିବା ଲୋକେ ଜେଲର କଠୋର ଜୀବନ ସହି ପାରିବେ ତ ? ଯଦି ଭାଙ୍ଗି ପଡନ୍ତି ଓ କ୍ଷମା ମାଗି ଜେଲରୁ ମୁକ୍ତ ହୋଇ ଅଧାରୁ ପଳାଇ ଆସନ୍ତି, ତେବେ ଆନ୍ଦୋଳନର ଘୋର କ୍ଷତି ହେବ — ହତାଶା ପ୍ରବେଶ କରିବ; ଇଂରେଜ ସରକାର ସତ୍ୟାଗ୍ରହୀଙ୍କର ଆଣ୍ଠୁ ଭାଙ୍ଗି ଦେଲା ବୋଲି ଆନନ୍ଦିତ ହେବ । ମହାତ୍ମା ଗାନ୍ଧୀଙ୍କ ନାମରେ କଳଙ୍କ ଲାଗିବ । ଏତେବଡ଼ ଆନ୍ଦୋଳନରେ ଏମିତି ଦୁର୍ବଳ ଲୋକ ବାହାରି ନଥିଲେ ବୋଲି କହି ହେବ ନାହିଁ । ଯେଉଁଠି ପୁଲିସ ଓ ଜନ ସଂଘର୍ଷ ଲାଗେ ବହୁ ଲୋକ ଜେଲ ବରଣ କରୁଥିଲେ, ତାହା ତ ଦୂସରା କଥା । ମାତ୍ର ସେତେବେଳେ ସତ୍ୟାଗ୍ରହୀ ବଛା ହେଉଥିଲେ ଏବଂ ସେମାନଙ୍କୁ ପକ୍କା ପ୍ରସ୍ତୁତ କରଯାଇ ପଠାହେଉଥିଲା । ସେଥିରେ ପୁଣି ଏମିତି ନିକମ୍ମା ଲୋକ ବାଛାଗିବେ କାହିଁକି ?

ବିପ୍ଲବୀ ଗୋଷ୍ଠୀ ବା ଦଳମାନଙ୍କରେ କାତର ବା କର୍ମୀ ଗୋଷ୍ଠୀଙ୍କି ବହୁ ପରୀକ୍ଷା ଭିତର ଦେଇ ଯିବାକୁ ପଡେ । କଠୋର ଶୃଙ୍ଖଳା ଓ ସଂଯମ ରକ୍ଷା

କରି ପାରିଲେ କର୍ମକ୍ଷେତ୍ରରେ ପ୍ରବେଶ କରିବା ନିମନ୍ତେ ଅନୁମତି ମିଳେ । ମୁସୋ-ଲିନୀ ତାର ସୈନ୍ୟଙ୍କୁ ଆବିସିନିଆ ଆକ୍ରମଣ ଲାଗି ପଠାଇବା ଆଗରୁ ଆବିସିନିଆର ତାପ ସହି ପାରିଲା ଭଳି ତତଲା ଘରେ ସେମାନଙ୍କୁ ପୂରାଇ ସେମାନଙ୍କ ଚମଡ଼ାକୁ ସେତିକି ତାତି ସହିଲା ଭଳି ସାବାଡ଼ କରି ପଠାଉଥିଲେ । ମାତ୍ର ଏ ପରା ସ୍ୱରାଜ ଲଢ଼ାଇ; ନୈତିକ ପ୍ରଭାବ ପକାଇ ଶତ୍ରୁକୁ ଦୁର୍ବଳ କରିବା କଥା । ନିଜର କଷ୍ଟ ସହିବା ଶକ୍ତି ଓ ସଂଯମ; ଅନ୍ୟ ଉପରେ ପ୍ରଭାବ ପକାଇ ପାରିବ ।

ଜେଲଖାନାରେ ସେତେବେଳେ ନର୍କକୁଣ୍ଡ ପରି ଅବସ୍ଥା ଥିଲା । ୧୯୨୦।୨୧ରେ ଯେଉଁମାନେ ଜେଲ ଯାଇଥିଲେ; ସେମାନଙ୍କୁ ଅଖା ପୋଷାକ ପିନ୍ଧିବାକୁ ପଡ଼ୁଥିଲା । ତେଲଘଣା ବଳଦ ବଦଳରେ ସେହିମାନେ ଚଳାଉ ଥିଲେ । ମାଡ଼, ନିର୍ଯ୍ୟାତନାର ସୀମା ନଥିଲା । ବହୁ କଷ୍ଟରେ ଏବଂ ବିଭିନ୍ନ ଆନ୍ଦୋଳନ କରିଆରେ ଜେଲ ଭିତର ଅବସ୍ଥା ଟିକିଏ ବଦଳି ଥିଲା । ଯତୀନ୍ ଦାସ ଜେଲ ସଂସାର ପାଇଁ ଷାଠିଏ ଦିନ କାଳ ଅନଶନ କରି ମାଟିରେ ମିଶିଗଲେ । ସରକାର ତାଙ୍କ କଥା ଶୁଣିଲା ନାହିଁ । ସେ ଏକ ପ୍ରକାର ଜୀବନ୍ତ ଶହୀଦ ହୋଇଗଲେ । ମାତ୍ର ଏହି ସବୁ ବହୁ ଘଟଣା ପରେ କିଛିଟା ଜେଲ ସଂସାର ହୋଇଥିଲା । ଏହା ହେଉଛି ୧୯୨୮ ମସିହା କଥା । ୧୯୩୦ ବେଳକୁ ଓଡ଼ିଶା ଜେଲରେ ବନ୍ଦୀମାନଙ୍କୁ ମିଳୁଥିଲା ତିନିଓଳି ଖାଇବା; ତାହା ପୁଣି ପାଞ୍ଚଅଣା ପଇସା ଭିତରେ ଯାହା ହୋଇ ପାରିବ । ଛୋଟିଆ କଳାଗାର ପଡ଼ିଥିବା ଜଙ୍ଘିଆ ଯୋଡ଼ିଏ, ହାତକଟା ଫତେଇ ଖଣ୍ଡିଏ ଏବଂ ଆଣ୍ଠୁ ଲୁଚୁ ନଥିବା ଏବଂ ପୂରା ପିଠିକୁ ପାଉ ନଥିବା ଗାମୁଛା ଖଣ୍ଡେ । ଶୋଇବା ଲାଗି ମାଟି ପିଣ୍ଡି । ତେଲ ମାଖିବା ଲାଗି ମିଳେନା । ମୁଣ୍ଡ ନୁଖୁରା ଏବଂ ବେମାର ନହେଲେ ମିଠା– ଗୁଡ଼ ବା ଚିନି ଦେଖିବା ସ୍ୱପ୍ନ । ଅନେକ ନିଜ ମୁହଁ ଦର୍ପଣରେ ଦେଖିବାର ସୁଯୋଗ ପାଆନ୍ତି ନାହିଁ ।

ଏହା ଥିଲା ସବୁଠାରୁ ତଳ ଶ୍ରେଣୀର ବନ୍ଦୀଙ୍କର କପାଳରେ । ମୋର କାଲି ଭଳି ମନେ ପଡ଼ୁଛି; ମୁଁ ୧୯୪୦ ମସିହାରେ ବ୍ରହ୍ମପୁର ଜେଲରେ 'ଖ' ବା 'ବି' ଶ୍ରେଣୀ ବନ୍ଦୀ ଥିଲି । ଗୋଟିଏ ଛୋଟ ଦର୍ପଣ ମୋ ପାଖରେ ଥାଏ । ମୁଁ ତାକୁ ସାମନାରେ ରଖି ବାରଣ୍ଡାରେ ଗୋଟିଏ ଛୋଟ ଟୁଲଜାତୀୟ କାଠପଟାରେ

ବହିପତ୍ର ରଖିଥାଏ ଏବଂ ଜବାହାର ଲଲଙ୍କ ଜୀବନୀ ଅନୁବାଦ କରୁଥାଏ । ଏଥି ଭିତରେ ପୋଡନ ନାମକ ଏକ ସଉଗ ବନ୍ଦୀ ବାରଣ୍ଡା ଓଳାଉ ଓଳାଉ ଆରସି କାଚରେ ତାହା ମୁହଁ ଦେଖିଦେଲ । ମାଙ୍କଡ଼ ପରି ନାଚିଲ, ହସିଲ, ଗଡ଼ିଗଲ । ସେ କହିଲ, ବାବୁ ମୁଁ ଏବେ ଏକା ମୋ ନିଜ ମୁହଁ ଦେଖି ପାରିଲି । ଏଇଭଳି ମୋଟାମୋଟି ଥିଲ ସେ କାଳର ଜେଲ । ଜଣକେ ଦୁଇଟି ଲେଖାଏଁ ଲୁହା ବାଟି ମିଳୁଥିଲ; ସେଇଥିରେ ଖାଇବ, ପିଇବ ଏବଂ ପାଇଖାନାକୁ ପାଣି ନବ । ସଫା ନରଖିଲେ ପାଣି କଳି କଳଙ୍କି ଲଗିଯିବ । ଏଭଳି ପରିଧାନ, ଭୋଜନ ଓ ରହଣୀ କେତେ ଲୋକ ସହି ପାରିବେ ! ତେଣୁ ସତ୍ୟାଗ୍ରହୀ ମାନଙ୍କୁ ଏ ସବୁରେ ଅଭ୍ୟସ୍ତ ହେବା ଲଗି ଟ୍ରେନିଂ ଦିଆ ଯାଉଥିଲ । ସିଝା ଖିଆ, ତେଲ, ଘିଅ ମନା, ନୁଖୁର ଦେହ, ଛୋଟ ଛୋଟ ମୁଣ୍ଡବାଳ କାଟିବା, ମସିଣା କିମ୍ବା ତାଳପଟିରେ ଖାଲି ଶୋଇବା ଆଦି ଅଭ୍ୟାସ କରିବାକୁ ପଡୁଥିଲ । ତାହା ହେଲେ ଜେଲ କଷ୍ଟଟା ସେମାନେ ସହି ପାରିବେ ଏବଂ ଜେଲ ଜୀବନ ଆରେଇ ଯିବ । ଏହା ଥିଲ ଆମ ଅମଳର ଜେଲ ଯିବା ପରିସ୍ଥିତି ୧୯୩୦ ବେଳକୁ । ପ୍ରସ୍ତୁତି କାଳର ସାଧନା; ସରଳ, ନିରଡମ୍ବର ଓ କଠୋର ଜୀବନ ଶିକ୍ଷା ଦିଏ । ଏଭଳି ଲୋକକୁ କୁହା ହେଉଥିଲ ଗାନ୍ଧୀ ଚେଲ, ସତ୍ୟାଗ୍ରହୀ ବା ସ୍ୱରଜ୍ୟ ସୈନିକ ।

ମୁଁ ଯେତେବେଳେ ଜାଣି ଶୁଣି ସ୍ୱେଚ୍ଛାରେ ସେ ଖାଉଡରେ ପଶିଲି, ମୋ ମନ ସିନା ସ୍ୱରଜ୍ୟ ପାଇବା ନିଶାରେ ମାତି ଯାଉଥିଲ କିନ୍ତୁ ବାପା ଏସବୁ ଭବି ଅସ୍ଥିର ହେବା କଥା । ବହୁ କୁଟୁମ୍ବ; ମାତ୍ର ଦେଢ଼ମାଣ ନାଳକୂଳିଆ ଜମି । ନିଜେ ମୁର୍ଶିଦାବାଦ ଓ ରଙ୍ଗପୁର ଆଦି ସ୍ଥାନକୁ ଯାଇ ସାମାନ୍ୟ ରୋଜଗାରରେ ଦହଗଞ୍ଜ ଜୀବନ ଯାପନ କରୁଥିଲେ । କେତେ ଆଶା ରଖିଥିଲେ ପୁଅ ପାଠ ପଢୁଛି ! ବଡ଼ ଗ୍ୱକିରୀ କରିବ; ଧନ ଆଣିବ, ତାଙ୍କ ଦୁଃଖ ମେଣ୍ଟିବ । ମାତ୍ର ପୁଅ ଗ୍ୱଲିଲେ ଜେଲ; ସ୍ୱରଜ୍ୟ ଆଣିବା ନିମନ୍ତେ । ସେଇଟା ସତ୍ୟ କି ସ୍ୱପ୍ନ — ସେତେ-ବେଳେ କେହି ଜାଣି ନଥିଲେ । ବାପା ମଲ ପୂର୍ବରୁ ଜାଣିଲେ ମୁଁ କେତେ ବଡ଼ ମହତ କାମ କରିଥିଲି । ମୋ କାମ ଓ ଦେଶରେ ସମ୍ମାନ ଦେଖି ସେ କେତେ ଆନନ୍ଦ ମନରେ ଶେଷ ଜୀବନ କଟାଇଲେ । ତାଙ୍କ ଅଶ୍ରୁ ମୁଁ ପୋଛି ଦେଇ ପାରିଲି ।

卐

[ ୩ ]

# ଜେଲ ଭିତରେ କେମିତକା ଲୋକ

ଆଜି କାଲି ତ କଥା କଥାକେ ଜେଲ । ସଭ, ଶୋଭଯାତ୍ରା ଓ ଧାରଣା, ଅନଶନ । ଜଣେ ନୁହେଁ ବହୁଜନ ଏକାଠି ଗିରଫ ହୋଇ ଜେଲ ବରଣ କରୁଛନ୍ତି । ଏହା ସବୁ ପ୍ରତିବାଦ ଜେଲ । ତାତ୍କାଳିକ ପରିସ୍ଥିତି ଫଳରେ ଘଟେ; ସାମୟିକ ଦାବୀ ନିମନ୍ତେ । ଜଣକ ଦ୍ୱାର ହେଉନାହିଁ । ବଡ଼ ହଟ ବାନ୍ଧିଛି । ଟିକିଏ ହେଲେ ହଲୁ ନାହିଁ । ବଡ ଆଣ୍ଠ । ଜଣକର ପ୍ରତିବାଦ ବା ଚିତ୍କାର କାଟୁ ନାହିଁ । ସମଷ୍ଟି-ଗତ ପ୍ରତିବାଦ ହେଉଛି, ସାର କଲେଜ ଧର୍ମଘଟ କରୁଛି କିମ୍ବା ଶିକ୍ଷକ, ଦୋକାନୀ ଏପରିକି ସରକାରୀ କର୍ମଚାରୀମାନେ ମିଳିତ ଭବରେ ପ୍ରତିବାଦ କରୁଛନ୍ତି; ଜେଲ ଯାଉଛନ୍ତି; ବେଳେ ବେଳେ ଲାଠି, ଗୁଳିଚାଳନା ପରିସ୍ଥିତି ଆସିଯାଉଛି । ମାତ୍ର ଏଗୁଡ଼ିକ ସଉକିନିଆ ଜେଲ ବୋଲିବାକୁ ପଡ଼ିବ । କ୍ଷଣିକ ଦାବୀ ନିମନ୍ତେ ସାମୟିକ ଆନ୍ଦୋଳନ । କଥାବାର୍ତ୍ତା ହୋଇଗଲା; ମଧ୍ୟସ୍ଥ ପହଂଚି ଗଲେ; ଆଶିଂକ ଦାବୀ ପୂରଣ ହେଲା । ସଭିଙ୍କି ଧୁହାଇଲା ପରି ରାଜିନାମାରେ ପହଂଚିଗଲେ । ସମସ୍ତେ ଖଲାସ; ଯେ ଯାହାର ଚାକିରୀ ଯେଉଁଠି ଥିଲା ସେଇଠି ମୁତୟନ ହେଲେ । ଏପରି ଯେଉଁମାନେ ଯାଆନ୍ତି ବା ଯାଉଛନ୍ତି, ସେମାନେ ଜେଲର କଷ୍ଟ କୁଆଡୁ ବୁଝିବେ ? ସେମାଙ୍କ ପକ୍ଷରେ ଜେଲ ଏକ ବିଳାସ ।

କିନ୍ତୁ ମୁଁ ଯେଉଁ ଜେଲ କଥା କହୁଛି, ତାହା ବ୍ରିଟିଶ ସରକାର ସହ ଯୁଝୁଥିବା ଅହିଂସ ସୈନିକଙ୍କ ଯୁଦ୍ଧକ୍ଷେତ୍ର । ଏଠାରୁ ଶୀଘ୍ର ମୁକୁଳିବାର ପ୍ରଶ୍ନ ନାହିଁ । ଯେତେଦିନ ବେଶି ରହିବ, ବ୍ରିଟିଶ ସରକାରର ଚିନ୍ତା ବଢିବ । ଜେଲ ଭିତରେ ସାଧାରଣ କଏଦୀ ରହନ୍ତି । ତାଙ୍କ ପାଇଁ ମୁଖ୍ୟତଃ ତିଆରି । ନାନା ଅଭିଯୋଗରେ

ଆସନ୍ତି; ଗ୍ଲେରୀ, ନାରୀ, ଫୌଜଦାରୀ ଇତ୍ୟାଦି । କିନ୍ତୁ ସମସ୍ତେ କ୍ରିମିନାଲ ନୁହନ୍ତି; ନାନା ଘଟଣାଚକ୍ରର ଶିକାର ହୋଇ ପଡ଼ି ଥାଆନ୍ତି । ଜେଲଖାନାଟା ତାଙ୍କୁ ସଂସ୍କାର କରେ ନାହିଁ; ସେପରି ଆଚରଣ ତାଙ୍କୁ ଶିକ୍ଷା ଦିଆଯାଏ ନାହିଁ । ଶାସନ କରିବା ନିମନ୍ତେ ଜେଲରେ ତାଙ୍କ ପ୍ରତି ବ୍ୟବହାର ହୁଏ ନିର୍ମମ, କଠୋର । ଥରେ ମୁଁ, ଦେବେନ୍ଦ୍ର ବାନାର୍ଜି ବୋଲି ଆଉ ଜଣେ ସାଥି ସହ ଗିରଫ ହେଲି । ଏଇଟା ବୋଧହୁଏ ୧୯୩୨ ମସିହା । ଜାନୁଆରୀ ୪ ତାରିଖରେ ବ୍ରିଟିଶ ସରକାର ଏକାଠି ୧୩ଟି ଅର୍ଡିନାନସ୍ ଜାରି କଲା । ୧୯୩୧ ଗାନ୍ଧୀ ଇର୍‌ୱଇନ୍ ଚୁକ୍ତି ଯୋଗୁଁ ଯେଉଁଠୁ ଛାଡ଼ିଥିଲା, ସେହି ଠାରୁ ଆରମ୍ଭ କଲା । କେବଳ ରାଜନୈତିକ ସଂଗଠନ କଂଗ୍ରେସକୁ ବେଆଇନ ଘୋଷଣା କରଗଲା ନାହିଁ; ଅଫିସରେ ତାଲା, ପୁଲିସ ଫୌଜ ଯାଇ କଂଗ୍ରେସ ଦସ୍ତର ଦଖଲ କରିଗଲେ; କୋଠାରେ ରହିଲେ । ଆଶ୍ରମବାସୀ ହେଲେ ପଥଗ୍ଲରୀ ।

ଅର୍ଡିନାନସ୍ ହୋଇଗଲା କେହି ଗ୍ଲନ୍ଦା ଦେଲେ, ଘରେ ଆଶ୍ରୟ ଦେଲେ କିମ୍ବା ଅନ୍ୟ ପ୍ରକାର ସାହାଯ୍ୟ କଲେ; ହେବ ଗିରଫ, ଜେଲ, ଜୋରିମାନା, ଘରବାଡ଼ି ଜବତ୍ । ତେଣୁ ସତ୍ୟାଗ୍ରହୀଙ୍କର ଗ୍ଲର କଅଣ ! ବର୍ଷା, ଶୀତ, ଖରା, କାକରରେ ଆଶ୍ରା ହେଲା କଟକ ଟାଉନହଲ ବାରଣ୍ଡା କିମ୍ବା କୌଣସି ଦୋକାନ ପିଣ୍ଡା । ସେଠାରେ ପୁଣି ଯଦି ପୁଲିସ ପହଂଚି ଯାଏ ତେବେ ଅବସ୍ଥା କାହେଲ । ସେଥି ନିମନ୍ତେ କୌଣସି ପ୍ରକାର ରାତି କଟାଇ ରାତି ନପାହୁଣୁ ବଡ଼ି ପାହାନ୍ତାରୁ ଉଠି ମ୍ୟୁନିସିପାଲିଟି ପୋଖରୀରେ ଗାଧୋଇ ଯେ ଯୁଆଡେ ଛିନ୍‌ଛତର । ରାତିରେ ଯାହା ପାଞ୍ଚ କରି ଥାଆନ୍ତି, ସେହି ଅନୁସାରେ ବିଭିନ୍ନ ଯାଗାରେ ଆଇନ ଅମାନ୍ୟ କିମ୍ବା ସରକାରକୁ ହଇରଣ କରିବା କାମରେ ଲଗି ଯାଆନ୍ତି । ଏକ ପ୍ରକାର ଯାଯାବର ଜୀବନ । ଖାଇବା, ପିଇବା, ରହିବା ଲାଗି ପରୁଆ ନଥିଲା । କୁଆଡୁ କେମିତି ଆସି ଲୋକଙ୍କ ପାଖରୁ ସାହାଯ୍ୟ ପହଂଚି ଯାଏ । ସରକାରୀ ଶାସ୍ତି ଭୟ ସତ୍ୱେ ଏମିତି ଭାବରେ ଗୋପନରେ ସାହାଯ୍ୟ କରିବା ନିମନ୍ତେ ଲୋକେ ପଛାନ୍ତି ନାହିଁ ।

ଏହି ୧୩ଟି ଅର୍ଡିନାନସ୍ ଫଳରେ ଲୋକେ ଭୟଭୀତ ହୋଇଯିବେ ଏବଂ ଆନ୍ଦୋଳନ ଦବିଯିବ— ଏହା ଥିଲା ବ୍ରିଟିଶ ସରକାରର ଚକ୍ରାନ୍ତ । ଓଡ଼ିଶାରେ

କଂଗ୍ରେସ ଅଧିବେଶନ ବସିବାର ଥିଲା । ସେହି କାମରେ ନେତା କର୍ମୀ ସ୍ୱରିଆଡେ ବାଣ୍ଟି ହୋଇ ଥାଆନ୍ତି । ଗାନ୍ଧୀଜୀ ଗୋଲଟେବଲରୁ ସଦ୍ୟ ଫେରି ଥାଆନ୍ତି । ଏପରି ଚଡକ ହଠାତ୍ ପଡ଼ିଲା ।

ମୁଁ କଟକରେ ଏକ ହିନ୍ଦୁସ୍ଥାନୀ ସେବାଦଳ ଶିବିର ଚଳାଉଥିଲି । ଏହି ଦିବସରେ ଉଦ୍‌ଯାପନ ହେବାର ଥିଲା । କାଠଯୋଡ଼ି ନଈବାଲି ସ୍ଥିର ହୋଇଥିଲା । ଜାତୀୟ ପତାକା ପୋତି ଆମର କେତେକ କାଡେଟ ନଈ ବାଲିରେ ବସିଥିଲେ । ନଈବାଲିରେ ପୁଲିସ ଲଠିଆଳୀ ଫଉଜ ଜାଗତିଆର । ଲୋକ ଠାଳ ମଠାଳ । ସବୁ କାଠଯୋଡ଼ି ବନ୍ଧ ଉପରେ ଠୁଳ ହୋଇଥିଲେ । ତଳକୁ ଗଡ଼ିବାକୁ ହୁଏତ ମନ ଥିଲେ ବି ସାହସ କରୁ ନଥିଲେ । ମୁଁ ବିଗ୍ଭରିଲି କେହି ସାହସ କରି ଆଇନ ଭଙ୍ଗ ନକଲେ ଓଡ଼ିଶାରେ ଆନ୍ଦୋଳନ ମୂଳରୁ ଦବି ଯିବ । ମୋର କ୍ୟାଡେଟମାନେ ପ୍ରସ୍ତୁତ ହୋଇଗଲେ ଏବଂ ଆମେ ସ୍ଲୋଗାନ ଦେଇ 'ବନ୍ଦେ ମାତରମ୍' କହି ସଦର୍ପରେ ତଳକୁ ଗଡ଼ିଲୁ । ଆମ ଦେଖାଦେଖି ଲୋକମାନେ ବି ତଳକୁ ଗଡ଼ିଲେ । ଆମେ କଲୁ ସଭ; ପୁଲିସ ମାଜିଷ୍ଟ୍ରେଟ ଆମ ଉପରେ ୧୪୪ ଧାରା ଜାରି କଲେ, ସଭକୁ ବେଆଇନ ଘୋଷଣା କଲେ । ଲଠି ଦେଖାଇ ଜନତାଙ୍କୁ ଘଉଡାଇ ଦେଲେ । ମତେ ଓ ଦେବେନ୍ଦ୍ର ବାନାର୍ଜିଙ୍କୁ ହାତକଡ଼ି ପକାଇ ପୁଲିସ ଭ୍ୟାନରେ ଆଣିଲେ ଲାଲବାଗ ଥାନାକୁ । ଲୋକେ ଗାଡ଼ି ପଛରେ ଯେମିତି ଦଉଡ଼ି ଦଉଡ଼ି ଆମର ଜୟଧ୍ୱନୀ କରି ଥାନା ପର୍ଯ୍ୟନ୍ତ ଆସିଥିଲେ, ସେ ଦୃଶ୍ୟ ଭୁଲିବାର ନୁହେଁ । ଏହି ଗୋଟିକ କାମରେ କେମିତି ଶହ ଶହ ଲୋକ ସରକାର ବିରୋଧୀ ହୋଇ ପଡ଼ିଲେ । ଆମେ ହେଲୁ ଭରତର ପୂର୍ଣ୍ଣ ସ୍ୱାଧୀନତା ଲାଗି ଦ୍ୱିତୀୟ ସମରରେ ଓଡ଼ିଶାରେ ପ୍ରଥମ ରାଜବନ୍ଦୀ ।

ଜେଲଖାନାରୁ ଆମକୁ ନେଇ ସାଧାରଣ କଏଦୀଙ୍କ ସାଙ୍ଗରେ ରଖାଗଲା ଏକ ବଡ ୱ୍ୟାର୍ଡରେ । କଏଦୀ ଆସି ଘେରିଗଲେ । ସେତେବେଳକୁ ଇଲେକ୍‌ଟ୍ରିକ ହୋଇ ନଥାଏ । ସବା ଉପରେ ଘର ଭିତରେ ଜୁଳୁଜୁଳୁ ହୋଇ ଟଙ୍ଗା ହୋଇଥାଏ, ଜଳୁଥାଏ ଗୋଟିଏ ଲଣ୍ଠଣ । ସେଠିକି କାହାରି ହାତ ପାଇବ ନାହିଁ; ଏପରିକି ବାଡ଼ି ଦେଖାଇ କିମ୍ବା ଜଣକ ଉପରେ ଜଣେ ଠିଆ ହୋଇ ବି

ହାତ ପାଇବ ନାହିଁ । ସେଇ ଅନ୍ଧାରୀ ମିଞ୍ଜି ମିଞ୍ଜି ଆଲୁଅରେ ଗତି କଟିଲା; ଖିଆ ନାହିଁ, ପିଆ ନାହିଁ ।

ଘରେ ତାଲା ପଡ଼ିଯିବାରୁ ଗୁରିକଡରେ ଆସି ବସିଗଲେ କଏଦୀ ଭାଇମାନେ । ଆମେ କୌଣସି ଅଦ୍‌ଭୁତ ଜୀବ ପରି ମନେ ହେଲୁ । ସେମାନେ ନା ବୁଝୁ ଥାଆନ୍ତି ଆମେ ଗାନ୍ଧୀଲୋକ କିମ୍ବା ଆଇନ ଅମାନ୍ୟ କଥା । ବେଶି ସମୟ ଆମ ପାଖେ କଟାଇବାକୁ ତାଙ୍କୁ ଡର କାହିଁ ? ଦିନଯାକ ଖଟି ଖଟି ଆସି ଥାଆନ୍ତି । ଏକାଠି ହେବାର ମଉକା ଏଇ ରାତିଟି । ତେଣୁ ତାଙ୍କର ଗପ କାରବାର ଆରମ୍ଭ ହୋଇଯାଏ; ଯାବତୀୟ ମନ୍ଦ ପ୍ରକୃତି ଓ ପ୍ରବୃତ୍ତି ପ୍ରକାଶ ପାଏ । ଜେଲଖାନାରେ ତ ଅନ୍ୟ ଆମୋଦ ପ୍ରମୋଦର ବ୍ୟବସ୍ଥା ନଥାଏ— ବହୁଦିନ ଭିତରେ ରହିଲେ ନିଜ ମନର ଭାବନା ଓ ବାସନାକୁ ଦବାଇ ରଖିବାକୁ ପଡେ । ବର୍ଷ ବର୍ଷ ଧରି ଜଣେ ନାରୀ ଦେଖି ପାରନ୍ତି ନାହିଁ, ସମାଜରୁ ସଂପୂର୍ଣ୍ଣ ରୂପେ ବିଚ୍ଛିନ୍ନ ହୋଇ ରହି ଥାଆନ୍ତି । ଯାହା କୁହାକୋହି ହୁଅନ୍ତି ତାହା କାନ ଶୁଣିବ ନାହିଁ କି ଆଖି ଦେଖିବ ନାହିଁ । ଆମକୁ ରାତିଟି ରଖାଗଲା ଏଭଳି ଖୁଆଡରେ । ସକାଳେ ଖୋଲି ସମସ୍ତଙ୍କୁ ଠିଆ କରାଗଲା ଧାଡ଼ି କରି ହାତରେ ଟିକଟ ଧରି 'ସରକାର ସଲାମ' କହିବାକୁ । ଆମେ ଟିକଟ ଧରିଲୁ ନାହିଁ କିମ୍ବା ଧାଡ଼ିରେ ଛିଡା ହେଲୁ ନାହିଁ । ଭିଡାଭିଡ଼ି କଲେ; ମାଡ଼ ଦେଇ ନାହାଁନ୍ତି । ଏପରି ଅଝଟପଣିଆ କାଳେ ଅନ୍ୟ କଏଦୀଙ୍କି ଲାଗିଯିବ, ତେଣୁ ଆମକୁ ନେଇ ରଖାଗଲା ଅଲଗା, ଏକ ଭିନ୍ନ ଯାଗାରେ । ଆମେ ସ୍ୱସ୍ତିର ନିଶ୍ୱାସ ମାରିଲୁ ।

卐

[ ୪ ]

# ଜେଲ ଯିବା ପୂର୍ବରୁ

ଆଗରୁ ଲେଖିଛି ୧୯୩୦ ମସିହା ନଭେମ୍ବର ୧୬ ତାରିଖରେ ମୋର ପ୍ରଥମ ଗିରଫ ଓ ଜେଲଯାତ୍ରା । ମାତ୍ର ଏହା ହେଲା କିପରି ? ବୟସ ତ ମୋଟେ ସତର । ଦେଶ ସ୍ୱାଧୀନତା ଓ ମହାତ୍ମା ଗାନ୍ଧୀଙ୍କ ସ୍ୱରାଜ ଡାକରର ତାତ୍ପର୍ଯ୍ୟ କଣ ବୁଝିବାର ଶକ୍ତି ଥିଲା ! କି ପ୍ରେରଣା ମୋ ପରି ଏକ ଦରିଦ୍ର ତରୁଣକୁ ଭବିଷ୍ୟତକୁ ନଅନାଇ ଜେଲ ପଠାଇଲା ! ସେ ପ୍ରେରଣା ପୁଣି ଏମିତି ଯେ ଦୁଃଖି ପରିବାରର ଅସୁବିଧା ବି ମନରେ ଧରିଲା ନାହିଁ । ପାଠପଢି ରୋଜଗାର ନକଲେ ଆମ ପରିବାର ଯେମିତି କୌଣସି ପ୍ରକାର ଯେ ବଂଚି ରହି ଥିଲେ ସେ ଅବସ୍ଥାର କିଛି ଉନ୍ନତି ହୋଇ ପାରିବ ନାହିଁ; କାହିଁ– ଏହା ବି ମନକୁ ଘାରିଲା ନାହିଁ । ଏହାର କୌଣସି ସମୁଚିତ କାରଣ ଦେବା ମୁସ୍କିଲ; ମାତ୍ର କଟକରେ ମୁଁ ଯେଉଁ ଦୁଇଟି ବର୍ଷ ସ୍କୁଲରେ ପଢୁଥିଲି, ସେତିକିବେଳେ ଏପରି ପରିବେଶ ଭିତରେ ରହିଥିଲି, ସେଥିରେ ଗୋଟାଏ ପ୍ରକାର ଜାତୀୟ ଭାବନା ମନରେ ଉଙ୍କି ଆସିଥିଲା ।

ରହୁଥିଲି ମାମୁଁଘରେ, ତେଲେଙ୍ଗା ବଜାରରେ । ମାମୁଁ ପ୍ରସିଦ୍ଧ ପୁସ୍ତକ ପ୍ରକାଶକ, ଜାତୀୟବାଦୀ, କଂଗ୍ରେସପ୍ରେମୀ । ସେତେବେଳେ କିଛି ସତ୍ୟାଗ୍ରହ କିମ୍ବା ଆଇନ ଅମାନ୍ୟ ବା ସରକାର ବିରୋଧୀ କାମ କରା ଯାଉ ନଥିଲା । ଖଦଡ଼ ପ୍ରଚ୍ଚର ଏକମାତ୍ର ସରକାର ବିରୋଧୀ କାର୍ଯ୍ୟ । ଗାନ୍ଧୀଜୀଙ୍କ ରଚନାତ୍ମକ ସଂଗଠନର ବିଶେଷ ଅଙ୍ଗ । ମାମୁଁ ପଣ୍ଡିତ ଆକୁଳ ମିଶ୍ର ଅଳକାଶ୍ରମ ଓ

ଚମ୍ପାପୁର ଗାନ୍ଧୀ ଆଶ୍ରମ ସହ ସଂପୃକ୍ତ ଥାଆନ୍ତି । ଓଡ଼ିଶା ବାହାରୁ କେହି ଖଦୀ ପ୍ରଚାରକ ଆସିଲେ ଆମ ଘରେ ଅତିଥି ହୁଅନ୍ତି । ଖଦଡ, ଗାନ୍ଧୀ ଓ ସ୍ୱରାଜ୍ୟ ବିଷୟରେ ସେମାନଙ୍କ ଭିତରେ ଆଲୋଚନା ହୁଏ । ହିନ୍ଦୀ ଓ ଓଡ଼ିଆ ଉଭୟ ଭାଷା– ଆମେ ଦୂରରୁ ଉଙ୍କି ଦେଖୁ ଏବଂ କିଛି କିଛି କାନପାତି ଶୁଣୁ । ବିଷୟଟି କିଛି ସ୍ପଷ୍ଟ ଜଣା ପଡୁ ନଥିଲା । ତେବେ ଖଦଡ ପିନ୍ଧା ଏକ ଦେଶ କାମ ବୋଲି ମୋଟା-ମୋଟି ବୁଝୁଥିଲୁ । ଏହାକୁ ବ୍ରିଟିଶ ସରକାର ବିରୋଧ କରେ ଏବଂ ସରକାରୀ ବିରୋଧୀ ବୋଲି ବହୁ ପରେ ବୁଝିଲୁ । ସତ୍ୟାଗ୍ରହ ଆନ୍ଦୋଳନ ବେଳେ ସ୍ଲୋଗାନ କରାଗଲା– "ଷଣ୍ଢକୁ ନାଲିକନା ପରି, ସରକାରକୁ ହେଲା ଏ ବଇରୀ ।"

ସେତେବେଳେ ଆମ ଆଖିରେ ଏକମାତ୍ର କଂଗ୍ରେସ ଲୋକ ଦିଶୁଥିଲେ ରାଜକୃଷ୍ଣ ବୋଷ । ସେ ହେଲେ ଓଡ଼ିଶାର ପ୍ରଥମ ଅସହଯୋଗୀ । ପ୍ରଗଲ୍‌ଭ ବକ୍ତା, ସଂଗଠକ । ମହାତ୍ମା ଗାନ୍ଧୀ ବା ଆଉ ଯେତେ ବଡନେତା ଆସନ୍ତି, ତାଙ୍କର ହିନ୍ଦୀ ବା ଇଂରେଜୀ ଭାଷଣକୁ ଅନୁବାଦ କରିବା ପାଳି ତାଙ୍କର । ନିଜର ଭାଷଣରେ ସେ ଲୋକଙ୍କୁ ତତାଇ ପାରନ୍ତି; ମନ୍ତ୍ରମୁଗ୍‌ଧ ପରି ଲୋକେ ଶୁଣନ୍ତି– ଆମ ଯୁବ ଛାତ୍ରଙ୍କ ଭିତରେ ସେ ଥିଲେ ଅତି ପ୍ରିୟ । କେବଳ ଭାଷଣ ଯୋଗୁଁ ନୁହେଁ, କଟକରେ ଯେତେ ସ୍କୁଲ କଲେଜ ହଷ୍ଟେଲ ଥାଏ, ସେ ସେଠିକି ଯାଆନ୍ତି, ପିଲାଙ୍କ ସାଙ୍ଗରେ ମିଶନ୍ତି, ହସି, ଖେଳି ନାନା ଉପାୟରେ ବଶ କରି ନିଅନ୍ତି । ଏହାକୁ ଆମେ ସେତେବେଳେ ରାଜନୀତି ବୋଲି ବୁଝିପାରୁ ନଥିଲୁ । କିନ୍ତୁ ତାଙ୍କର ଲୋକପ୍ରିୟତା ଛାତ୍ର ଯୁବକଙ୍କ ଭିତରେ ଏପରି ବଢିଥିଲା ତାଙ୍କୁ ସମସ୍ତେ କହିଲେ; କାଗଜ-ମାନଙ୍କରେ ଲେଖିଲେ– 'ଛାତ୍ରବନ୍ଧୁ ଓ ଯୁବକର ସଖା' ରାଜକୃଷ୍ଣ ।

ତାଙ୍କର ରାଜଦ୍ରୋହ ଅପରାଧରେ ଡେ଼ପୁଟି ଭଗବାନ ମହାପାତ୍ରଙ୍କ ଇଜଲାସରେ ଯେତେବେଳେ ବିଚାର ହୁଏ, କି ପ୍ରବଳ ଭିଡ଼ । କେହି ହରତାଳ ଡ଼ାକରା ଦେଇ ନଥାଏ; ତଥାପି ସ୍କୁଲ କଲେଜରୁ ପଳାଇ ଆସିଲେ ଶହ ଶହ ଯୁବକ, ଛାତ୍ର । ସମସ୍ତେ କଚେରୀରେ ଠୁଳ । କି ଉନ୍ମାଦନା । ତାଙ୍କୁ ୨ ବର୍ଷରୁ ଅଧିକ ସଶ୍ରମ କାରାଦଣ୍ଡ ହେଲା । କେବଳ ବକ୍ତୃତା ଯୋଗୁଁ ସେତେବେଳେ ରାଜଦ୍ରୋହ ଅପରାଧରେ ଦଣ୍ଡିତ ହେବା ବୋଧହୁଏ ଏହାହିଁ ଏକମାତ୍ର କେସ୍ । ଏହାର ପ୍ରଭାବ ଆମ ସବୁ ପିଲାଙ୍କ ଉପରେ ପଡ଼ିଲା– ମୋ ଉପରେ ଟିକିଏ ବେଶି ।

ସେ ଆମ ଘରକୁ, ରାମକୃଷ୍ଣ କଟେଇଙ୍କୁ ବାରମ୍ବାର ଆସୁଥିଲେ; ବ୍ୟକ୍ତିଗତ ସମ୍ପର୍କ ସ୍ଥାପନ କରିଥିଲେ । ସେ ଥାଆନ୍ତି ମୁଖ୍ୟ ଖଦୀ ପ୍ରଚାରକ । ୧୯୨୮ ମସିହାରେ ଖଦୀ ପିନ୍ଧିବାର ଶପଥପତ୍ର ଦସ୍ତଖତ କରଇବା ନିମନ୍ତେ ଗାନ୍ଧୀଜୀଙ୍କର ନିର୍ଦ୍ଦେଶ ଥିଲା । ସେ ଆମମାନଙ୍କ ଠାରୁ ଏକ ଏକ ପ୍ରତିଜ୍ଞାପତ୍ର ଦସ୍ତଖତ କରାଇ ନେଲେ । ସେହିଦିନୁ ମୁଁ ହେଲି ଅଭ୍ୟସ୍ତ ଭାବରେ ଖଦୀ ପିନ୍ଧାଳୀ । ଆଜି ପର୍ଯ୍ୟନ୍ତ ରଖି ପାରିଛି । କେବଳ ଜେଲଖାନାରେ ଜେଲ ପୋଷାକ ତ ଆଉ ଖଦୀ ନଥିଲା ସେତେବେଳେ; ନଚେତ୍ ଯଥାସମ୍ଭବ ଖଦୀ ପିନ୍ଧାଟା ମୁଁ ରୀତିମତ ପାଳନ କରି ଆସିଛି । ତାଙ୍କ ଭାଷଣର ଚାତୁରୀ କଥା କଣ କହିବି !

୧୯୩୬ ମସିହାରେ ନିର୍ବାଚନ ପ୍ରଚାର ଲାଗି କଂଗ୍ରେସ ସଭାପତି ରୂପେ ଜବାହାରଲାଲ ଆସିଥିଲେ । ଆମେ ସବୁ ସାଙ୍ଗରେ ଥିଲୁ । ପଣ୍ଡିତ ନୀଳକଣ୍ଠ ଦାସ ସେତେବେଳେ ଓଡ଼ିଶା କଂଗ୍ରେସର ସଭାପତି । ଜବାହାରଲାଲ ମଟର କାର୍‌ରେ– ବୋଧହୁଏ ଫୋର୍ଡ ଗାଡ଼ିଟିରେ– ଜଗତ୍‌ସିଂହପୁର ଗଲେ । ମୁଷାଏବ ଖାଁ ଥିଲେ କଟକର ଏସ୍.ଡ଼ି.ଓ.; ସେ ବି ସଭାକୁ ଯାଉଥାଆନ୍ତି । ଆଗରୁ ବାହାରି ଯାଇ-ଯାଇଥିଲେ । କନ୍ଦରପୁର ପାଖରେ ସେ ଆଗରେ; ଜବାହାରଲାଲ ଆମ ସମସ୍ତଙ୍କ ଗାଡ଼ି ପଛରେ । ଆଜି କାଲି ପରି ପକ୍‌କା ରାସ୍ତା ନଥାଏ । କେତେ ଯାଗାରେ ନାଲିଗୋଡ଼ି ପଡ଼ିଥାଏ, ବାକି ସବୁ ଧୂଳି ରାସ୍ତା । ତାଙ୍କ ଗାଡ଼ି ଧୂଳିରେ ଜବାହାର-ଲାଲ ପୋତି ହୋଇ ପଡ଼ିଲେ । ଯେତେ ହର୍ଣ୍ଣ ଦିଆଗଲା ସେ ବାଟ ଛାଡ଼ିଲେ ନାହିଁ । ଜଗତ୍‌ସିଂହପୁରରେ ଉପରବେଳା ପହଞ୍ଚିଲୁ । ବହୁ ଗାଁ।ଆ ଲୋକ ସମାଗମ । ମାଇକ ବ୍ୟବହାର ସେ ପର୍ଯ୍ୟନ୍ତ ଓଡ଼ିଶାରେ ହୋଇ ନଥିଲା । ନେହୁରୁଙ୍କ ଟିକିଏ ଗଳାରୋଗ ଥାଏ । ଧୂଳି ଖାଇ ତଣ୍ଟି ଶୁଖି ଗଲା । ତାଙ୍କ ସେକ୍ରେଟାରୀ ଉପାଧ୍ୟାୟଙ୍କୁ ଡାକି ଫ୍ଲାସ୍‌କରୁ ଗରମପାଣି କାଢ଼ି ପିଇଲେ । ବଡ଼ ବିରକ୍ତ ହେଲେ । ସେହି ବିରକ୍ତି ଭାବକୁ ବକ୍ତୃତାରେ ପ୍ରକାଶ କଲେ । କହିଲେ ମୁଁ ଇଉରୋପ, ଆମେରିକା ସର୍ବତ୍ର ବୁଲିଛି । ମାତ୍ର ଏପରି ଆସ୍ପର୍ଦ୍ଧା କେଉଁଠି ଦେଖି ନଥିଲି । ସାଧାରଣ ଜଣେ ତଳିଆ ଅଫିସରର ଏପରି ଅଶିଷ୍ଟ ଆଚରଣ ! ଏତିକି କଥା ରାଜକୃଷ୍ଣ ବାବୁ ଏପରି ଫେଣେଇ ବୁଝାଇ ଦେଲେ ଯେ, ସମଗ୍ର ଜନତା ଭିତରେ କ୍ରୋଧ ଖେଳିଗଲା । ଅବସ୍ଥା ଅସମ୍ଭାଳ । ମୁଷାଏବ ଖାଁ ପ୍ରକାଶ୍ୟରେ ଆସି ଠିଆ ହୋଇ ସମସ୍ତଙ୍କ ସାମନାରେ ନେହୁରୁଙ୍କୁ କ୍ଷମା ମାଗିଲେ । ରାଜକୃଷ୍ଣ ବାବୁଙ୍କ

ବୁଝାଇବା ଢ଼ଙ୍ଗ ସେହିପରି ଥିଲା । ଫେରିଲା ବେଳକୁ ମୁସାଏବ ଖାଁଙ୍କର ଆଉ ପତ୍ତା ମିଳିଲା ନାହିଁ । ରାଜକୃଷ୍ଣ ବାବୁ ଏବେ ବୃଦ୍ଧ ରୁଗ୍‌ଣ ଅବସ୍ଥାରେ ଅଛନ୍ତି । ବୟସ ୯୦କୁ ଟପି ଗଲାଣି । ଓଡ଼ିଶା ତାଙ୍କୁ ଉପଯୁକ୍ତ ସମ୍ମାନ ଦେଇପାରି ନାହିଁ । ଦି'କଡାର ଲୋକେ ସବୁ ପେଣ୍ଟ ପାଣ୍ଟ କରି କେଉଁଠିକି ଉଠିଗଲେ ।

ଗୋପବନ୍ଧୁ ଚୌଧୁରୀ ଇଞ୍ଚୁଡ଼ିକୁ ଲୁଣ ମାରିବାକୁ ଯିବା ରାସ୍ତାରେ ଆମ ଗାଁଆ ପାଖ ରାନ୍ଦୋଳ ଲହଣ ଗ୍ରାମରେ ଯେ ଗିରଫ ହୋଇଗଲେ, ତାହା ଅଦ୍ଭୁତ ପ୍ରଭାବ ପକାଇଲା । ଆମେ କେତେକ ବାହାରି କଲେଜିଏଟ୍ ସ୍କୁଲ ଆଗରେ ପିକେଟିଂ କଲୁ । ହରତାଳ ହେଲା । କେତେକଙ୍କୁ ସ୍କୁଲରୁ ବହିଷ୍କାର କରାଗଲା । ମୁଁ ଅବଶ୍ୟ ବିତାଡ଼ିତ ହେଲି ନାହିଁ । ମାମୁଁଙ୍କୁ ହେଡମାଷ୍ଟର ଶର୍ଚ୍ଚିରାୟ ଖୁବ ଖାତିର କରୁଥିଲେ । ତାଙ୍କୁ କହିଗଲେ ମତେ ତାଗିଦ କରିଦେବା ନିମନ୍ତେ । ତାପରେ ମୁଁ ସ୍ଥିର କଲି ଆଉ ଇଂରେଜଙ୍କ ସ୍କୁଲରେ ନପଢ଼ିବା ଲାଗି । ମନର ଦୃଢ଼ତା ଦେଖି ମାମୁଁ ରୋକିଲେ ନାହିଁ । ମାତ୍ର ମୁଁ ସ୍କୁଲ ଛାଡ଼ି ଛତର ହୋଇଗଲେ ଘରର ଦୁର୍ଦ୍ଦଶା ବଢ଼ିବ ଭାବି ମୋର ଭାଇନା, ବଡଭାଇ– ବଡ ଅସ୍ଥିର ହୋଇଗଲେ । ସେ ରାଗରେ ଏକ କାଠ ଫାଳିଆରେ ମୋ ବାଁ' ପାଖ ଅଣ୍ଟାରେ ଏପରି ପ୍ରହାର ଦେଲେ ଯେ, ମୁଁ ୨।୪ ଦିନ ଉଠି ବସି ପାରି ନଥିଲି । ପରେ ଏହି ଆଘାତ ମୋର ଘାତକ ହେଲା । ସାଇଟିକା ରୋଗ ବାହାରି ମତେ ଅକଡାଇ ପକାଇଲା । ଆଜି ବି ସେ ରୋଗ ମୋର ଚିରସାଥି ହୋଇ ରହିଛି ଏବଂ ମୁଁ ବେଳେ ବେଳେ କଷ୍ଟ ପାଉଛି ।

ଘର ଓ ବାହାରର ତାଡନା ସତ୍ୱେ ମନର ଦୃଢ଼ତା ଭାଙ୍ଗିଲା ନାହିଁ । ଆହୁରି ଆଣ୍ଟ ହୋଇଗଲା । କେବଳ ଥରେ ନୁହେଁ, ଆହୁରି ୫ ଥର ଜେଲ ଭୋଗିବାକୁ ପଡ଼ିଲା । ସେଥିଲାଗି ଅନୁଶୋଚନା ନାହିଁ । ମୋ ମନରେ ବରଂ ଗର୍ବ ଯେ ମୁଁ ଏତେ ଦୁଃଖ ନିର୍ଯ୍ୟାତନା ସହି ସ୍ୱାଧୀନତା ସଂଗ୍ରାମରେ ଶେଷ ପର୍ଯ୍ୟନ୍ତ ରହି ପାରିଲି । ନିଜ ଆଖି ଆଗରେ ସ୍ୱାଧୀନତା ଦେଖିଲି । ଆଜିକି ୫୭ ବର୍ଷ ହେଲା ଦେଶ ସେବାରେ ନିଜକୁ ନିୟୋଗ କରି ପାରୁଛି ।

[ ୫ ]

# କେମିତି ଜେଲ ଗଲି

ମୁଁ ସ୍ୱାଧୀନତା ଆନ୍ଦୋଳନ ସଂକ୍ରାନ୍ତରେ ୫ ଥର ଜେଲ ଭୋଗିଛି । ସେଥିରୁ ଦୁଇଥର ହେଉଛି ଜବାହାରଲାଲ ନେହରୁଙ୍କ ଲାଗି । ବିସ୍ମିତ ଲାଗିପାରେ, ମାତ୍ର କଥାଟି ସତ୍ୟ ।

୧୯୩୦ ମସିହା ନଭେମ୍ବର ୧୬ ତାରିଖ ଏକ ବିଶେଷ ଦିବସ । ୧୯୩୦ ମସିହା ଆରମ୍ଭ ଗତିରେ ଲାହୋର କଂଗ୍ରେସ ଅଧିବେଶନରେ ପୂର୍ଣ୍ଣ ସ୍ୱରାଜ୍ୟ ବା ସ୍ୱାଧୀନତା ପ୍ରସ୍ତାବ ପାସ୍ ହେଲା । ଜବାହାରଲାଲ ନେହରୁ ସଭାପତି ହୋଇ-ଥିଲେ । ସେତେବେଳେ ଅଖଣ୍ଡ ଭାରତ । ଭାରତ, ପାକିସ୍ତାନ ଓ ଶ୍ରୀଲଙ୍କା ଏକାଠି ମିଶି ଭାରତ ଦେଶ । ପାକିସ୍ତାନ ହୋଇ ନଥିଲା । ଲାହୋରରେ ଭାରତରେ ଥିଲା । ସେମିତି କରାଚୀ ମଧ୍ୟ । ୧୯୩୦ରେ ଲାହୋରରେ ଅଧିବେଶନ ବସି ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଯୁଦ୍ଧ ଘୋଷଣା ହେଲା । ତା ପରବର୍ଷ ୧୯୩୧ ମସିହାରେ କଂଗ୍ରେସ ଅଧିବେଶନ ବସିଲା କରାଚୀରେ । ବ୍ରିଟିଶ ସରକାର କଂଗ୍ରେସ ସହିତ ସନ୍ଧି ସର୍ତ୍ତରେ ଆବଦ୍ଧ ହେଲା । ତାକୁ ସ୍ୱୀକାର କରିବା ନିମନ୍ତେ ଏବଂ ମହାତ୍ମା ଗାନ୍ଧୀ କଂଗ୍ରେସର ପ୍ରତିନିଧି ରୂପେ ଲଣ୍ଡନରେ ଗୋଲଟେବୁଲ ସମ୍ମିଳନୀରେ ଯୋଗ ଦେବା ନିମନ୍ତେ ଏହି ବୈଠକରେ ସ୍ଥିର ହୋଇଥିଲା ।

ପୂର୍ବରୁ ପଣ୍ଡିତ ମୋତିଲାଲ ନେହରୁ ସଭାପତି ଥିଲେ । ତାଙ୍କର ଉତ୍ତରା-ଧିକାରୀ ହେଲେ ପୁଅ ପଣ୍ଡିତ ଜବାହାରଲାଲ ନେହରୁ । ମାତ୍ର ତାଙ୍କ ନେତୃତ୍ୱରେ

ଲଢାଇ ଆରମ୍ଭ ହେବା ଯୋଗୁଁ ବ୍ରିଟିଶ ସରକାର ତାଙ୍କୁ ଗିରଫ କରି ନେଲେ । କଂଗ୍ରେସ ପାଇଁ ଥିଲା ଏକ ଯୁଦ୍ଧ ବେଳର ଅନୁଷ୍ଠାନ । ଅସାଧାରଣ ପରିସ୍ଥିତି— ସଭା ସମିତି କରି ଆଉ ଚଳି ହେଲା ନାହିଁ । ଜବାହରଲାଲ ଗିରଫ ପରେ ନିଜ ପିତା ମୋତିଲାଲ ନେହରୁଙ୍କୁ ସଭାପତି ରୂପେ ମନୋନୀତ କରି ଗଲେ । ବାପରୁ ପୁଅ, ପୁଣି ପୁଅରୁ ବାପକୁ ସଭାପତି ପଦ ଆସିଲା । ପଣ୍ଡିତ ମୋତିଲାଲ ସଭାପତି ପଦ ଗ୍ରହଣ କରି ଘୋଷଣା କରିଦେଲେ, ନଭେମ୍ବର ୧୬ ତାରିଖରେ ଦେଶସାରା ଜବାହାରଲାଲ ଗିରଫର ପ୍ରତିବାଦ ସଭା ପାଳନ କରାଯିବ । ସେହି ହିସାବରେ ଆମର ଏଠି ଜବାହାର ଦିବସ ପାଳନ କରାହେଲା ।

ଆଉ ତ କେଉଁଠି ଯାଗା ନଥିଲା । କଟକରେ ସଭା ସମିତି ଲାଗି ଗୋଟିଏ ଯାଗା ଥିଲା, କଟକ ଟାଉନ ହଲ; ମାତ୍ର ତାହା କଂଗ୍ରେସ ସଭା ଲାଗି ମିଳୁ ନଥିଲା । ତେଣୁ କାଠଯୋଡ଼ି ନଈବାଲି ଥିଲା କଂଗ୍ରେସ ସଭା ଲାଗି ଏକ ପ୍ରକାର ସ୍ଥାୟୀ ପେଣ୍ଡାଲ । ମହାତ୍ମା ଗାନ୍ଧୀ ବି ସେଇ ନଈବାଲିରେ ପୁରୀଘାଟ ଠାରେ ସଭା କରିଥିଲେ । ନଭେମ୍ବର ମାସକୁ ନଈ ଶୁଖି ଯାଇଥାଏ । ହାତୀଗଡ଼ା ଠାରୁ ଗଣେଶ ଘାଟକୁ ଲାଗି ନଈପଟ ଶୁଖିଲା ଥିଲା । ସେଇଠି ପ୍ରତିବାଦ ସଭା କରାଯିବାର ଘୋଷଣା କରାଗଲା । ପ୍ରଚାରର କିଛି ସାଧନ ଆମ ପାଖରେ ନଥିଲା । ଛାପିବା ତ ଦୂରର କଥା । ଆମ ଭିତରୁ କେତେଜଣ କାନ୍ଧରେ ନାଗରା ପକାଇ ସହର ଯାକ ବୁଲି ଖବର ବାଢେଇ ଦେଲୁ । ସରକାର ଗିରଫ ଡରରେ କେହି ନାଗରା ବାଇ ପଇସା ଦେଲେ ସୁଦ୍ଧା ଆସୁ ନଥିଲେ ।

ସାଧାରଣତଃ ସଭା ସମିତି ସନ୍ଧ୍ୟାବେଳକୁ ହେଉଥିଲା । ଏଠି ସେମିତି ମୁହଁସଞ୍ଜ ବେଳକୁ ସଭା ହେଲା । ବହୁ ଲୋକ ଏକଯୁଟ ହୋଇଗଲେ ; ବଜାରର ସାଧାରଣ ଲୋକ ମଧ୍ୟ । ଯୁବକ ଛାତ୍ର ବହୁ ସଂଖ୍ୟାରେ ଥିଲେ । ପୁଲିଶ ସଂଖ୍ୟା ଖୁବ ବେଶି ନଥିଲା । ମାତ୍ର ଏକ ଶାନ୍ତିପୂର୍ଣ୍ଣ ପ୍ରତିବାଦ ସଭାକୁ ଅନାଇଲା ବେଳକୁ ଲୋକଙ୍କ ମନରେ ଭୟ ସଞ୍ଚାର କରିବା ନିମନ୍ତେ ଯଥେଷ୍ଟ । ପୁଲିଶ ଥିଲେ ଲାଠି-ଧାରୀ, ବନ୍ଧୁକ ତାଙ୍କ ହାତରେ ନଥିଲା । ସେତେବେଳକୁ ବନ୍ଧୁକ କାରବାର ବେଶି ହୋଇ ନଥିଲା । ଆଜି ଯେମିତି ପୋକ ମାଛି ପରି ଯେଉଁଠି ପାରେ ସେଠି ବନ୍ଧୁକ ଗୁଳିଚାଳନା ହୋଇ ଯାଉଛି, ସେପରି ନଥିଲା । କିଛି ବିଧି ନିୟମକୁ ମଧ୍ୟ ମାନୁଥିଲେ । ଯେମିତି ମାଜିଷ୍ଟ୍ରେଟ ହୁକୁମ ନଦେଲେ ଗିରଫ ବା ଲାଠି ଚାଳନା ହୋଇ ପାରିବ ନାହିଁ । ଲୋକ ଭିଡ ଦେଖି ଆମ ମନ ଉଲ୍ଲାସ । ସେ

ଭିତରେ କିଛି କିଛି ନୀରବ ଦର୍ଶକ ନଥିଲେ । ସମସ୍ତେ ଜାଗତିଆର; ଏକଡ଼ ସେକଡ ହେଉଥିଲେ । ଉନ୍ମାଦନା ଭରା ପରିସ୍ଥିତି । ଆମର ସଭା ହେଲା । ସଭାପତି ହେଲେ ଗୁଣନିଧି ମହାନ୍ତି । ସାକ୍ଷାତ ଗାନ୍ଧୀ ଅବତାର ପରି ଶାନ୍ତ ଶିଷ୍ଟ ପୁରୁଷ । ମାଛି କି ମ କହୁ ନଥିଲେ । ସରକାରୀ ଚାକିରୀ ଛାଡ଼ି ଅସହଯୋଗରେ ମିଶି ଥିଲେ । ଆନ୍ଦୋଳନରେ ବାରମ୍ବାର ଜେଲ ଗଲେ । ସର୍ବସ୍ୱ ତ୍ୟାଗ କଲେ । କଟକରେ ଖଣ୍ଡେ ଜମି ଥିଲା । ଥୋରିଆ ସାହିର ସେ ଜମି ଓ ଘର ସର୍ବୋଦୟ ବାଲାଙ୍କ ପାଖରେ । ଘରଟିର ନାମ ରଖିଛନ୍ତି "ଗୁଣନିଧି ଭବନ" ।

ମାଜିଷ୍ଟ୍ରେଟ ଆଗରୁ ଉପସ୍ଥିତ ଥିଲେ । ସଭା ଆରମ୍ଭ ହେବା କ୍ଷଣି ସେ ୧୪୪ ଧାରା ଜାରି କଲେ । ସଭା ନିଷେଧ କରାଗଲା ଏବଂ ଗୁଣନିଧି ବାବୁଙ୍କ ଉପରେ ମଧ୍ୟ । କାଗଜରେ ଦସ୍ତଖତ ନେବାକୁ ଚାହିଁଲେ । ଗୁଣନିଧି ବାରଣ କରି ଦେଲେ ଏବଂ ତାଙ୍କ ଆଦେଶକୁ ଅବଜ୍ଞା କରି ସଭା ଜାରି ରଖିଲେ । ଭାଷଣ ଆରମ୍ଭ ହେଲା । ଲୋକେ ତାଳିମାରି ବେଶ ଉତ୍ସାହ ଦେଖାଇଲେ । ମାଜିଷ୍ଟ୍ରେଟ ଆଉ ସହ୍ୟ କରି ପାରିଲେ ନାହିଁ । ସଭାକୁ ବେଆଇନ ଘୋଷଣା କରାଗଲା । ଲୋକଙ୍କୁ ଘଉଡା-ଇଲେ । କେହି ତାଙ୍କ କଥା ମାନିଲେ ନାହିଁ । ଆମ ସାଙ୍ଗରେ ବସି ରହିଲେ— ସଭା ଚାଲିଥିଲା । ପୁଲିସ ଧୈର୍ଯ୍ୟ ହରାଇ ଲାଠି ଦ୍ୱାରା ଲୋକଙ୍କୁ ମାଡ ମାରିଲେ ଓ ବାଲିରୁ ଠେଲି ଠେଲି ଉପରକୁ ନେଇଗଲେ । ଗୁଣନିଧି ବାବୁଙ୍କ ସମେତ ଆମେ ପ୍ରାୟ ୧୬।୧୭ ଜଣ ଗିରଫ ହେଲୁ । ଏହି ସଭାରେ କଟକ ସହରର ସାଧାରଣ ଲୋକ ଯଥା ଦୋକାନୀ, ଶଗଡ଼ିଆ ଆଦି ଗିରଫ ହୋଇଥିଲେ । ପିଠାପୁରର ଗନ୍ଧର୍ବ, ଚୌଧୁରୀ ବଜାର କୁଞ୍ଜ ଇତ୍ୟାଦି । ଆଉ ମୋର ସ୍ମରଣ ନାହିଁ । ଆମ ଭିତରେ ବିନୋଦ କାନୁନଗୋ, ଆକୁଳାନନ୍ଦ ବେହେରା ଓ ଭରତ ପ୍ରସାଦ ସିଂହ ଥିଲେ । ସେ ରାତିଟି ପୁଲିସ ଲକ୍‌ଅପ୍‌ରେ ରହିଲୁ । ତହିଁ ଆରଦିନ କଚେରୀରେ ଆମକୁ ସବୁ ପେଶ୍ କରାଗଲା । ଗାନ୍ଧିଜୀଙ୍କର ନିର୍ଦ୍ଦେଶ ଥିଲା ଆମେ ଲଢିଲୁ ନାହିଁ । ସାଧାରଣ ଲୋକ ଯେଉଁମାନେ ଥିଲେ ସେମାନେ ବି ସେଇ ପନ୍ଥା ମାନି ନେଲେ । ସମସ୍ତଙ୍କୁ ସଜା ମିଳିଲା ୬ ମାସ ସଶ୍ରମ କାରାଦଣ୍ଡ, ୫୦୦ ଟଙ୍କା ଜୋରିମାନା ନଚେତ୍ ଆଉ ୩ ମାସ ଭୋଗିବାକୁ ପଡ଼ିବ । ଆମେ ସମସ୍ତେ ଚାଲିଲୁ ହାତକଡ଼ି ଲଗାଇ କଟକ ଜେଲ ।

卐

[ ୬ ]

# କଟକ ଜେଲ ଭିତରେ

ଆମେ କଟକ ଜେଲ ପହଞ୍ଚିବା ଆଗରୁ ଗଜବନ୍ଦୀରେ ପ୍ରାୟ ଭରପୂର ହୋଇ ଯାଇଥିଲା । ୧୫ ଓ ୧୬ ନମ୍ବର ଓ୍ୟାର୍ଡରେ ସେମାନେ ରହିଥିଲେ । ଆଉ ସବୁଥିରେ ସାଧାରଣ କଏଦୀ ଥିଲେ । ୧୭ଟି ଓ୍ୟାର୍ଡ ଭିତରୁ ଗୋଟିଏ ଥାଏ ନାରୀ ବନ୍ଦୀଙ୍କ ପାଇଁ । ସେଇଟା ହେଲା ୧୨ ନମ୍ବର ଓ୍ୟାର୍ଡ । ଚାର ବଡ କାନ୍ଥ ସିଟି ହସପିଟାଲ ପାଖକୁ ଲାଗିଛି । ମେଲଓ୍ୟାର୍ଡ ଗୁଡ଼ିକ ଠାରୁ ବେଶ୍ ଦୂରରେ । ସେତେବେଳେ ବୋଧହୁଏ ବେଶି ମହିଳା କଏଦୀ ନଥିଲେ । ସେମାନଙ୍କୁ ସ୍ୱତନ୍ତ୍ର ଏକ ସ୍ଥାନକୁ ପଠାଇ ଆମେ ଗୁଡ଼ାଏ ଲୋକ ଥିବାରୁ ଏହି ଓ୍ୟାର୍ଡଟି ଠିକ କରାଗଲା । ଆମ ସମସ୍ତିଙ୍କି 'ସି' କ୍ଲାସ ମିଳିଥିଲା । ସେଥିରେ ଆମେ ଭାରି ଖୁସି । ସମସ୍ତେ ଏକାଠି ରହିବୁ ।

ଆମ ସମସ୍ତିଙ୍କ ପାଇଁ ସେବକାଳର ସରକାରୀ ନିୟମ ଅନୁସାରେ ମୁଣ୍ଡପିଛା ପାଞ୍ଚଅଣା ଖରଚ ହେବ । ସେଇଥିରେ ସକାଳ, ଦିପହର ଓ ସଞ୍ଜବେଳ– ୩ ଥରର ଖାଇବା ଦିଆଯିବ । କିପରି ଖାଦ୍ୟ ଅନୁମାନ କରଯାଇ ପାରେ । ସେହିଥିରୁ ପୁଣି ଜେଲ କର୍ତ୍ତୃପକ୍ଷଙ୍କର କଣ୍ଟ୍ରାକ୍ଟର ସହ ଭାଗମାପ ଥାଏ । ଡାଲିରେ ଯଦି ଗ୍ରେପା ମିଶାଯାଏ, ଗୁଡ଼ଳରେ ଏତେ ଗୋଡ଼ି ଯେ ଦାନ୍ତ କଚମଚ ହୁଏ, ସେଥିରେ ବିସ୍ମିତ ହେବାର କିଛି ନାହିଁ । ପ୍ରତିବାଦ ହୁଏ, ଓଳିଏ ଓଳିଏ ଖାଇବା ଫେରାଇ ଦିଆଯାଏ । ଓପାସ ରହୁ । ଦିନ ଓଳିଏ ଟିକିଏ ବଦଳେ । ପୁଣି ଯୋଉ କଥାକୁ ସେହି କଥା । ମଶାରୀ ନଥିଲା କି ଗଦି ନଥିଲା । ମାଟି ପିଣ୍ଡିରେ ଖଣ୍ଡେ

କମ୍ବଳ କି ଘୁଷୁରିଆ ପଟି ଖଣ୍ଡେ ଉପରେ ଶୁଆ । ୱ୍ୟାର୍ଡ ଭିତରେ ଗୋଟିଏ ପାଇଖାନା । ୪୦।୫୦ ଜଣ ବନ୍ଦୀ ସେଇଥିରେ ପରିସ୍ରା ଓ ଝାଡ଼ା ଫେରୁଥିଲେ । ତାର ସୁଗନ୍ଧ ସାଗ ୱ୍ୟାର୍ଡବାସୀ ପାଇବାରେ କିଛି ବାଧା ନଥିଲା ।

ସଞ୍ଜଅନ୍ଧାର ଆଗରୁ ଖାଇ ତାଲା ବନ୍ଦ ହୋଇଯାଏ, ଖୋଲେ ସେମିତି ସକାଳ ୬ଟା ବେଳେ । ଆଲୁଅ ତ ଉପରେ ଟଙ୍ଗା ହୋଇଥାଏ । ପଢ଼ାପଢ଼ି କରିବା ଅସମ୍ଭବ । ପ୍ରାୟ ୧୨ ଘଣ୍ଟା କାଟିବାକୁ ପଡ଼େ ଏମିତି ଦୁର୍ଗନ୍ଧମୟ ମଶା, ଡାଁସଙ୍କ ଭିତରେ । ବାଧ୍ୟ ହୋଇ ନାନା ଗପ୍ପୁଡ଼ି ଗପରେ ସମସ୍ତେ ଲାଗି ଯାଆନ୍ତି । ଗୁଣନିଧି ବାବୁଙ୍କର ବୟସର ଯେଉଁମାନେ ଥିଲେ ସେମାନେ ମୁଖ୍ୟତଃ ଗୀତା ପାରାୟଣ କରନ୍ତି । ଗୀତା ଅଧ୍ୟୟନ ଥିଲା ଗାନ୍ଧୀଜୀଙ୍କର ନିର୍ଦ୍ଦେଶ । ବେଶି ଦୁଃଖ ପାଆନ୍ତି ଯେଉଁମାନଙ୍କର ପାନ ବିଡ଼ି ଅଭ୍ୟାସ ଥିଲା । ସେତେବେଳେ ଏସବୁ ନିଶାଦ୍ରବ୍ୟ ଶକ୍ତ ମନା । ଏପରିକି ଏ, ବି କ୍ଲାସ ବନ୍ଦୀଙ୍କ ମଧ୍ୟ ଛାଡ ନଥିଲା । ଆମର ଜ୍ୟେଷ୍ଠ ପୁରୁଷମାନେ କି ଲଇବଲ ଓ ହାନିମାନ ହୁଅନ୍ତି, ୱ୍ୟାର୍ଡର ଓ ସାଧାରଣ କଏଦୀଙ୍କ ଠାରୁ ମାଗନ୍ତି ।

ବ୍ରହ୍ମପୁର ଜେଲରେ ୱ୍ୟାର୍ଡକୁ ଲଗାଇ ପାଇଖାନା ନଥିଲା । ସେଥି ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଓ ସ୍ୱତନ୍ତ୍ର ଜଗୁଆଳୀ ରହିଥାଆନ୍ତି ବଡ଼ ବଡ ପୁରୁଣା କଏଦୀ । ସେମାନେ ଲୁଗାଇ କତା ଦଉଡ଼ିରେ ନିଆଁ ରଖି ଥାଆନ୍ତି । ନିଜର କଛାତଳେ ବିଡ଼ି ଗେଞ୍ଜି ଥାଆନ୍ତି । ଯେ ଗ୍ରହାନ୍ତି ସେମାନଙ୍କୁ ସେଥିରୁ କାଢି ପାଇଖାନା ବସିଲା ବେଳକୁ ନିଆଁ ଜୁଟାଇ ଦିଅନ୍ତି । ଲୋକ କିନ୍ତୁ ଅଭ୍ୟାସର ଏପରି ଦାସ ଯେ ବାଧ୍ୟ ହୁଏ । ସେଇଥି ସକାଶେ ଗାନ୍ଧୀଜୀ ଆଗରୁ ସତ୍ୟାଗ୍ରହୀ ଜଣ ନକରିବା ଉଚିତ ଏବଂ ନିଶାଦ୍ରବ୍ୟ ମୁକ୍ତରୁ ନଛୁଇଁବା ନିମନ୍ତେ ନିର୍ଦ୍ଦେଶ ଦେଇଥିଲେ । ଜେଲ ଜାଣି-ଶୁଣି ସମସ୍ତେ ବରଣ କରି ଥାଆନ୍ତି; ଜେଲର ବନ୍ଧନ ଓ ବାହାର ଦୁନିଆ ବିଚ୍ଛିନ୍ନ ହୋଇ ରହିବାରେ ଯେଉଁ ମାନସିକ ଯନ୍ତ୍ରଣା ଭୋଗିବାର କଥା, ସେଇଟା ପ୍ରାୟ ରାଜନୈତିକ ବନ୍ଦୀଙ୍କ ପାରୁ ନଥିଲା । ମାତ୍ର ଏପରି ଛୋଟ ଛୋଟ କଥାରେ କେହି କେହି ବଡ ଅପଦସ୍ତ ହେଉଥିଲେ । ବେଳେ ବେଳେ ଜେଲ କର୍ତ୍ତୃପକ୍ଷଙ୍କ ସହ ସାଲ ସୁତରା ହେଉଥିଲେ । ଏହି ସବୁ କାରଣରୁ ଜେଲ ଭିତରେ ଭର୍ତ୍ତି ବା ଶବ୍ଦା ହଗନ୍ତି ।

ରାଜବନ୍ଦୀଙ୍କି ତିନି ଶ୍ରେଣୀରେ ବିଭକ୍ତ କରାଯାଉଥିଲା । 'ଏ' ଶ୍ରେଣୀଟା ବିଚାର କରୁଥିବା ମାଜିଷ୍ଟ୍ରେଟ ଦିଅନ୍ତି । ପୁଲିସ ଅବଶ୍ୟ ବିଚାରକଙ୍କୁ ସୁପାରିଶ କରେ । ପ୍ରଥମେ ଯେତେ ନେତୃସ୍ଥାନୀୟ ବ୍ୟକ୍ତି ଗିରଫ ହେଉଥିଲେ, ସେମାନଙ୍କୁ 'ଏ', 'ବି' ବା 'କ' ଓ 'ଖ' ଶ୍ରେଣୀ ଦିଆ ଯାଉଥିଲା । ଏ ଦୁଇଶ୍ରେଣୀ ଭିତରେ ପଡ଼ି ବ୍ୟବସ୍ଥା ପ୍ରାୟ ସମାନ । 'ଏ' ଶ୍ରେଣୀ ଜେଲ ଖାଦ୍ୟ ସାଙ୍ଗକୁ ନିଜ ଘରୁ ବି ଖାଦ୍ୟ ମଗାଇ ପାରୁଥିଲେ । 'ଏ' ଶ୍ରେଣୀଙ୍କି ନିଜ କପଡ଼ା ବ୍ୟବହାର କରିବାକୁ ମିଳୁ-ଥିଲା । 'ବି' ଶ୍ରେଣୀ କିନ୍ତୁ ଇଘା କାରାଗାର ଥିବା ପାଇଜାମା ଓ ହାତକଟା ଫତେଇ ପାଉଥିଲେ ।

'ସି'ଙ୍କ ଭାଗ୍ୟରେ ସେହି ଛୋଟ ଜର୍ଘିଆ, ଏକା ମାପର । ୧୯୩୦ରେ ଜେଲ ଆଇନ ଭଙ୍ଗ ଅପରାଧରେ କନିକା ରାଜା, ବିହାର ଓଡ଼ିଶାର ମନ୍ତ୍ରୀ ଥାଇକରି ମହତାବଙ୍କୁ ଶାସ୍ତି ସ୍ୱରୂପ 'ସି' କ୍ଲାସ ବନ୍ଦୀକରି ହଜାରୀବାଗ ଜେଲରୁ ପାଟନା କ୍ୟାମ୍ପ ଜେଲକୁ ପଠାଇ ଦେଲେ । ସେ ଛୋଟ ଜର୍ଘିଆ ମହତାବଙ୍କ ଜଂଘକୁ କିପରି ପାଆନ୍ତା ! କି କଇବଇ କି ଦହଗଞ୍ଜରେ ସେ ଦିନ କାଟୁଥିଲେ ବିଶ୍ୱାସ କରି ହେବ ନାହିଁ । 'ଏ' କ୍ଲାସ ୭ ଦିନରେ ଥରେ ବାହାରକୁ ଚିଠି ଲେଖି ପାରୁଥିଲେ ଓ ବାହାର ଲୋକଙ୍କ ସାଙ୍ଗରେ ମୁଲାକାତ ହୋଇ ପାରୁଥିଲା । 'ବି' କ୍ଲାସକୁ ଚିଠି ଓ ମୁଲାକାତ ମାସକୁ ୨ ଥର । କିନ୍ତୁ 'ସି' କ୍ଲାସକୁ ସୁଯୋଗ ମିଳୁଥିଲା, ୩ ମାସରେ ଥରେ । ଯେଉଁ ବନ୍ଦୀମାନେ ବେଶିଦିନ ଭିତରେ ଆବଦ୍ଧ ଥାଆନ୍ତି, ସେମାନେ ଏପରି ମୁଲାକାତ୍‌କୁ ଚାତକ ପରି ଅନାଇ ଥାଆନ୍ତି । ଥରେ ହେଲେ ପ୍ରିୟଜନଙ୍କୁ ଦେଖିବେ; କଥାହେବେ । ସ୍ୱାମୀ, ସ୍ତ୍ରୀ ସାକ୍ଷାତ ବି ଏକାନ୍ତରେ ହୋଇ ପାରେନା । ଯାହା କଥାବାର୍ତ୍ତା ହେବେ ଜଗୁଆଳୀ ଅଫିସରର ଶୁଣାନ୍ତିରେ ହେବ ।

ରାଜବନ୍ଦୀଙ୍କର ଅନେକ ଚିଠି ଜେଲ ଅଫିସରେ ରଖି ଦିଆଯାଏ । ବେଳେ ବେଳେ ଭିତରକୁ ଛାଡ଼ିଦେବା ଚିଠି ଏପରି ସେନ୍‌ସର ହୋଇଥାଏ ଯେ, ତାହା କିଛି ବୁଝାଯାଏ ନାହିଁ କିମ୍ବା ଶତଚେଷ୍ଟାରେ କଳାଦାଗ ଉଠେ ନାହିଁ । କିଛି ହୁଏତ ଏପରି ଚିନ୍ତାର ବିଷୟ ନଥିବ । ତଥାପି ମନ ଦୁଡ଼ଗୁଡ଼ ହେଉଥାଏ; କଣ ଲେଖା ହୋଇଥିଲା କେଜାଣି ! ମନ ଯାଏ ମରି, ଯଥା ସମ୍ଭବ ଦୁଃଖ କଥା ଅନ୍ଦାଜ

କରି । ବନ୍ଦୀ ଜୀବନରେ ଅଲଗା କରି ରଖିବା ବା ଖରାପ ଖାଦ୍ୟ ଯେତେ ବାଧେ ନାହିଁ, ଏପରି ନିଃସହାୟ ଅବସ୍ଥା ଏବଂ ନିଜର ସ୍ୱଜନ ବା ପରିବାରଙ୍କ ଠାରୁ ହଠାତ ନଜାଣିବାର ମାନସିକ ଯନ୍ତ୍ରଣା ସବୁଠୁ ବଳିଯାଏ । ସୁତାଏ ଲୋକ ଏକା ସ୍ଥାନରେ ସବାକୁ ଦେଖୁଥାନ୍ତି ସେହି ମୁହଁ, ସେହି ପୋଷାକ, ସେଇ ଏକା ଖିଆ ପିଆ ଦେଖି ଦେଖି ବିତ୍ତୃଷ୍ଣା ଆସିଯାଏ; କିଛି ପରିମାଣରେ ପରସ୍ପର ପ୍ରତି ବିରକ୍ତି ମଧ୍ୟ । ସେଥିପାଇଁ ଯାହା କଥାରେ ଅଛି– 'ବହୁତ ଜନ କହିଁ ମିଳି, ଅବଶ୍ୟ ଉପୁଜଇ କଳି' –ଏଇଟା କିଛି ଅସ୍ୱାଭାବିକ ନୁହେଁ ।

ବିହାର, ଓଡ଼ିଶା ଏକ ପ୍ରଦେଶ ଥାଏ । ପାଟନା ସହର ହେଲା ରାଜଧାନୀ । ଓଡ଼ିଶା ଥାଏ ଏକ ଡିଭିଜନ; ଜଣେ କମିଶନର ଅଧୀନରେ । ତହିଁରେ କଟକ ଜେଲ ଥାଏ ସବୁଠୁଁ ବଡ ଜେଲ । ସହର ମଝିରେ । ବହୁତ ବଡ ବଡ ପାଚେରୀ– ବଡ, ପାଚେରୀ ଭିତରେ ପୁଣି ଛୋଟ ପାଚେରୀ ଘେର କ୍ଷୁଦ୍ର ଓ ବଡ କୋଠରୀ– ଏମିତି ତିଆରି ଯେ ବନ୍ଦୀମାନେ ଯେମିତି ଏକାଠି ନହୋଇ ପାରିବେ । କେବେ ମେଳି ହେଲେ ସାଙ୍ଗେ ସାଙ୍ଗେ ଜବତ– କରି ହବ । ତା ଭିତରେ କାହାକୁ ଶେଷ କରି ଦେଲେ ବି ବାହାରେ ଜାଣିବାର ଉପାୟ ନାହିଁ । ରାଜବନ୍ଦୀମାନେ ଏସବୁ କଟକଣା ମାଡ କଷ୍ଟ ସହି ବହୁ ପରିମାଣରେ ରାଜି ହେଉଥିଲେ । କିନ୍ତୁ ତାଙ୍କ ମେଳିକି ଜାହାକୁ ଅଣିବା ପାଇଁ ଖାଲି ଯେ ହାତକଡ଼ି, ଗୋଡ଼କଡ଼ି ଦିଅନ୍ତି; ଓ୍ୟାର୍ଡରମାନଙ୍କର ଲାଠି ପ୍ରହାର ସହିବାକୁ ପଡେ, ତାହା ନୁହେଁ କୁର୍ତ୍ତା କଏଦୀକୁ ମଧ୍ୟ ପ୍ରୟୋଗ କରଯାଏ । ଏସବୁ ସତ୍ତ୍ୱେ କେହି କଟକ ଜେଲ ଛାଡ଼ିବାକୁ ପ୍ରସ୍ତୁତ ହୁଅନ୍ତି ନାହିଁ । କାରଣ ଘର ପାଖ; ନାନା ସୂତ୍ରରୁ ଆତ୍ମୀୟ ସ୍ୱଜନଙ୍କର ସମ୍ବାଦ ମିଳେ । ନଛାଡ଼ିବାରେ ବିଶେଷ ଆଗ୍ରହୀ ଥାଆନ୍ତି ଯେଉଁମାନଙ୍କର ପାନ, ବିଡ଼ି, ଗୁଡ଼ାଖୁ ଅଭ୍ୟାସ ଥାଏ । ଜେଲକୁ ନବାକୁ ମନା; ମାତ୍ର ପ୍ରତିଦିନ ଭୋର ବେଳା ପାଚେରୀ ଡେଇଁ ଅପର ପାଖରୁ ନିର୍ଦ୍ଦିଷ୍ଟ ଯାଗା ମାନଙ୍କରେ ପଡ଼େ ପୁଡ଼ିଆ । ତାକୁ କହନ୍ତି କାହାକ ଲାଗିଲା । ତାଇ ଖୋଜୁ ଖୋଜୁ ଗଛ ପଛ ଲେଖେ ବଉଡ଼ି ଯାଇ ସେତକ ହାତ ପଇଠ କରି ନିଅନ୍ତି ।

[ ୨ ]

# କେନ୍ଦ୍ର କେବେ ମୂଲ୍ୟ ଦେଇ ପାରିବ !

ଆମେ ତ ଜେଲକୁ ଏକ ରାଜନୀତିକ ଅସ୍ତ୍ର ବୋଲି ମନେ କରୁଥିଲୁ । ଇଂରେଜ ଶାସନକୁ ଦୁର୍ବଳ କରିବାର ଅହିଂସ ପନ୍ଥା ହେଲା ତାର ଅଇନ, କାନୁନ୍‌କୁ ଅଚଳ, ଅକାମୀ କରିଦେବା । ସେଇଥି ଯୋଗୁଁ 'ଜେଲ ଭରୋ' ଆହ୍ୱାନ । ଜେଲ ଜୀବନ ଅତି କଠୋର, ନିର୍ମମ ଓ ନିଷ୍ଠୁର ଜାଣି ସୁଦ୍ଧା ସ୍ୱେଚ୍ଛାରେ ଜେଲ ବରଣ କରା ଯାଉଥିଲା । ଏତେବେଳ ଯାଏ ମୁଁ ଯାହା ଲେଖିଲିଣି, ସେଥିରୁ କେହି ଯେପରି ଧରି ନନିଅନ୍ତି ଯେ, ଏହା ଠାରୁ ବଳି ଆଉ କିଛି ଅଧିକ କଷ୍ଟ ହୋଇ ପାରେନା— ମାତ୍ର ଯାହା ଲେଖା ଯାଉଛି, ସେଗୁଡ଼ିକ ଏକ ନିର୍ଦ୍ଦିଷ୍ଟ ସ୍ଥାନର ବିବରଣୀ; କ୍ଷୁଦ୍ର ପରିସରର ଘଟଣାବଳୀ । ବହୁ ଯାଗାରେ ବହୁ ଘଟଣା ଘଟିଛି । ଆନ୍ଦୋଳନ ଯେତେ ତେଜିଛି, ଦମନ, ଅତ୍ୟାଚାର ଓ ଜେଲ ଭିତରର ନିର୍ଯ୍ୟାତନା ସେତିକି ପରିମାଣରେ ବଢ଼ିଛି । ଭିନ୍ନରୂପ ନେଇଛି । ମାତ୍ର ଏଥି ପ୍ରତି ଖେଦ କିମ୍ବା ଖାତିର ନଥାଏ । ଜେଲ କଷ୍ଟକୁ ନିର୍ଯ୍ୟାତନା ବୋଲି ବିଚାର କରଯାଉ ନଥିଲା ।

ସେପରି ଭାବନା ଥିଲେ ଥରେ ଯେ ଯାଏ ଆଉ ଥରକ ପାଇଁ ମନ ବଳାନ୍ତା ନାହିଁ । ସେମିତି ଦୁର୍ବଳ ଲୋକ ନଥିଲେ ଏପରି ନୁହେଁ । କେତେ କ୍ଷମା ମାଗି ଚାଲି ଆସନ୍ତି; ଆଉ କେତେକ ଥରକ ଭୋଗି ଆଉ ମନ ବଳାନ୍ତି ନାହିଁ । କେତେକ ସଂସାରୀ ଲୋକ ନଷ୍ଟ ଭ୍ରଷ୍ଟ ହୋଇ ଯାଉଥିବା ସମାଜକୁ ପୁଣି

ସହାଡ଼ିବାରେ ଲାଗି ପଡ଼ନ୍ତି । ଏହାକୁ ଦୁର୍ବଳତା ବୋଲି କୁହାଯିବ ନାହିଁ; ଏହା ଥିଲା ଅକ୍ଷମତା । ନିଜେ ସିନା କଷ୍ଟ ସହିନବ; ମାତ୍ର ତୁମ ଉପରେ ନିର୍ଭର କରୁଥିବା ଲୋକଙ୍କୁ ଖାଇବା ବିନା ଲୋକ ଉପାସରେ ସନ୍ତୁଳି ହେବା ଦେଖି ହବ କି ! ସହି ପାରିବ କି !

ହୋମତାରେ ହେଉ କିମ୍ବା ଜାଣି ଶୁଣି ହେଉ, ଏଭଳି ଯେଉଁ ଲୋକ-ମାନେ ଜେଲ ବରଣ କଲେ, ତାଙ୍କର ତ୍ୟାଗ କଣ ଯୁଦ୍ଧକ୍ଷେତ୍ରରେ ଶତ୍ରୁର ସମ୍ମୁଖୀନ ହୋଇ ଗୁଳିଗୋଳାରେ ପ୍ରାଣତ୍ୟାଗ କରିବା ଅପେକ୍ଷା ବଡ଼ ନୁହେଁ କି ! ତ୍ୱରିତ ମାରିଲା; ସେହିଠାରେ ଟଳି ପଡ଼ିଲା । ମାତ୍ର ତିଳ ତିଳ କରି ନିଜକୁ ଉତ୍ସର୍ଗ କରିବା ଓ ପରିବାରଙ୍କ ଦୁଃଖକୁ ନିଃସହାୟ ଭବରେ ଛାଡ଼ି ରହିବାର ଦମ୍ଭ ଯେଉଁ କୌଣସି ହିଂସା ସିପାହୀ ଅପେକ୍ଷା ଯଥେଷ୍ଟ ବେଶି । ହିଂସା ଲଢ଼ାଇକି ଯେ ଯାଆନ୍ତି, ସେମାନେ ନିଜର ଭରା ଏବଂ ପରିବାରର ଭରଣ ପୋଷଣ ଲାଗି ବ୍ୟବସ୍ଥା ପାଆନ୍ତି । କିନ୍ତୁ ଗାନ୍ଧୀସେନାଙ୍କୁ ଲେଖିଦେବାକୁ ପଡେ— ନିଜ ଲାଗି କିମ୍ବା ପରିବାର ଲାଗି କିଛି କ୍ଷତି ପୂରଣ ମାଗିବି ନାହିଁ; ଦାବୀ କରିବି ନାହିଁ । ଏମିତି ନିଃସ୍ୱାର୍ଥ ଜେଲଭୋଗୀଙ୍କ ସଂଖ୍ୟା ଅସଂଖ୍ୟ ।

ମହାତ୍ମାଗାନ୍ଧୀ ନେତା ଥିଲେ; ଆହୁରି ଅନେକ ବଡନେତା ବାହାରିଲେ । ତାଙ୍କରି ତ୍ୟାଗ ବଳରେ ସ୍ୱାଧୀନତା ମିଳିଗଲା ତାହା ନୁହେଁ, ସେମାନେ ଉପଯୁକ୍ତ ନେତୃତ୍ୱ ଦେଲେ । ସ୍ୱାଧୀନତା ମିଳିବା ମୂଳରେ ଥିଲା ଏପରି ଅଜ୍ଞାତ ବା ଅପରିଚିତ ଲକ୍ଷ ଲକ୍ଷ ଲୋକଙ୍କର ତ୍ୟାଗ ଓ କଷ୍ଟଭୋଗ । ଆଜି କାଲି ଏ ଦିଗ ପ୍ରତି କାହାରି ନଜର ନାହିଁ । ତାଙ୍କୁ କେହି ପଗ୍ଭରୁ ନାହିଁ । ଜେଲ ବିବରଣୀ ଶୁଣିଲେ କେତେକ ହସନ୍ତି; ଏ ପୁଣି ଗୋଟାଏ କଷ୍ଟ । ବ୍ରିଟିଶ ଅମଳ ସେ ଭୋଗ କରି ନାହାନ୍ତି । କି ଭୟ ଓ ଦମନର ପରିସ୍ଥିତି ସାର ଦେଶରେ ବିରାଜମାନ କରୁଥିଲା, ତାହା ସେମାନେ ଅନୁମାନ କରି ପାରିବେ ନାହିଁ । ଇତିହାସରେ ପଢି ବି ସେଥିରୁ କିଛି କଳନା କରି ହେବ ନାହିଁ ।

କିଛି ବର୍ଷ ହେଲା ଏପରି ପ୍ରଥମ ଅବସ୍ଥାରେ ଜେଲ ନିର୍ଯାତନା ଭୋଗି-ଥିବା ବ୍ୟକ୍ତିମାନଙ୍କୁ କେନ୍ଦ୍ର ଓ ରାଜ୍ୟ ସରକାରମାନେ ଏକ ସମ୍ମାନ ପେନ୍‌ସନର ବ୍ୟବସ୍ଥା କରିଛନ୍ତି । ଇନ୍ଦୀର ଗାନ୍ଧୀ ଅମଳରୁ ଏଇଟା ଆରମ୍ଭ ହେଲା । ସବୁ

ସବୁ ଦେଶରେ ସବୁକାଳେ ଏପରି ସ୍ୱାଧୀନତା ସୈନିକମାନଙ୍କୁ ସମ୍ମାନ ଦିଆଯାଇଛି । ସେମାନଙ୍କ ସ୍ମୃତି ରକ୍ଷା କରା ଯାଉଛି । ଭବିଷ୍ୟତ ବଂଶଧରମାନେ ତାହା ହେଲେ କିଛି ହେଲେ ସ୍ମରଣ କରିବେ । ବିଦେଶ ଯାତ୍ରା କରିଥିବା ଲୋକେ କହିବେ କୌଣସି ଦେଶ ପରିଦର୍ଶନରେ ଗଲେ, ପ୍ରଥମେ ଯିବାକୁ ହୁଏ ଆଜାଦ୍ ସୈନିକଙ୍କର ସ୍ମୃତିସ୍ତମ୍ଭ ବା ମିଉଜିୟମ ଦେଖିବା ଲାଗି । ତାଙ୍କୁ ସମ୍ମାନ ଦେଖାଇବା ଅର୍ଥ ଦେଶକୁ ସମ୍ମାନ କରିବା ।

ଏବେ ଏପରି ସମ୍ମାନ ପେନ୍‌ସନକୁ ସମାଲୋଚନା କରା ଯାଉଛି । କେତେକ ନୀତିଗତ ଦୃଷ୍ଟିରୁ କରୁଛନ୍ତି । ତାଙ୍କର ଯୁକ୍ତି ହେଲା ଆମେ କଣ ଧନ ଲାଳସାରେ ଜେଲ ବରଣ କରିଥିଲୁ– ଏଇଟା ନୈତିକହୀନତାର କାର୍ଯ୍ୟ । ସେମାନେ ଆଜି ସୁଦ୍ଧା ଏହା ଗ୍ରହଣ କରି ନାହାଁନ୍ତି । ନବକୃଷ୍ଣ ଚୌଧୁରୀ ଶେଷ ଜୀବନରେ ବଡ କଷ୍ଟ ପାଇଲେ– ବଡ ଅସୁବିଧା ଓ ଅସୁସ୍ଥତା ଭିତରେ ଜୀବନ କଟିଲା । ସେ ଓ ମାଳତୀ ଚୌଧୁରୀ ଦିହେଁ ବେଶ ଭଲ ରକମ ପେନ୍‌ସନ ପାଇ ପାରି ଥାଆନ୍ତେ । ନବବାବୁ ତ ୭ ବର୍ଷ ମୁଖ୍ୟମନ୍ତ୍ରୀ ବି ଥିଲେ । ଏବେ ଦରଖାସ୍ତ ନକରିଥିବା ପ୍ରାୟ ୯୭ ଜଣଙ୍କୁ ସରକାର ନିଜ ଆଡୁ ପେନ୍‌ସନ ବ୍ୟବସ୍ଥା କରିଛନ୍ତି ।

ମାଳତୀ ଚୌଧୁରୀ କନ୍‌ଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲିର ଓଡ଼ିଶାରୁ ଏକମାତ୍ର ମହିଳା ସଦସ୍ୟା ଥିଲେ । ଏବେ ସେପରି ସଦସ୍ୟମାନଙ୍କ ଲାଗି ସ୍ୱତନ୍ତ୍ର ଭତ୍ତା ଓ ରେଳ ପାଶ୍ ମିଳୁଛି । ନବକୃଷ୍ଣ ଚୌଧୁରୀଙ୍କ ଲାଗି ସେ ନଲେଖିଲେ ବା ନମାଗିଲେ ସୁଦ୍ଧା ମୁଁ ବ୍ୟବସ୍ଥା କରି ଆଣିବି ବୋଲି ଧମକ ଦେଲି । ସାଙ୍ଗେ ସାଙ୍ଗେ ମାଳତୀ ଦେବୀଙ୍କର ଜବାବ ହେଲା, "ବାପି ଯଦି ଏହା ସ୍ୱୀକାର କରିବ, ତେବେ ମୋର ମୃତ ଶରୀର ଦେଖିବ ଆଗ ।" ସର୍ବସ୍ୱ ତ୍ୟାଗ କରିଛନ୍ତି, ମାତ୍ର ସେମାନଙ୍କ ଦୃଷ୍ଟିରୁ ଏହା ଏକ ବିରାଟ ନୈତିକତାର ପ୍ରଶ୍ନ । ତାଙ୍କରି ସାଙ୍ଗ ହରେକୃଷ୍ଣ ମହତାବ ଖାଲି ଗ୍ରହଣ କରି ନଥିଲେ; ଦାବୀ କରି ଏକା ଥରକେ ହଜାର ହଜାର ଟଙ୍କା ବକେୟା ଆଦାୟ କରିଥିଲେ । ମୁଁ ଏ ବ୍ୟବସ୍ଥା ପ୍ରଚଳନ ହେବା ଦିନୁ ପାର୍ଲିଆମେଣ୍ଟ ମେମ୍ବର ଓ ସ୍ୱାଧୀନତା ସଂଗ୍ରାମୀ ଭାବରେ ଉଭୟ ପେନ୍‌ସନ ପାଉଛି । ଏମିତି ଆହୁରି କେତେକ ଅଛନ୍ତି, ଗ୍ରହଣ କରି ନାହାନ୍ତି ।

ଆହୁରି କେତେକ ନାନା ପ୍ରକାର ସମିତି ଆଦି ଗଢ଼ି ଏଥିରୁ ଫାଇଦା ଉଠାଉଛନ୍ତି । ସ୍ୱାଧୀନତାର ଧାର ଧାରି ନଥିବା ବ୍ୟକ୍ତିମାନଙ୍କ ପାଇଁ ଧରଧରି କରି ପେନ୍‌ସନ କରାଇ ନେଉଛନ୍ତି । ଆମର ଜାଣିବାର କଥା କେତେକ ପାର୍ଲିଆ-ମେଣ୍ଟରେ ଥିବା ବେଳେ ଜେଲ ନଯାଇ ସୁଦ୍ଧା ନିଜପାଇଁ ବ୍ୟବସ୍ଥା କରି ନେଇଛନ୍ତି । ଆଜି କାଲି ତ ଭେଜାଲ ଯୁଗ । ଭେଜାଲକୁ ସ୍ଥାନ କରନ୍ତି ସ୍ୱାଧୀନତା ସଂଗ୍ରାମୀ ସମିତି ଗୁଡ଼ିକ । ବାସ୍ତବିକ ବେଳେ ବେଳେ ଏସବୁ ଦେଖିଲେ ବଡ ଲାଜ ଲାଗେ । ଆମର ପ୍ରକୃତି କେତେ ନୀଚସ୍ତରକୁ ଯାଇଛି ଜଣାପଡେ । ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ନଥିବା ଅଣବନ୍ଦୀମାନେ ବି ପେନ୍‌ସନ ଦାବୀ କଲେଣି । ପୁଣି ସ୍ୱାଧୀନତା ବେଳେ ଜନ୍ମ ଲାଭ କରି ନଥିବା ଯୁବ ସ୍ୱାଧୀନତା ସଂଗ୍ରାମୀଙ୍କ ନାମ ଉଠୁଛି । ଏପରି କାର୍ଯ୍ୟ ଦ୍ୱାରା ସ୍ୱାଧୀନତା ସଂଗ୍ରାମ ଓ ସ୍ୱାଧୀନତା ସଂଗ୍ରାମୀଙ୍କ ନାମରେ କଳଙ୍କ ଲେପା ଯାଉଛି । ମାତ୍ର ରାଷ୍ଟ୍ର ଯେ ଦେଶର ଏହି ଆଦି ସଂଗ୍ରାମୀଙ୍କୁ ସମ୍ମାନ ଦେଖାଇଛି; ତାହା ଏକ ଉତ୍ତମ କାର୍ଯ୍ୟ । ସ୍ୱାଧୀନତା ସଂଗ୍ରାମୀଙ୍କର କେହି ମୂଲ୍ୟ କରି ପାରିବ ନା ଦେଇ ପାରିବ ! ସେମାନଙ୍କୁ ସମ୍ମାନିତ କରିବା ଦ୍ୱାରା ଦେଶର ସମ୍ମାନ ବଢିବ । ବ୍ୟକ୍ତିବିଶେଷର ଆଚରଣକୁ ଲେଖା କରିବା ଠିକ୍ ନୁହେଁ ।

卐

[ ୮ ]

# ଓଡ଼ିଶା ବାହାର ଜେଲକୁ

ଏବେ ଓଡ଼ିଶାରେ ୩ ଗୋଟି ସେଣ୍ଟ୍ରାଲ ଜେଲ ହୋଇ ଗଲାଣି । ବହୁ ସଂଖ୍ୟକ ଜିଲ୍ଲା ଓ ସବ୍‌ଡ଼ିଭିଜନ ଜେଲ । ସେତେବେଳେ ବିହାର ଓଡ଼ିଶା ଏକାଠି ମିଳି ଥିଲା ଏକ ପ୍ରଦେଶ । ଓଡ଼ିଶା ଡ଼ିଭିଜନ ଭିତରେ କଟକ ହିଁ ବଡ ଜେଲ ଥିଲା । ଜେଲ ତ ନଥିଲା; ସ୍କୁଲ କଲେଜ ସଂଖ୍ୟା ବି ବହୁତ କମ୍ । ଏମ୍:ଏ:, ଓକାଲତୀ ପଢିବା ଲାଗି କଲିକତା ବା ପାଟନା ଯିବାକୁ ପଡୁଥିଲା । ଆମ ଓଡ଼ିଶାର ସବୁ ବୁଢ଼ାଯାକ ଏମ୍.ଏ. ପାଶ କରିଛନ୍ତି ହୁଏତ କଲିକତା ବା ପାଟନାରୁ । ବିହାର ଓଡ଼ିଶାର ରାଜଧାନୀ ଥିଲା ପାଟନା । ସବୁ ନିର୍ଦ୍ଦେଶ ସେଠାରୁହିଁ ଆସୁଥିଲା । ଗଭର୍ଣ୍ଣର ବା ଲାଟସାହେବ ଏବଂ ହାଇକୋର୍ଟ, ବ୍ୟବସ୍ଥା ସଭାର ମୁଖ୍ୟ କାର୍ଯ୍ୟାଳୟ ପାଟନା ଠାରେ ଥିଲା ।

୧୯୩୦, ୧୯୩୧ ଓ ୧୯୩୨ରେ ଜେଲ ସବୁ ରାଜବନ୍ଦୀରେ ଭରିଗଲା । ଏତେ ଲୋକଙ୍କୁ ସମ୍ଭାଳିବା ମୁସ୍କିଲ ଥିଲା । ମୁଁ ଶୁଣିଛି କହିଛି ଯେଉଁ ମୁଷ୍ଟିମେୟ କେତେଜଣ ଏ ବା ବି କ୍ଲାସ ପାଉଥିଲେ ତାଙ୍କୁ ହାଜାରୀବାଗ ଜେଲ ଭିତରେ ରଖା ଯାଉଥିଲା । ସେବକାଳରେ ଯେଉଁମାନେ ହାଜାରୀବାଗ୍ ଜେଲ ଭୋଗିଥିଲେ ସେମାନେ ହେଲେ– ଗୋପବନ୍ଧୁ ଚୌଧୁରୀ, ନୀଳକଣ୍ଠ ଦାଶ, ହରେକୃଷ୍ଣ ମହତାବ, ଯଦୁମଣି ମଙ୍ଗରାଜ, ନନ୍ଦକିଶୋର ଦାସ, ରାଜକୃଷ୍ଣ ବୋଷ, କବି ବୀରକିଶୋର ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ଗୋବିନ୍ଦ ଚନ୍ଦ୍ର ମିଶ୍ର, ନିତ୍ୟାନନ୍ଦ କାନୁନ୍‌ଗୋ, ନିରଞ୍ଜନ ଘୋଷ, ନବକୃଷ୍ଣ ଚୌଧୁରୀ, କିଶୋରୀ ମୋହନ

ଜୋଆରଦାର, ଇତ୍ୟାଦି । ପଣ୍ଡିତ ଗୋପବନ୍ଧୁ ଦାଶ ଓ ଭଗୀରଥି ମହାପାତ୍ର ୧୯୨୧ରେ ଗିରଫ ହୋଇ ହାଜାରୀବାଗ ଯାଇଥିଲେ । ୧୯୩୦ ଲବଣ ସତ୍ୟାଗ୍ରହ ଆରମ୍ଭ ପୂର୍ବରୁ ୧୯୨୮ରେ ଗୋପବନ୍ଧୁଙ୍କର ପରଲୋକ ହୋଇ ଯାଇଥିଲା । ଗଞ୍ଜାମ, କୋରାପୁଟ ମାନ୍ଦ୍ରାଜ ପ୍ରଦେଶରେ ରହି ଥିବାରୁ ବିଶ୍ୱନାଥ ଦାସ, ନିରଞ୍ଜନ ପଟନାୟକ, ଦିବାକର ପଟନାୟକ, ରାଧାକୃଷ୍ଣ ବିଶ୍ୱାସରାୟ ଓ ମାଷ୍ଟର ରାମଲିଙ୍ଗମ୍ ଆଦି ମାନ୍ଦ୍ରାଜର ବେଲାରୀ ଜେଲକୁ ଯାଇଥିଲେ । ସରଳା ଦେବୀ ଯାଇ ରହିଥିଲେ ଭେଲୋରରେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ୧୯୩୬ରେ । ସେ ପର୍ଯ୍ୟନ୍ତ ସବୁ ବନ୍ଦୀଙ୍କି ଓଡ଼ିଶା ବାହାରକୁ ଯିବାକୁ ପଡୁଥିଲା ।

୧୯୩୦ରେ ଏ ଅଞ୍ଚଳରେ ଥିବା ଜେଲ ଗୁଡ଼ିକ ରାଜବନ୍ଦୀରେ ଉଛୁଳି ଉଠିଲା । ଯେତିକି ସ୍ଥାନ ଥିଲା, ତାର ୪୦।୫୦ ଗୁଣ ଅଧିକା ଲୋକ ଜେଲ ଭିତରେ ହୋଇଗଲେ । ଆଇନ ଅମାନ୍ୟ ଚାଲୁଥିବାରୁ ଦଳକୁ ଦଳ ରାଜବନ୍ଦୀ ଆସି ଭରି ଯାଇ ଥାଆନ୍ତି । ବିହାରର ଜିଲାମାନଙ୍କରେ ମଧ୍ୟ ସେହି ଦଶା । ବୋଧହୁଏ ଓଡ଼ିଶା ଠାରୁ ବହୁ ଅଧିକ ସଂଖ୍ୟକଙ୍କୁ କେଉଁଠି ରଖିବେ ବ୍ରିଟିଶ ସରକାରର ଭାବନାରେ ପଡ଼ିଥିଲା । ସ୍ଥାୟୀ ଜେଲ ଗୁଡ଼ିକରେ ତ ଯାଗା ନାହିଁ । କଣ କରାଯିବ । ତେଣୁ ସୃଷ୍ଟି ହେଲା ପାଟନା କ୍ୟାମ୍ପ ଜେଲ ।

ଫୁଲଓ୍ୱାରୀ ଶେରୀଫ୍‌ରେ ଏକ ବିରାଟ ସ୍ଥଳକୁ ଲୁହା ତାର ଘେରାଇ ଜେଲରେ ପରିଣତ କରାଗଲା । ଖାଲି କ୍ଷେତ ଜମି, ସମତୁଲ କରାଗଲା ନାହିଁ । ବିରାଟ ଟିଣ ସେଡ୍‌ମାନ ତିଆରି ହେଲା । ଖାଲି ବିଲ ଜମି ଉପରେ ୫୦।୬୦ ରହିଲା ଭଳି ଟିଣ ଘର । ତାରି ଭିତରେ ଥିଲା ହାସ୍‌ପାତାଲ ଏବଂ ବନ୍ଦୀଙ୍କି କାମ କରାଇବା ନିମନ୍ତେ ବ୍ୟବସ୍ଥା । ବିହାରୀ ଓ ଓଡ଼ିଆ ମିଶି ପ୍ରାୟ ୪୦୦୦ ଏଠାରେ ରହିଲେ । ଓଡ଼ିଶା ଲୋକଙ୍କୁ ସ୍ୱତନ୍ତ୍ର କେତେକ ସ୍ଥାନ କଣଆଡ଼ିଆ କରି ଦିଆଯାଇ ଥାଏ । ଏଥି ଭିତରେ ଗୋଟିଏ ହେଲେ ସାଧାରଣ କଏଦୀ ନଥାନ୍ତି । ଯାବତୀୟ କାର୍ଯ୍ୟ ରାଜବନ୍ଦୀଙ୍କି ନିଜ ହାତରେ କରିବାକୁ ପଡୁଥିଲା । କେବଳ ପାଇଖାନା ସଫା ଲାଗି ବାହାରୁ ମେହେନ୍ତର ଆସୁଥିଲେ । ନଚେତ୍ ଓ୍ୟାର୍ଡ ସଫାଇ ଓ ବାସନ ମଜା ଆଦି କାର୍ଯ୍ୟ ବନ୍ଦୀମାନଙ୍କୁ ହିଁ କରିବାକୁ ପଡୁଥିଲା । ଚାରିଆଡ଼େ ଲୁହା ତାର ଘେରା । ତାକୁ ପୁଣି ବିଜୁଳିଶକ୍ତି ଦିଆଯାଇ ଥିଲା । ଘୋଡା ସବାର ପହରା

ଗୁରିଆଡ଼େ ପଇଁତାର ମାରନ୍ତି । ତାହା ଛଡ଼ା ୨।୩ଟି ଓ୍ୟାର୍ଡକୁ ମିଶାଇ ଆଉ ଏକ ତାର ଘେର ହୋଇଥାଏ । ଓ୍ୟାର୍ଡର ଜଗୁଆଳୀ ଥାଆନ୍ତି ଏ ପାଖରୁ ସେପାଖ ନଛାଡ଼ିବା ନିମନ୍ତେ । ସବା ଉପରେ ଜଗୁଆଳୀ ରହିଥାଆନ୍ତି ଜେଲ ସୁପରିଣ୍ଟେଣ୍ଡେଣ୍ଟ ମେଜର ପରେରା । ସେ ମିଲ୍‌ଟରୀ ଲୋକ, ସିଂହଳୀ ବା ଶ୍ରୀଲଙ୍କାବାସୀ । ଶ୍ରୀଲଙ୍କା ମଧ୍ୟ ଭାରତ ଭିତରେ ଥାଏ । ଏକା ବ୍ରିଟିଶ ସରକାରର ଶାସନ ସବୁଠି ଗ୍ଭଲୁଥିଲା । ପରେରାଙ୍କୁ ଆମେ ସବୁ ପରିହାସରେ ପରିତା ବୋଲି କହୁଥିଲୁ । ସେ ମିଲଟରୀ ପୋଷାକ ପିନ୍ଧି ଗୋଟିଏ ବ୍ୟାଟନ ଧରି ବରାବର ଆସନ୍ତି । ଥରେ ଆମ ଓଡ଼ିଆ ବନ୍ଦୀମାନେ ଚକ୍‌କି ପେଷିଲା ବେଳେ "ସ୍ୱାଧୀନ ଭାରତ, ସ୍ୱାଧୀନ ଭାରତ" ବୋଲି ଗୀତ ଗାଇଲେ । ଜେଲ ଭିତରେ ପୁଣି ସ୍ୱାଧୀନ ଗାନ; ଇଂରେଜ ସରକାର ବିରୁଦ୍ଧରେ ଧ୍ୱନୀ ! ଏଇଟା କିଏ ସହିବ । ଫଉଜ ଓ ଓ୍ୟାର୍ଡରଙ୍କୁ ଧରି ମାଡ଼ି ଆସିଲେ ମେଜର ପରେରା । 'ଜଓ୍ୱାନୋ; ବନ୍ଦ କରୋ ! ହଲ୍ଲା ମତକରୋ' ! ବୋଲି ଗର୍ଜନ କଲେ । ଆମେ ଶୁଣିଲୁ ନାହିଁ । ଗାନା ବନ୍ଦ କଲୁ ନାହିଁ କି କାମ ବନ୍ଦ କଲୁ ନାହିଁ । ଏଇଟା କେମିତି ସହ୍ୟ ହୁଅନ୍ତା । ଆମ ଚକ୍‌କି ପେଷା ଘରେ ପଶିଲେ ଫୌଜ । ଆମେ ଯେ ଯାହା କାମରେ ଲାଗିଥାଉ । ସ୍ଥାନ ଛାଡ଼ି ଏକତ ସେକତ ବି ହେଲୁ ନାହିଁ । ତେଣୁ ଲାଠି ମାରିବା ହୋଇ ପାରିଲା ନାହିଁ । ସେହିଠାରେ ଯେତେ ଥିଲେ, ସମସ୍ତିଙ୍କ ହାତରେ ପଡ଼ିଲା ହାତକଡ଼ି । କେତେଜଣଙ୍କୁ ଗୋଡକଡ଼ି ଓ ଦଣ୍ଡାବେଡ଼ି ଦିଆଗଲା । ଦଣ୍ଡାବେଡ଼ି ଅର୍ଥ ଗୋଡବେଡ଼ି ଓ ହାତକଡ଼ି ଉଭୟେ । ସେ ଠିଆହୋଇ ରହିବ । ଦେହ ସଲ ସଲ ହେଲେ ବା କୁଣ୍ଡାଇ ହେଲେ ହାତ ବୁଲାଇ ପାରିବ ନାହିଁ । ଗୋଟିଏ ଓ୍ୟାର୍ଡରେ ଆଣି ସମସ୍ତିଙ୍କି ଭର୍ତ୍ତି କରାଗଲା । କେବଳ ଖାଇବା ନିମନ୍ତେ କିଛି ସମୟ ହାତକଡ଼ି ଖୋଲି ଦେଉ ସାରା ରାତି ସେମିତି ହାତ ଗୋଡ଼ କଡ଼ି ସହ ଟିଣଘର ଭିତରେ ତାଲା ପଡ଼ି ବନ୍ଦ । କିପରି କଷ୍ଟ ଦହଗଞ୍ଜ ରାତିସାରା । ଅସହାୟ ଅବସ୍ଥାରେ ପରସ୍ପରକୁ ଅନାଇ ଥାଉ । ସଂଧ୍ୟା ୬ଟା ପୂର୍ବରୁ ଘରେ ତାଲା ପଡ଼ିଯାଏ । ଖୁଆଡରେ ଗାଈ ଘୁଷୁରୀପଲ ପଶିଲା ପରି ଆମ ଭିତରୁ ୪୦।୫୦ ଜଣ ଯେ ସେଦିନ ଗହମ ପେଷିବା ନିମନ୍ତେ ଚକ୍‌କି ଚଳାଇବାକୁ ପାଳି କରିଥିଲେ ସେମାନେ ବନ୍ଦ ହେଲେ ।

卐

[ ୯ ]

## କଟକରୁ ପାଟନା ଯାତ୍ରା

ପାଟନା କ୍ୟାମ୍ପ ଜେଲ କଥା ଲେଖୁ ଲେଖୁ କେଉଁଠି ଯାଇ ପହଂଚି ଗଲି । ପୁରୁଣା କଥା ମନରୁ ଲେଖିଲା ବେଳକୁ ଏମିତି ହେବ ହିଁ ହେବ । ମଝିରେ ଯାହା ମନେ ପଡ଼ି ଯାଉଛି, ତାହା ନଲେଖିଲେ ପୁଣି ଯେ ପାଶୋର ଯିବ ।

କଟକ ଜେଲରେ ଆମେ ବେଶି ଦିନ ରହି ପାରିଲୁ ନାହିଁ । ନଭେମ୍ବର ମାସରେ ପହଂଚିଲୁ । ଡ଼ିସେମ୍ବରରେ ବିଦାୟ ହେଲୁ– ଖଲାସ ନୁହେଁ, ବିହାରର ପାଟନା କ୍ୟାମ୍ପ ଜେଲକୁ ବଦଳି । ଆମେ ପହଂଚିବା ପୂର୍ବରୁ ବୋଧହୁଏ ଏମିତି ବିଗ୍ଭର ହୋଇ ସାରିଥିଲା । ରାଜବନ୍ଦୀ ଭିତରେ ଜେଲର ନାକ ଡୁବୁ ଡୁବୁ ଅବସ୍ଥା । ତେଣୁ ଯେତେ ଶୀଘ୍ର ହାଲୁକା ହେବ, ଜେଲ କର୍ତ୍ତୃପକ୍ଷ ନିଃଶ୍ୱାସ ମାରିବେ ।

ବାସ୍ତବିକ କଟକ ଜେଲରେ ଏକାଦିକ୍ରମେ ବେଶିଦିନ ରହିବା ବା ମୋର ସଂପୂର୍ଣ୍ଣ ଜେଲଦଣ୍ଡ ଭୋଗିବା କେବେ ସମ୍ଭବ ହୋଇ ନାହିଁ । ୧୯୩୦ ନଭେମ୍ବରରେ ଜେଲଦଣ୍ଡ ହେଲା ସଶ୍ରମ ୯ ମାସ । ମାତ୍ର ମାସେ ନପୁରୁଣୁ କଟକ ଜେଲରୁ ବିଦାୟ ପାଟନା କ୍ୟାମ୍ପ ଜେଲକୁ । ସେମିତି ୧୯୩୨ରେ ୬ ମାସ ଓ ୧୯୩୩ରେ ୫ ମାସ ଜେଲଦଣ୍ଡ ଭୋଗିଛି ଯାଇ ପାଟନା କ୍ୟାମ୍ପ ଜେଲ୍‌ରେ । ୧୯୪୦ରେ କଟକ କଚେରୀରେ ବିଗ୍ଭର ହୋଇ ୧୬ ମାସ ଶାସ୍ତି ମିଳିଲା । ସେତେବେଳକୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇ ସାରିଥିଲା । ଆଉ ବାହାରକୁ ଯିବାକୁ ପଡ଼ିଲା ନାହିଁ । ବ୍ରହ୍ମପୁର ଜେଲ ଏକ ସେଣ୍ଟ୍ରାଲ ଜେଲରେ ପରିଣତ

ହୋଇଥିଲ । ସେଠି ଯାଇ ବିତାଇଲି ବେଶ୍ ଦୀର୍ଘକାଳ । ଏହି ବ୍ରହ୍ମପୁର ଜେଲ କଥା ପରେ ଲେଖିବି । ଶେଷରେ ୧୯୪୨ରେ ଅଣ୍ଡରଗ୍ରାଉଣ୍ଡରୁ ଗିରଫ ହେଲି । ଓଡ଼ିଶା ଷଡଯନ୍ତ୍ର ମକଦ୍ଦମାରେ ଦଣ୍ଡ ପାଇଲି ୬ ବର୍ଷ ସଶ୍ରମ କାରଦଣ୍ଡ । ବିଚାର ସ୍ୱତନ୍ତ୍ର ଜଜ୍ କଲେ କଟକରେ । କିଛିଦିନ କଟକ ଜେଲରେ ରହିଛି । ଜେଲ ଭିତରୁ ବାହାର ଆନ୍ଦୋଳନ ସହ ସଂପର୍କ ସ୍ଥାପନ କରିବା ଅପରାଧରେ ମତେ କଳାପାଣି ପାରି ପରି ୨୪ଘଣ୍ଟା ଭିତରେ ପଠାଇ ଦିଆଗଲ କୋରାପୁଟ ଜେଲକୁ । କଟକ ପାଣି ମତେ ସୁହାଇଲ ନାହିଁ । କୋରାପୁଟ ଥିଲ ଇଂରେଜଙ୍କର ହୋମ କ୍ଲାଇମେଟ୍ ପରି ।

କଟକ ଜେଲରୁ ଆମେ ଏକା ଥରକେ ବୋଧହୁଏ ଶହେ ଜଣ ରାଜବନ୍ଦୀ ଗଲୁ । କଡା ପୁଲିଶ ଏସ୍କଟ । ମୋର ସମୃତି ଅବସର ପ୍ରାପ୍ତ ଏସ୍.ପି ଲକ୍ଷ୍ମଣ ମିଶ୍ର ସେତେବେଳେ ଥିଲେ ସବ୍‌ଇନିସ୍‌ପେକ୍ଟର ବା ଇନିସ୍‌ପେକ୍ଟର ମୋର ସ୍ମରଣ ନାହିଁ । ତାଙ୍କ ସାଙ୍ଗକୁ ଆଉ କିଛି କର୍ମଚାରୀ ହାବିଲଦାର ଓ କନ୍‌ଷ୍ଟେବଲ ଇତ୍ୟାଦି ଆମର ଜଗୁଆଳୀ ହୋଇ ଯାଇଥାନ୍ତି । ଆମ ହାତରେ କଡ଼ି । ଦୁଇଟି ସ୍ପେସାଲ ରେଲଡବା ଯୋଡା ଯାଇଥିଲେ ଖଡଗପୁର ପର୍ଯ୍ୟନ୍ତ ଗୋଟିଏ ଟ୍ରେନରେ । ସେ ସ୍ପେସାଲ ଡବା ଦୁଇଟିକୁ ଜେଲ ଅନୁରୂପ କରା ଯାଇଥାଏ । ଆଜି କାଲିକା ପରି ଟ୍ରେନ ଡବାରେ ଲୁହାଛଡ ବା ଜାଲି ଥିବା ଝରକା ନଥିଲ । ସେଗୁଡ଼ିକ ଥାଏ ଫାଙ୍କା । କେବଳ ଝରକା କବାଟ ଥାଏ– ଯୁହିଁଲେ ଖୋଲିଦବ ପବନ ବା ଖରା ପାଇବା ଲଗି । ଏଇଟା ସିନା ସାଧାରଣ ଯାତ୍ରୀଙ୍କ ପାଇଁ । ରାଜବନ୍ଦୀଙ୍କି ଏମିତି ଖୋଲ ଭବରେ କେମିତି ନେଇହେବ ! ତେଣୁ ପ୍ରତି ଝରକାରେ ୩ଟି ଲେଖା ଲୁହାଛଡର ଗ୍ରିଲ ଲଗା ଯାଇଥାଏ । ଆମକୁ ପହଞ୍ଚା-ଇଲ ପରେ ସେଗୁଡ଼ିକ ହୁଏତ ଖୋଲ ହୋଇ ଯାଇଥିବ କିମ୍ବା ଡବା ଗୁଡ଼ିକ ରକ୍ଷା କରା ଯାଇଥିବ ପରେ ଅନ୍ୟ ବନ୍ଦୀଙ୍କି ନେବା ନିମନ୍ତେ । ପ୍ରାୟ ଚାରି, ପାଞ୍ଚ ବର୍ଷ ପର୍ଯ୍ୟନ୍ତ ଏମିତି କଟକରୁ ପାଟନାକୁ ରାଜବନ୍ଦୀ ନେବା ଏକ ପ୍ରକାର ରୀତିମତ କାର୍ଯ୍ୟ ହୋଇଗଲ । ତାହାଛଡା ମୁଙ୍ଗେର, ଭଗଲପୁର ଜେଲ ଆଦିକୁ ମଧ୍ୟ ବନ୍ଦୀଙ୍କି ପଠା ଯାଇଥିଲ । ମୋର ଯେତେଦୂର ମନେ ପଡୁଛି ଆମେ ଯେ ୧୦୦ ଜଣ ଗଲୁ, ତହିଁରେ ଆମ ସାଙ୍ଗରେ ଥିଲେ ପ୍ରାଣକୃଷ୍ଣ ପଡିହାରୀ, ଗୁଣନିଧି ମହାନ୍ତି, ନୀଳାମ୍ବର ଦାସ, କରୁଣାକର ପାଣିଗ୍ରାହୀ, ରବୀନ୍ଦ୍ର ମୋହନ ଦାସ, କ୍ଷେତ୍ରମୋହନ

ଗଉଳ, ଆକୁଳାନନ୍ଦ ବେହେରା, ବିନୋଦ କାନୁନ୍‌ଗୋ, କଟକ ସହର ବାଖରବାଦର ଦୋକାନୀ ରଘୁନାଥ ସାହୁ ଓ ଭରତ ପ୍ରସାଦ ସିଂହ, ପିଠାପୁରର ଶଗଡ଼ିଆ ଗନ୍ଧର୍ଭ ପରିଡା, ଚୌଧୁରୀ ବଜାରର କୁଞ୍ଜ ବେହେରା ପ୍ରମୁଖ । କିନ୍ତୁ ଆମେ ଯେ ନଭେମ୍ବର ୧୬ ବ୍ୟାଚ ଆସିଥିଲୁ, ସେଥିରେ କଟକ ସହରର ସାଧାରଣ ଜୀବିକା ଅର୍ଜନ କରୁଥିବା ଲୋକଙ୍କର ଗିରଫ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଏଇଟା ଥିଲା ପ୍ରଥମ ଗଣ ଗିରଫ ବା mass arest । ଏମାନେ ନଈବାଲି ସଭରୁ ଧରା ହୋଇ ଆସିଲେ । ସବୁଠାରୁ ବାହାଦୁରୀ କଥା ହେଉଛି ଏମାନେ ପୂରା ଜେଲ ଭୋଗିଲେ । କ୍ଷମା ମାଗି ନାହାନ୍ତି କି ଶୀଘ୍ର ବାହାରି ଆସିବାର ବ୍ୟାକୁଳତା ଦେଖାଇ ନାହାନ୍ତି । ଏବେ କିଏ କେଉଁଠି ଅଛନ୍ତି ମୁଁ ଖବର ରଖିନାହିଁ । ରଘୁ ସାହୁ ମରିବା କଥା ମୁଁ ଜାଣେ । କଟକରେ ଥିବାବେଳେ ଯେତେ-ବେଳେ ଗନ୍ଧର୍ଭ ପରିଡା ଶଗଡ ଚଳାଇ ଯାଉଥିବା ଦେଖେ, ଅଟକୁ ଥିଲି; ତାକୁ ଡ଼ାକି କୋଳାକୋଳି ହେଉଥିଲୁ । କି ଖୁସି ମିଜାଜ୍ ଓ ବେପରୁଆ ଲୋକ । ମୁଁ ଏବେ ତା'ର ଖବର କିଛି ଜାଣେ ନାହିଁ ।

ଖଡଗପୁରରୁ ଆସାନ୍‌ସୋଲ ବା ଗୋମୋ କେଉଁବାଟ ଦେଇଗଲୁ ଏବଂ କେଉଁ ଟ୍ରେନରେ ଯାତ୍ରୀ ହେଲୁ, ମୋର ସ୍ମରଣ ନାହିଁ । ତେବେ ଲକ୍ଷ୍ମଣ ମିଶ୍ରଙ୍କ ଉଦାରତା ଯୋଗୁଁ ଖଡଗପୁରରେ ଗାଡ଼ି ବହୁତ ବେଳ ଅପେକ୍ଷା କରିବାକୁ ପଡ଼ିବାରୁ ସେ ହାତକଡ଼ି ଖୋଲିଦେଲେ । ଆମେ ସବୁ ପ୍ଲାଟଫର୍ମରେ ବୁଲି ବେଶ ଟିକିଏ ଫୁର୍ତ୍ତି କଲୁ । ଟ୍ରେନ୍‌ରେ ଜାଣି ପାରିଲୁ ନାହିଁ କେତେ ଶୀଘ୍ର ଦିନ କଟିଗଲା ।

ଅସଲ ପରୀକ୍ଷା ବେଳ ଆସିଲା ଫୁଲଓ୍ୱାରୀ ଶେରିଫ ଷ୍ଟେସନରେ ଯେତେବେଳେ ଓହ୍ଲାଉ । ଦାନାପୁରରୁ ଚଢିଲେ ଗୋରା ଫଉଜ— ସବୁ ଗଜା ଗଜା ଟୋକା, ଲାଲ ଲାଲ ଗାଲ । ଆମକୁ ଦୁଇ ଜଣଙ୍କର ୨ଟି ହାତରେ ହାତକଡ଼ି ଦେଇ

ଲାଇନ୍ କରି ଚଲାଇ ନିଆ ହେଲା । ଦୁଇପାଖରେ ବନ୍ଧୁକଧାରୀ ଗୋରା ଜଣକ ଲାଗି ଜଣେ ପରି ଚାଲି ଥାଆନ୍ତି । ଆମକୁ ଲେଫ୍ଟ୍ ରାଇଟ୍ କହୁ ନଥାନ୍ତି; କିନ୍ତୁ ତାଙ୍କ ସାଙ୍ଗରେ ସମାନ ପାଦକୁ ପାଦ ମିଶାଇ ଓ ତାଙ୍କ ଗତିରେ ଯିବା ଲାଗି ସେମାନଙ୍କର ଇଚ୍ଛା । ସେ ପରିସ୍ଥିତି ଯାହା, ସେମିତି ଆପଣାଛାଏଁ ବି ହୋଇ ଯିବାର କଥା । ଆମେ କେତେକ ଟିକିଏ ବଗୁଲିଆ ପ୍ରକୃତି ଦେଖାଉ ଥାଉ କଠୋରତା ଭାଙ୍ଗିବା ନିମନ୍ତେ । ଶେଷକୁ ଆମ ତରଫରୁ ଆରମ୍ଭ ହୋଇଗଲା- Down Down Union Jack, Up Up National Flag । ଆମେ ସବୁ ଉତ୍ତେଜିତ ସ୍ୱରରେ ଆବାଜ ଉଠାଉ ଥାଉ– । ଧନ୍ ଧନ୍ ହୋଇ ବାଜୁ ଥାଏ ତାଙ୍କ କାନରେ । କେତେ ସହଜେ । ଆମ ଭିତରୁ ଜଣେ ଯେମିତି Down Down Union Jack ବୋଲି କହିଛି, ପାଖରେ ଥିବା ଗୋରା ପଲ୍ଟନ୍ ମାରିଲା ଏକ ଥାପଡ ଯେ କାନ ଫାଟିଗଲା । ଏମିତି ପରିସ୍ଥିତି ଭିତରେ ଆମର ସ୍ୱାଗତ ହେଲା ପାଟନା କ୍ୟାମ୍ପ ଜେଲରେ ।

卐

[ ୧୦ ]

# ପାଟନା କ୍ୟାମ୍ପ ଜେଲ

ମିଲଟରୀ ଫଉଜଙ୍କ କତାରରେ ଆମେ ଯେ ମାର୍ଚ୍ଚ କରି କ୍ୟାମ୍ପ ଜେଲ ଯାକେ ରାଜନୀତିକ ଧ୍ୱନୀ ଦେଇ ଗ୍ଳଲି ଗ୍ଳଲି ଆସିଲୁ, ତାହା ବେଶ କୋଳାହଳ ସୃଷ୍ଟି କଲା । ଆମ ଆଗରୁ ବହୁ ସଂଖ୍ୟକ ବିହାରୀ ଭାଇ ଜେଲ ଭିତରେ ଥାଆନ୍ତି । ସେମାନେ ପାଟି ତୁଣ୍ଡ ନକରି ଖୁଆଡ ଭିତରେ ପକ୍ଷୀଙ୍କ ପରି ରହି ଥାଆନ୍ତି; ସେମାନଙ୍କର ନିଦ ଭାଙ୍ଗିଲା । ନିଜ ନିଜ ଓ୍ୟାର୍ଡର ତାରବାଡ ପାଖରେ ଜମା ହୋଇଗଲେ ଦେଖିବା ଓ ଠଉରାଇବା ନିମନ୍ତେ ତାଙ୍କ ସାଙ୍ଗକୁ ଏଭଳି ଜନ୍ତୁଗୁଡ଼ିଏ କିଏ ଆସିଲେ । ଆମକୁ ଗୋଟି ଗୋଟି ଗଣି ସାଙ୍ଗରେ କଟକ ଜେଲରୁ ଆସିଥିବା ଜେଲ ଟିକଟରେ ମିଶାଇ ଠାବ କରାଇବା ନିମନ୍ତେ ବେଶ ସମୟ ଲାଗିଗଲା । ଏତେ ଲୋକ ଆମେ; ଚୁପ୍‌ଚାପ କିଛି ରହି ନଥିଲୁ । ବେଶ ଗୋଳ ଲାଗିଥିଲା । ଆମ ଭାଷା କେହି ବୁଝୁ ନଥାନ୍ତି । କେବେ ଶୁଣି ବି ନଥିଲେ । ଶେଷକୁ ଠଉରାଇଲେ ଆମେ ବଙ୍ଗାଳୀବାବୁ ବୋଲି । ସାଧାରଣ ଲୋକ ତ ବେଶି ଥାଆନ୍ତି; ସେମାନେ ବଙ୍ଗଳା ଭାଷା ଶୁଣିଛନ୍ତି । ବିହାରର ବିଭିନ୍ନ ସ୍ଥାନରେ ବଙ୍ଗାଳୀ ସବୁ ବସବାସ କରି ଥାନ୍ତି; ଓକିଲ, ଶିକ୍ଷକ ଓ ଅନ୍ୟ ଭାବରେ କାମ କରନ୍ତି । ପାଟନା କ୍ୟାମ୍ପ ଜେଲରେ ବିହାରରୁ ଆସିଥିବା ବନ୍ଦୀଙ୍କ ଭିତରେ କିଛି ବଙ୍ଗାଳୀ ବି ଥିଲେ ।

ଆମେ ଜେଲ ଭିତରକୁ ଯାଇ ଆମ ପାଇଁ ନିର୍ଦ୍ଦିଷ୍ଟ ଏରିଆ ଓ ଓ୍ୟାର୍ଡରେ ଜମିଲା ବେଳକୁ ବିହାରୀ ବନ୍ଦୀଙ୍କ ଭିତରେ କୌତୂହଳ ଆହୁରି ବଢ଼ିଲା । ଆମେ ପୁଣି ଗୁଣ ଗୁଣ ହୋଇ ଓଡ଼ିଆରେ ଜାତୀୟ ସଂଗୀତ ଗାଉ ଥାଉ । ଭାଷାଟା

ବଙ୍ଗଳା ପରି ଶୁଭୁଥିଲେ ସୁଦ୍ଧା ସେମାନେ ବୁଝି ପାରିଲେ ଏହା ବଙ୍ଗାଳୀ ନୁହେଁ । ତାଙ୍କୁ କୁହାଗଲା ଏମାନେ ଜଗନ୍ନାଥ ପୁରୀରୁ ଆସିଛନ୍ତି । ସେଇଥିରୁ ଯାହା ସେ ଠଉରାଇଥିବେ । ବିହାର ଓଡ଼ିଶା ମିଶି ଏକ ପ୍ରଦେଶ ଏବଂ ଏକା ପ୍ରଦେଶର ଗୋଟିଏ ଭାଗରୁ ଆସିଛନ୍ତି, ଏକଥାଟା ତାଙ୍କ ମୁଣ୍ଡରେ କେମିତି ପଶନ୍ତା ! ତାହା ଛଡା ବିହାରରେ ସ୍ୱରାଜ୍ୟ ଆନ୍ଦୋଳନ ପ୍ରକୃତରେ ଗଣଭିତ୍ତିକ ଥିଲା । ଗାଁ ଗହଳରୁ ବହୁ ଲୋକ ଆସିଥିଲେ । ଆମ ଓଡ଼ିଶା ଆନ୍ଦୋଳନରେ ତ କେବଳ ନିମ୍ନ ମଧ୍ୟବିତ୍ତ ଯୁବକ ଛାତ୍ର ଏବଂ ପୁରୁଣା କଂଗ୍ରେସ ଲୋକଙ୍କ ଛଡା ସାଧାରଣ ଲୋକଙ୍କ ସଂଖ୍ୟା ଆଙ୍ଗୁଠି ଅଗରେ ଗଣି ଦେଇ ହେଉଥିଲା । ଦୁଇ ଭିତରେ ଗୁଣାତ୍ମକ ଫରକ । ତେଣୁ ଆମେ ପାଟନା କ୍ୟାମ୍ପ ଜେଲର କଠୋରତା ଓ ନିର୍ମମ ବାୟୁମଣ୍ଡଳକୁ ଟିକିଏ ଖୁଲାସା କରିପାରିଲୁ ସେଥିରେ ବିସ୍ମିତ ହେବାର କିଛି ନାହିଁ ।

ଏହାର ପରିଚୟ ମିଳିଲା ପ୍ରଥମ ରାତିରେ । ସନ୍ଧ୍ୟାରେ ଶୋଇବା ଆଗରୁ ଓ ସକାଳେ ୱାର୍ଡର ତାଲା ଖୋଲା ହେବା ଆଗରୁ ଆମେ ଦୁଇବେଳା ପ୍ରାର୍ଥନା କରୁଥିଲୁ । ସକାଳୁ ହୁଏତ ଏକଡ ସେକଡ ହୋଇଯାଏ; ମାତ୍ର ସଂନ୍ଧ୍ୟାଟା ନିଶ୍ଚିତ । ଆମେ ଯେ ବିଭିନ୍ନ ୱାର୍ଡରେ ଥାଉ, ସନ୍ଧ୍ୟାବେଳେ ସବୁ ୱାର୍ଡ ଭିତରୁ ଆବାଜ ଉଠିଲା । ଏକାଠି ଉଠିବାରୁ ବେଶ୍ ବାହାରକୁ ଶୁଭିଲା । ବିହାରୀ ଭାଇ ଏତେ ସଂଖ୍ୟାରେ ଥାଇ ସୁଦ୍ଧା ଥରେ ଭିତରେ ବନ୍ଦ ହେବା ମାତ୍ରେ ଚୁପଚାପ ନୀରବ । ହୁଏତ ପ୍ରାର୍ଥନା କରୁଥିବେ କିନ୍ତୁ ବଡ ପାଟିରେ ନୁହେଁ । ୱାର୍ଡର ଜେଲର ଆଦି ଛୁଟି ଆସିଲେ । ଟିଣଘର ତ ଦୁଆର ନଖୋଲି ବାହାରେ ଟିଣ ବାଡେଇଲେ । ଆମେ ତାଙ୍କ ଶବ୍ଦ ଶୁଣି ଆହୁରି ଜୋର କଲୁ । ଜେଲର ଥାଆନ୍ତି ଜଣେ ଅତି ଦୟାଳୁ ଓ ଶାନ୍ତିପ୍ରିୟ ମୁସଲମାନ । ବୋଧହୁଏ ବିହାରର ହୋଇ-ଥିବେ । ତାଙ୍କ ଆଚରଣ ସୁପରିଣ୍ଟେଣ୍ଡେଣ୍ଟ ପାରେରା ଠାରୁ ସଂପୂର୍ଣ୍ଣ ବିପରୀତ । ଅବସ୍ଥା ବିଗିଡ଼ି ଯିବ; ପାରେରା କାଳେ ମିଲଟରୀ ଫଉଜ ଆଣି ମାରପିଟ ଆରମ୍ଭ କରିଦବ ଏଥିରେ ଆତଙ୍କିତ ହୋଇ ଜେଲର ଘର ଘର ଯାଇ ବୁଝାଇଲେ; ପ୍ରାର୍ଥନା କରିବାରେ ବାଧା ନାହିଁ; ମାତ୍ର ଆୱାଜ କରନ୍ତୁ ନାହିଁ । ବିପଦ ରହିଛି । ଆମ ଭିତରେ ଥିବା ବୟସ୍କଙ୍କୁ ବୁଝାଇ ଦେଲେ । କିନ୍ତୁ ଏତେ ସବୁ ଜେଲବାଲଙ୍କ ଯିବାଆସିବା ତୋଡ ଜୋଡରୁ ସମସ୍ତେ ବୁଝିଗଲେ ଯେ ଏଗୁଡ଼ିକ ଓଡ଼ିଆ । କାରଣ ପୂର୍ଣ୍ଣିଆ ଓ ପୁରୁଲିଆ ଜିଲାରୁ କେତେକ ବଙ୍ଗାଳୀ ଗୋଟିଏ ଅଲଗା ୱ୍ୟାର୍ଡରେ ଥାଆନ୍ତି ।

ସେମାନଙ୍କ ଭିତରୁ ବେଶିଥିଲେ ରିଭଲ୍ୟୁସନାରୀ । କିନ୍ତୁ ସେମାନେ ଆମମାନଙ୍କ ପରି ହେଉ ନଥିଲେ ।

ଟିଣ ଘରଟିକି ଓ୍ୟାର୍ଡ ବୋଲି କୁହାଯାଉ ଥିଲା । ଏକଦମ୍ ତଳିଆ ଯାଗା, ବିଲ । କଟକ ଜେଲରେ ହେଲେ ମାଟି ପିଣ୍ଡି ଥିଲା ଶୋଇବା ଲାଗି । ଏଠି ବିଲ କିଆରୀ ଚିହ୍ନ ହିଡ ଓ ଧାନ କିଆରୀ ଆଦି କିଛି କିଛି ରହିଥାଏ । ତାହାରି ଉପରେ ଶୋଇବା କଥା । ପାଟନା ଭଳିଆ ଯାଗାର ଶୀତ ଥଣ୍ଡା । ତଳମାଟି ସନ୍ତସନ୍ତିଆ । ମିଳିଥାଏ ବିଛାଇବା ଲାଗି ଗୋଟାଏ ମୋଟା ଝୋଟବୁଣା ପଟି; ଅଖା ନୁହେଁ । ତା ଉପରକୁ ଏକ ସତରଞ୍ଜି । ଶୀତ ଯାଗା ବୋଲି ଜଣକେ ତିନି ତିନିଟା କମ୍ବଳ । ବାକୀ ଯେମିତି କଟକରେ ମିଳୁଥିଲା, ସେମିତି ଜଙ୍ଘିଆ, ଫତେଇ, ଗାମୁଛା ଏବଂ ଖାଇବା ନିମନ୍ତେ ଲୁହା ବାଟି, ଛୋଟ କରେଇ ପରି ଗହିଲା । ଶୀତଦିନ କଇଁଚିଆ କଥା କଣ କହିବି ! ନିଆଁ ଜାଳିବାକୁ ମନା; ଏଣେ ଦିହ ହାତ କୋହୁ ମାରି ଯାଉଥାଏ । ଦିନବେଳେ ଖରାରେ ବସିଲେ ଟିକିଏ ଆରାମ ମିଳୁଥିଲା । ରାତିରେ ହେମାଳ, ଥଣ୍ଡା; ପୁଣି ବରଫ ପଡ଼ି ଟିଣ ଘର ଗୁଡ଼ିକ ବେଶ କୀର୍ତ୍ତନ ଲଗାଇ ଦିଅନ୍ତି । ଏ ସ୍ଥାନ ଗୁଡ଼ିକୁ ଆମ୍ଭେମାନେ ରହି ଯିବାରୁ କ୍ରମେ ସଫା କରି ଲିପି ପୋଛି ଚଳିଲା ଭଳି କରି ନେଲୁ । ମାତ୍ର ତଳର ଥଣ୍ଡା ଆଉ ଯାଆନ୍ତା କୁଆଡେ । ସେଠି ଶୀତ ଯେମିତି, ଖରା ସେମିତି । ଟିଣ ତାତି କି ବାହାର ତାତି ମିଶିଗଲେ ରାତିରେ ସନ୍ତୁଳି ହେବା ସିନା ସାର । ଯେତେ ଆମ ଜେଲର ନେତାମାନେ କର୍ତ୍ତୃପକ୍ଷଙ୍କୁ ବୁଝାଇଲେ ସୁଦ୍ଧା ଖରାଦିନେ ଟିକିଏ ଡେରି ପର୍ଯ୍ୟନ୍ତ କିମ୍ବା ରାତିସାରା ଖୋଲା ରଖିବାର ଗୁହାରୀ ଶୁଣାଗଲା ନାହିଁ ।

ଏତେ ଲୋକଙ୍କ ଲାଗି ଗୋଟିଏ ସ୍ଥାନରେ ରନ୍ଧା ହୁଏ । ଭାତ, ଡାଲି, ତରକାରୀ, ଖଟା । ଏତିକ ନିଶ୍ଚିତ । ତରକାରୀ ହୁଏ ଗୋଟିଏ ପରିବା । ଭଲ ପରିବା ଯଥା ଆଳୁ, କୋବି ଇତ୍ୟାଦି । ସେଠାରେ ପ୍ରଚୁର ମିଳେ । ନିଜ ଓ୍ୟାର୍ଡର ଖାଦ୍ୟ ଡେଗକୁ ଆମ ଭିତରୁ ପାଳି କରି ଓ୍ୱାର୍ଡକୁ ବୋହି ଆଣିବାକୁ ହୁଏ । ଜଣ ପିଛା ମାପ କରି ସେଥିରେ ରଖା ଯାଇଥାଏ । ମାତ୍ର ଯେଉଁ ଦିନ ବିରିଡାଲି ଓ କଲରା ଖଟା ଏକ ସାଙ୍ଗରେ କରାଯାଏ, ସେଦିନ ଆମ ହଲକ ସୁଖେ, ମାତ୍ର ବିହାରୀ

ଭାଇଙ୍କର ଆନନ୍ଦର ସୀମା ନଥାଏ । ଢ଼େଗ ଢେଗ ଭାତ ବୋହି ନିଅନ୍ତି । ସେମିତି ସପ୍ତାହରେ ଦୁଇଦିନ ଭିଜାଚଣା ଓ ଲୁଣ ଜଳଖିଆ ମିଳୁଥିଲା । ଆମ ଦିହରେ ଏହା ଗଲାନାହିଁ । ଆମେ ସବୁ ବିରିଡାଲି ଓ ଭିଜାବୁଟ ବିରୁଦ୍ଧରେ ପ୍ରତିବାଦ କଲୁ; ମେଳି ବାନ୍ଧି ହଲା କଲୁ; ଉଠି ଗଲିଲା । ମାତ୍ର ଶେଷକୁ ବିରି ବଦଳରେ ହରଡ଼ ଡାଲି ଓ କଞ୍ଚା ବୁଟ ବଦଳରେ ଚୁଡ଼ା ଗୁଡ଼ ଓଡ଼ିଆଙ୍କୁ ମିଳିଲା । ତେଲ ତ ମିଳୁ ନଥିଲା । ଦେହ ନୁଖୁରା ହୋଇ ଫାଟି ଯାଉଥିଲା । ଦୁଇଦିନ ସକାଳୁ ଯେ ଚିନାବାଦାମ ଜଳଖିଆ ମିଳେ ତାକୁ ଆମେ ସାଇତି ରଖୁ । ବାସୀ ରୁଟିରେ ଜଳଖିଆ ଚଳାଇ ଦେଉ । ଚିନାବାଦାମକୁ ଛେଚି ଛାଚି ସେଥିରୁ ଯେଉଁ ରସ ବାହାରେ ସେଥିରେ ଦିହ ଚିକ୍‌କଣ କରୁ । ବିହାରର ବହୁ ଜଣାଶୁଣା ଲୋକ କ୍ୟାମ୍ପ ଜେଲରେ ରହିଥିଲେ । ପରେ କେହି କେହି ମୁଖ୍ୟମନ୍ତ୍ରୀ ହେଲେ । ଆମ ଭିତରକୁ ଯେତେବେଳେ ହାଜାରୀବାଗ୍‌ରୁ ଦଣ୍ଡିତ ହୋଇ 'ସି' କ୍ଳାସ ବନ୍ଦୀ ଭାବରେ ହରେକୃଷ୍ଣ ମହତାବ ଆସିଗଲେ ସେଥିରେ ଆମମାନଙ୍କ ଭିତରେ ଆନନ୍ଦ ଖେଳିଗଲା । ସବୁଠାରୁ ଦର୍ଶନୀୟ ଥିଲା ତାଙ୍କ ପିଠିକୁ ଯେତେବେଳେ ଛୋଟ ଛୋଟ ଜଙ୍ଘିଆ ପାଏ ନାହିଁ । ସେ କିନ୍ତୁ ଭରି ପାରିବାର ଲୋକ । ଦହଗଞ୍ଜକୁ ପାଶୋରିଲା ଭଳି ବାୟୁମଣ୍ଡଳ ତିଆରି କରିଦେଲେ । ସାଙ୍ଗ ମେଳରେ ସେ ଓ ଆମେ ସମସ୍ତେ ଜେଲ କଷ୍ଟକୁ ଭୁଲିଗଲୁ ।

卐

## ପୁଣି ସେହି କ୍ୟାମ୍ପ ଜେଲ୍ କଥା

ଆଗରୁ ଲେଖିଛି ମୁଁ ୫ ଥର ଜେଲ ଯିବା ଭିତରେ ୩ ଥର ପାଟନା କ୍ୟାମ୍ପ ଜେଲରେ କଟାଇଛି । ଏବେ ପୁଣି କ୍ୟାମ୍ପ ଜେଲ କଥା ଲେଖୁଛି । କିନ୍ତୁ ଏହା ହେଉଛି ୧୯୩୦ ମସିହା କଥା । ଆଉ ୩୨।୩୩ରେ ଯେ ଦୁଇ ଥର କ୍ୟାମ୍ପ ଜେଲ ଯାଇଥିଲି ସେ ବିଷୟ ଲେଖି ପୃଷ୍ଠା ବୃଦ୍ଧି କରିବି ନାହିଁ । ଏଇ ଥରକେ ସେ କଥା ଛିଣ୍ଡାଇ ଦେବି ।

ମୁଁ ମାମୁଁଙ୍କ ପାଖରେ କଥା ଦେଇଥିଲି ଯେ ଜେଲ ଭିତରେ ମୁଁ ପଢ଼ାପଢ଼ି କରିବି ଏବଂ ପାଠ ପଢ଼ିଥିଲେ ଏମ୍.ଏ. ବା ତଦୁପରି ଶିକ୍ଷାରେ ଯାହା ଜ୍ଞାନ ଅର୍ଜନ କରି ଥାଆନ୍ତି, ତାଠୁଁ ବେଶି ଯୋଗ୍ୟତା ହାସଲ କରିବି । ବଙ୍ଗଳାରେ ପୁଣି ବହୁ ବନ୍ଦୀ ଦୀର୍ଘ ଜେଲ ଜୀବନରେ ଥାଇ ଇଉନିଭରସିଟି ପରୀକ୍ଷା ଦେଇ ଡ଼ିଗ୍ରୀ ହାସଲ କରିଛନ୍ତି । ଏହି କଥାଟି ମୋର ବରାବର ମନରେ ଥାଏ । କଟକ ଜେଲରେ ଅଳ୍ପଦିନ ରହିଥିଲେ ସୁଦ୍ଧା ମୁଁ ତାରି ଭିତରେ ମୁଙ୍ଗେରର ଜଣେ ରାଜବନ୍ଦୀ ଯିଏ ଯେ ଆମ ସହିତ ଥିଲେ ତାଙ୍କଠୁ ହିନ୍ଦୀ ଲେଖିବା ଓ ପଢ଼ିବା ଶିକ୍ଷା ଆରମ୍ଭ କରି ଦେଇଥିଲି । ଏ ସବୁ ପଢ଼ାପଢ଼ି କରିବା ନିମନ୍ତେ ଅଶେଷ ସୁଯୋଗ ମିଳିଲା ପାଟନା କ୍ୟାମ୍ପ ଜେଲରେ । ମହତାବ ପହଂଚି ଯିବାରୁ ଓଡ଼ିଆଙ୍କ ଭିତରେ ଗୋଟାଏ ସଂସ୍କୃତିମୂଳକ ବାତାବରଣ ସୃଷ୍ଟି ହୋଇଗଲା । ସେ ନାଟକ ଲେଖିଲେ, ବନ୍ଦୀସବୁ ମିଳି ଅଭିନୟ କଲେ । କବିତା ନାଟକ ଆଦି ଲେଖିବାର ଗୋଟାଏ ହାଉଆ ଖେଳିଗଲା । କେତେ ନୂଆ ନୂଆ କଲମ ଧରିଲେ । ନିତ୍ୟାନନ୍ଦ ମହାପାତ୍ର, କ୍ଷେତ୍ର ମୋହନ ରାଉଳ ଇତ୍ୟାଦି ।

ଖୁବ ଜୋରରେ ଚାଲିଥିଲା ରାଜନୀତି ଚର୍ଚ୍ଚା । ବିହାରର ବହୁ ଛାତ୍ରନେତାଙ୍କ ସେଠାରେ ରହି ଥାଆନ୍ତି । ପ୍ରକାଶ୍ୟ ଭାବରେ ବରଗଛ ମୂଳେ ବସିଲା ପରି ଗୋଟିଏ ଓ୍ବାର୍ଡ ବାହାରେ ଜଣେ ଜଣେ ନିର୍ଦ୍ଦିଷ୍ଟ ସମୟରେ ବସି ଯାଆନ୍ତି । ମୋର ମନେ ଅଛି ପାଟନାର ସର୍ଚ୍ଚ ଲାଇଟ ପତ୍ରିକାର ସହ ସଂପାଦକ ମାର୍କସ୍ ବାଦ ସମ୍ବନ୍ଧରେ ଧାରାବାହିକ ଭାଷଣ ଦେଉଥିଲେ । ସେ ସରଳ ଇଂରେଜୀରେ ବେଶ୍ ବୁଝିଲା ପରି କହନ୍ତି । ମୁଁ ଥରେ ଦେଖିବାକୁ ଗଲି ତ ମନ ଛାଡ଼ିଲା ନାହିଁ । ବୋଧହୁଏ ତାଙ୍କର ଗୋଟିଏ ହେଲେ କ୍ଲାସ ଛାଡ଼ି ନଥିଲି । ସେମିତି ଗାନ୍ଧୀବାଦ, ଗୀତା ପ୍ରବଚନ, ଆଦି କ୍ଲାସ ହୁଏ । ଆଉ କେତେକ ଧାରାବାହିକ ରାଜନୀତି ବିଜ୍ଞାନ, ଅର୍ଥଶାସ୍ତ୍ର, ସାମାଜିକ ବିଜ୍ଞାନ ଆଦି ସମ୍ବନ୍ଧରେ ବି ଏମିତି କ୍ଲାସମାନ ହେଉ ଥାଏ, ତାହା କେହି ଯଦି ନୋଟ କରୁଥିବ ବା ମନଦେଇ ଶୁଣୁଥିବ, ସେ ଜେଲ୍‌ରୁ ବାହାରେ ଆସି କଲେଜରେ ଯୋଗ ଦେଲେ ଅକ୍ଳେଶରେ ସେଥିରେ କୃତକାର୍ଯ୍ୟ ହୋଇ ପାରିବ । ତାହାଛଡ଼ା ଗାଉଁଲୀ ଲୋକ ତ ବହୁତ ଆସି ଥାଆନ୍ତି । ସେମାନଙ୍କ ମନରୁଚିକର ଅନେକ ସଂସ୍କୃତିକ କାର୍ଯ୍ୟକ୍ରମ ସେମାନେ ଆୟୋଜନ କରୁଥିଲେ । ଏତେବଡ଼ ଚକଡ଼ା; ନାନା କିସମର ଲୋକ । କାମ ଧନ୍ଦା କିଛି ନଥାଏ । ପ୍ରଥମେ ପ୍ରଥମେ ଯାହା ଗଛଡାଳ ବାଛିବା, ଚକ୍କି ପେଷିବା ଆଦି କାର୍ଯ୍ୟ କରିବାକୁ ପଡୁଥିଲା, ତାହା କ୍ରମେ ବନ୍ଦ ହୋଇଗଲା । ତେଣୁ ନିୟମିତ ଭାବରେ ବିଧିବଦ୍ଧ ଖେଳ ବା ଦୈହିକ ଶ୍ରମ ବା କସରତ କରିବା ଭଳି ବ୍ୟବସ୍ଥା ବି ଥିଲା । ଜଣେ ଯଦି ସକାଳୁ ସଂଧ୍ୟା ପର୍ଯ୍ୟନ୍ତ ଘୁରିଆଡ଼େ ବୁଲି ଆସିବ, ସେ ନିଶ୍ଚୟ ଦେଖି ପାରିବ କିଛି ନା କିଛି କେଉଁଠି ହେଲେ ହେଉଛି । ସର୍ବଦା ଏପରି କେଲମାନଙ୍କରେ ବିଭିନ୍ନ ଦଳ ତାଙ୍କର ରିକ୍ରୁଟମେଣ୍ଟ ଚଳାନ୍ତି । ଛୋଟ ଛୋଟ ଗ୍ରୁପ ଆଲୋଚନା ହୁଏ । ଅତି ଅଳ୍ପ ସଂଖ୍ୟକ ସଂତ୍ରାସବାଦୀ ମଧ୍ୟ ଥାଆନ୍ତି । ସେମାନଙ୍କ ଭିତରେ ଅତି ଗୁପ୍ତ ମନ୍ତ୍ରଣା ହୁଏ । ବେଶି ଭାଗ ଥାଆନ୍ତି ବଙ୍ଗାଳୀ । ସେମାନଙ୍କ ଠାରୁ ସନ୍ତ୍ରାସବାଦ କାହାଣୀ ସବୁ ଶୁଣିଲେ ଗୋମ ଟାଙ୍କୁରୀ ଉଠେ ଏବଂ ମନେ ହୁଏ ଏପରି ଗୁପ୍ତଗୋଷ୍ଠିଙ୍କ ସାଥି ହୋଇ ହିଂସା ଅସ୍ତ୍ରଆଦି ଚାଳନା ଶିକ୍ଷା କରିବା ନିମନ୍ତେ । ଏପରି ଏକ ଗ୍ରୁପ ସହ ମୋର ଖୁବ ଘନିଷ୍ଠତା ବଢ଼ିଥିଲା । କେତୋଟି କ୍ଲାସରେ ମଧ୍ୟ ଯୋଗ ଦେଇଥିଲି । ପ୍ରଶ୍ନ ହେଉଛି ହିଂସା ବା ବ୍ୟକ୍ତିଗତ ଆତଙ୍କବାଦ ଆଚରଣ କରି ଚରମ ତ୍ୟାଗ ବା ନିଜେ ଶତ୍ରୁକୁ ହତ୍ୟାକରି ନିଜକୁ ପୁଣି ଗୁଳିକରି ମାରି ଦେବାକୁ ପ୍ରସ୍ତୁତ ହେବାକୁ ହିଂସା ଉପରେ ସେତିକି ଅଟଳ ବିଶ୍ୱାସ ରହିଥିବା ଆବଶ୍ୟକ ।

ହିଂସାର ପରକାଷ୍ଠା ପ୍ରମାଣ କରିବାକୁ ହେଲେ ଅହିଂସ ପନ୍ଥାକୁ ନ୍ୟୁନକରି ଦେଖାଇ-ବାକୁ ପଡ଼ିବ । ତାହା କରିବାକୁ ହେଲେ ଗାନ୍ଧୀଜୀଙ୍କର ସମାଲୋଚନା ଅନିବାର୍ଯ୍ୟ । ମୋ ଭିତରେ ଏଠିକିବେଳେ ଧର୍ମ ସଂକଟ ଉପୁଜିଲା । ଗାନ୍ଧୀଙ୍କ ଆହ୍ୱାନରେ ଜେଲ ଆସିଛି ଏବଂ ଏକ ରକମ ତାଙ୍କ ଦୀକ୍ଷା ନେଇଛି । ତାକୁ ଛାଡ଼ିବି କେମିତି । ଆତଙ୍କବାଦର ଉପାଦେୟତା କିଛି ପରିମାଣରେ ସ୍ୱୀକାର କରୁଥିଲେ ମଧ୍ୟ ଗାନ୍ଧୀ ବିରୋଧୀ ହୋଇ ପାରିଲି ନାହିଁ । ସେମାନଙ୍କ ସାଙ୍ଗରେ ବସିବା ଉଠିବା ଛାଡ଼ି-ଦେଲି । ପୁରୁଲିଆର ତରୁଣ ଦା' ଥିଲେ ଉଗ୍ରପନ୍ଥୀ ଗୋଷ୍ଠିର ସ୍ରଷ୍ଟା । ସେ ସେଠାରେ ଗୋଟିଏ ଗୋଷ୍ଠି ସୃଷ୍ଟି କରିଥିଲେ । ସେ ଯେ ମୋ ଉପରେ ବେଶି ପ୍ରଭାବ ପକାଇ ପାରିଥିଲେ, ସେ କିନ୍ତୁ ମୋ ସହିତ ସଂପର୍କ ରଖିଥିଲେ ଆମେ ଜେଲରୁ ଖଲାସ ହେବା ପର୍ଯ୍ୟନ୍ତ ।

ଆମ ଭିତରୁ କେତେକଙ୍କର ବୈପ୍ଳବୀ ଓ ବିଦ୍ରୋହ ସଂପର୍କୀୟ ପୁସ୍ତକ ପଢିବାର ଆଗ୍ରହ ଥିଲା । ଆମର ଗୋଟିଏ ଛୋଟ ଗୋଷ୍ଠି ଥିଲା । ସମସ୍ତଙ୍କର ନାମ ସ୍ମରଣ ନାହିଁ । ତେବେ ଯେତେଦୂର ମନେ ହେଉଛି ରବୀନ୍ଦ୍ର ମୋହନ ଦାସ, କ୍ଷେତ୍ର ମୋହନ ରାଉତ, ଗୌରଚନ୍ଦ୍ର ଦାସ ଓ ବିନୋଦ କାନୁନ୍‌ଗୋ ଏଥିରେ ଥିଲେ । ଆମେ ରାତି ରାତି ଅନିଦ୍ରା ହୋଇ ଲଣ୍ଠନ ଜାଳି ଅନ୍ୟମାନେ ଶୋଇଥିବା ବେଳେ ଆନଟଙ୍କ ଲିଖିତ ନେପୋଲିୟନ, ମାର୍ଜିନୀ, ଗାରିବଲ୍‌ଡୀ, ଡ଼ି. ଭେଲେରା, ରୁଷ ବିପ୍ଳବ ଓ ଆଇରିଶ୍ ସ୍ୱାଧୀନତା ସଂଗ୍ରାମ ଆଦି ସମ୍ବନ୍ଧରେ ପୁସ୍ତକମାନ ପଢିଥିଲୁ । ଏହି ସମୟରେ ମାକ୍‌ସିମ୍ ଗର୍କିଙ୍କ ଲିଖିତ "ମଦର" ପୁସ୍ତକ ମୋର ହସ୍ତଗତ ହୋଇଥିଲା । ଏହି ବହି ମୋର ଚିନ୍ତାଧାରା ଉପରେ କିପରି ପ୍ରଭାବ ପକାଇଲା ଏବଂ ମୁଁ କ୍ରମେ ଗାନ୍ଧୀ ପଥିକ ନହୋଇ ଯେ ମାର୍କସବାଦ ଓ ସମାଜ-ବାଦକୁ ଆକୃଷ୍ଟ ହେଲି, ତାର ବିସ୍ତୃତ ବର୍ଣ୍ଣନା କରିଛି ମୋ ଲିଖିତ "ମୋ ଜୀବନ ସଂଗ୍ରାମ" ପୁସ୍ତକରେ । ମନେ ପଡୁଛି ଏହି କ୍ୟାମ୍ପ ଜେଲର ତିନିଥର ରହଣି ଭିତରେ ମୁଁ **H. G. Wells, Bertrand Russel, Karl Marx** ବର୍ଣ୍ଣାଡ ଶଙ୍କ ଲିଖିତ ଓ ତାଙ୍କ ସମ୍ବନ୍ଧରେ ଲିଖିତ ବହୁ ପୁସ୍ତକ ପଢିବାର ସୁଯୋଗ ଉଠାଇ ଥିଲି । ବରଡା ନୋପ୍‌ଙ୍କ ଲିଖିତ ଅର୍ଥନୀତି ପୁସ୍ତକ ପଢି ପୁଞ୍ଜିବାଦୀ ଅର୍ଥନୀତିକ ବ୍ୟବସ୍ଥା ପ୍ରତି ମୋର ଘୃଣା ଆସିଗଲା । ଟିକିଏ ପୋଖତ ବୟସ ହେବାରୁ ସାଧାରଣ ଅର୍ଥନୀତିକ ବ୍ୟବସ୍ଥା ସମ୍ବନ୍ଧରେ ବହୁ ପୁସ୍ତକ ପଢିଲି

ଖୁବ ଆଗ୍ରହ ସହକାରେ । ରାଜନୀତିରେ ପଶିଲି । ରାଜନୀତିକ ପୁସ୍ତକ ପଢିଲି । ସ୍ୱାଧୀନତା ସଂଗ୍ରାମ ଛଡା ଅନ୍ୟ ଚିନ୍ତା ନଥିଲା । ରାଜନୀତି ଶାସ୍ତ୍ର ବିଶାରଦ ହେବାକୁ ପଡ଼ିଲା । ମାତ୍ର ବରଡାନୋଫ୍‌ଙ୍କ ପୁସ୍ତକ ପଢି ଯେଉଁ ଅର୍ଥନୀତିକ ଜ୍ଞାନର ଜିଜ୍ଞାସା ଓ ପିପାସା ବୃଦ୍ଧି ପାଇଲା, ତାହା ବହୁଳ ଭାବରେ ମତେ ସାହାଯ୍ୟ କରିଛି ଜଟିଳ ରାଜନୀତିକ ଓ ଅର୍ଥନୀତିକ ସମସ୍ୟା ଅନୁଧ୍ୟାନ କରିବାରେ । ଆମର ଗଞ୍ଜାମ ଆଡେ ଜେଲକୁ କହନ୍ତି 'ଶିକ୍ଷା' ବୋଲି । ମୁଁ ସେହିଭଳି ଏହାକୁ ଏକ ଶିକ୍ଷାଗାର ଭାବରେ ଉପଯୋଗ କରିଛି ।

卐

[ ୧୨ ]

# ଜେଲ ପରେ ଜେଲ ଗଲୁ କିପରି ?

ଏତେ ଥର ଯେ ପର୍ ପର୍ ଜେଲ ଗଲୁ, କିପରି ଓ କାହିଁକି ? ଜେଲ ଯିବାଟା କିଛି ସୁଖକର ନ ଥିଲା । ନିଜର ଭବିଷ୍ୟତ ଜୀବନ ଅନିଶ୍ଚିତ ହୋଇଗଲା । ପାଠ ପଢୁଆ ପିଲାଙ୍କର ପାଠରେ ଡୋରି ବନ୍ଧା ହୋଇଗଲା । ସରକାରୀ ଚାକିରୀ ଛାଡ଼ି ଯେ ଆସିଲେ ତାଙ୍କର ତ ଭେଳା ବୁଡ଼ିଲା । କେତେକ ନେତାଙ୍କ ଛଡା ଆଉ କେହି ବଡ଼ଲୋକ କି ସଂପତ୍ତିବାନ ଲୋକ ଆସୁ ନ ଥିଲେ । ସେମାନଙ୍କ ସହାନୁଭୂତି ଦୂରର କଥା । ଯେମିତି ପୁରୀର ଜଗନ୍ନାଥ ମିଶ୍ର । ସେ ମୋର ଅତି ପ୍ରିୟ ଭକ୍ତି ଭାଜନ । ମୋର ତାଙ୍କ ବିଷୟରେ ଏତିକି ଉକ୍ତିକୁ ସେ ଯଦି ଆକ୍ଷେପ ବୋଲି ମନେ କରିବେ, ମୁଁ କ୍ଷମା ମାଗି ନେଉଛି । ୧୯୩୬-୩୭ ଆସେମ୍ବ୍ଲି ନିର୍ବାଚନରେ ସେ ପୁରୀରୁ ଜିତି ଆସିଥିଲେ । ୧୯୩୯ରେ ବିଶ୍ୱନାଥ ଦାସଙ୍କ ମନ୍ତ୍ରୀମଣ୍ଡଳ ଯୁଦ୍ଧ ଯୋଗୁଁ ଇସ୍ତଫା ଦେବା ପର୍ଯ୍ୟନ୍ତ ସେ ଜଣେ ପାର୍ଲିଆମେଣ୍ଟରୀ ସେକ୍ରେଟରୀ ଥିଲେ ସେତେବେଳେ ପାର୍ଲିମେଣ୍ଟରୀ ସେକ୍ରେଟରୀଙ୍କର ସ୍ଥାନ ଖୁବ ଉପରେ । ମନ୍ତ୍ରୀ, ତା ପରେ ପାର୍ଲିମେଣ୍ଟରୀ ସେକ୍ରେଟରୀ । ଡେପୁଟି ବା ରାଷ୍ଟ୍ରମନ୍ତ୍ରୀ ପଦବୀ ପରେ ସୃଷ୍ଟି ହେଲା । ଜଗନ୍ନାଥ ମିଶ୍ର ଏକ ଧର୍ମପ୍ରାଣ ଉତ୍ତମ ସାଧୁ ପୁରୁଷ; ସର୍ବଦା ହସ ହସ ମୁହଁ । ବଡ କର୍ତ୍ତବ୍ୟନିଷ୍ଠ । ମୋ ବିଗ୍ୱରରେ ତାଙ୍କ ପରି ଜଣେ ବ୍ୟକ୍ତିଙ୍କର ରାଜନୀତିକ କ୍ଷେତ୍ରରୁ ନୀରବ ରହିବାଟା ବଡ କ୍ଷତି ଘଟାଇଛି । ଜଗନ୍ନାଥ ବାବୁ ୧୯୪୦ ବ୍ୟକ୍ତିଗତ ସତ୍ୟାଗ୍ରହରେ ଜେଲ ଭୋଗିଲେ । ଯେଉଁମାନଙ୍କୁ ଜଣାଥିବ ବ୍ୟକ୍ତିଗତ ସତ୍ୟାଗ୍ରହ ଇଚ୍ଛା କଲେ କେହି କରି ପାରୁ ନ ଥିଲେ । ବ୍ୟକ୍ତିଗତ ସତ୍ୟାଗ୍ରହରେ କିଏ ଯୋଗ ଦେଇ ପାରିବ, ସେକଥା ବ୍ୟକ୍ତିଗତ ଭାବରେ ମହାତ୍ମା ଗାନ୍ଧି ସ୍ଥିର କରୁଥିଲେ । ସେହି ହିସାବରେ ତାଙ୍କୁ ଜେଲ ବରଣ କରିବାକୁ

ପଡ଼ିଥିଲା । ସେ ଜଣେ ସଂପତ୍ତିବାନ ବ୍ୟକ୍ତି । ପୁରୁଣାକାଳିଆ ଜମିଦାରୀ ମହାଜନୀ କାରବାର । ଅନୁପସ୍ଥିତିରେ ଗୁମାସ୍ତା ମୋହରୀର ଯାହା ସବୁ ଉପଦ୍ରବ କରନ୍ତି ଓ ଅନ୍ୟାୟ ଜବରଦସ୍ତି କରି ମାଲିକକୁ ବଦନାମ୍ କରି ପକାନ୍ତି, ଏହା ବି କାହାରିକି ଅଛପା ନଥାଏ । ଏସବୁ ସତ୍ୱେ ମିଆଦ ଭୋଗ ପର୍ଯ୍ୟନ୍ତ ଆମମାନଙ୍କ ସାଙ୍ଗରେ ଜେଲରେ ରହିଥିଲେ । ବେଶି ଧ୍ୟାନ ଜପ ଆଦିରେ ସମୟ କଟାଉ ଥିଲେ; ଆମ ମାନଙ୍କର ଗପ ବା ଅଳସ ବିଳାସ କ୍ଲବ୍‌ରେ ଯୋଗ ଦେବା ଲାଗି ସମୟ ପାଆନ୍ତି ନାହିଁ । ବ୍ରହ୍ମପୁର ଜେଲରେ ସେ ଥରକ ଆମେ 'ବି' କ୍ଲାସ ବନ୍ଦୀ ଏକା ସାଙ୍ଗରେ ଗୋଟିଏ ବଡ଼ ଓ୍ୟାର୍ଡରେ ଥିଲୁ । ପ୍ରତ୍ୟେକଙ୍କୁ ଖଟ ମଶାରୀ ମିଳିଥିଲା । ଜଗନ୍ନାଥ ବାବୁ ଭୋର ୪ଟା ଠାରୁ ଉଠି ମଶାରୀ ପକାଇ ଦେଇ ତା'ରି ଭିତରେ ବସି ସକାଳ ହୋଇ ଖରା ପଡ଼ିଗଲେ ବି ଜପତପ କରୁଥିଲେ । ଆମେ ସବୁ ଉଠି ନିତ୍ୟକର୍ମ ସାରି ଜଳଖିଆ ଖାଇ ସାରୁ; ଅଥଚ ତା' ଭିତରୁ ସେ ବାହାରି ନ ଥାଆନ୍ତି । ଗଞ୍ଜାମର ମାନଧାତା ଗୋରଚନ୍ଦ୍ର ପଟନାୟକଙ୍କ ନାମ ଅନେକଙ୍କୁ ଜଣାଥିବ । ସେ ଥିଲେ ଜଣେ ବଡ଼ ଓକିଲ । କିଛିକାଳ ପାରଳାଖେମଣ୍ଡି ମହାରଜାଙ୍କ ନେତୃତ୍ୱରେ ଗଠିତ ଅନ୍ତରୀଣ ମନ୍ତ୍ରୀମଣ୍ଡଳରେ ମନ୍ତ୍ରୀ ବି ହୋଇଥିଲେ । ସେତେବେଳେ ସେ ଥିଲେ ବ୍ରହ୍ମପୁର ଜେଲର ବେସରକାରୀ ଭିଜିଟର । ସେ ସକାଳୁଆ ଆସନ୍ତି ପରିଦର୍ଶନରେ । ପ୍ରଥମ ଥର ଆସିଲେ, ଆମ ସମସ୍ତଙ୍କୁ ଭେଟିଲେ । ମାତ୍ର ଜଗନ୍ନାଥ ବାବୁ ମଶାରୀ ଭିତରେ ଥିବାରୁ ଗ୍ଲଲିଗଲେ । ଦ୍ୱିତୀୟ ଥରକୁ ଆସି ସେହି ଦଶା ଦେଖି ଉପହାସରେ ବଡ ପାଟିରେ କହି ପକାଇଲେ "ଆହେ ! ଏ ଜପ ସପ ତୁଚ୍ଛା କଥା ହେ । ଏତେବେଳେ ମାଳି ଗଡାଇ କିଏ ଭଗବାନଙ୍କୁ ଡାକେ ! ନାଇଁ, ନାଇଁ– ସେ ତାଙ୍କର ଯେଉଁ ମାହାଜନୀ କାଗଜପତ୍ର ବାହାରେ ଛାଡ଼ି ଆସିଛନ୍ତି, କାହା ଉପରେ କେତେ କଳନ୍ତର ହେଲା, ତାର ହିସାବଟା ମାଳି ଗଡାଇ ଗଣି ସ୍ମରଣା କରୁଛନ୍ତି ସିନା !" ସମସ୍ତେ ହସିଲୁ ଏବଂ ଜଗନ୍ନାଥ ବାବୁ ପରେ ଶୁଣି ଆମମାନଙ୍କ ହସରେ ଯୋଗ ଦେଲେ । ବାସ୍ତବିକ ଦେଖିଲେ ସଂପତ୍ତିବାନ ବ୍ୟକ୍ତିମାନେ ଯେ କେତେ କ୍ଷତିଗ୍ରସ୍ତ ହେଉଥିବେ, ଏଥିରୁ ଅନୁମାନ କରିହବ । ଜଗନ୍ନାଥ ବାବୁ ଆନ୍ଦୋଳନ ସହ ପୂର୍ଣ୍ଣ ସହାନୁଭୂତି ରଖୁଥିଲେ । ୧୯୪୨ ଅଗଷ୍ଟ ଆନ୍ଦୋଳନରେ ମୁଁ କଟକ ଜେଲରୁ ଜଣେ ବନ୍ଦୀ କର୍ମୀଙ୍କ ଘରକୁ ମାସିକ କିଛି ସାହାଯ୍ୟ ଦେବା ନିମନ୍ତେ ଯେ ଅନୁରୋଧ କରିଥିଲି, ସେ ପ୍ରକାଶ୍ୟରେ ପ୍ରତିମାସରେ ତାକୁ ସାହାଯ୍ୟ ପଠାଉ ଥିଲେ କିଛି ପରୁଆ ନ କରି ।

ସାଧାରଣ ନିମ୍ନ ମଧ୍ୟବିତ୍ତ ଶ୍ରେଣୀରୁ ଯେ ଆସୁଥିଲେ, ଚାଷ ଜମିର ଆୟ ଥିଲା ତାଙ୍କର ଏକମାତ୍ର ଅବଲମ୍ବନ । ଜେଲରେ ରହିଗଲା ପରେ ସେତିକ ବୁଡ଼ି ଯାଉଥିଲା । ଖଲାସ ହେବା ପରେ ନିଜ ପିଲା ଛବିଲାଙ୍କୁ ରକ୍ଷା କରିବା ତାଙ୍କର ଏକମାତ୍ର କାମ । ଅତି ଦୁର୍ଦ୍ଦଶା କାଲବାଲରେ ଦିନ କାଟନ୍ତି । ଉଜୁଡ଼ି ପଡ଼ିଥିବା ଘରକୁ ପୁଣି ବାଟକୁ ଆଣିବା ଦୁରୂହ ହୋଇପଡେ । ସେମିତିକା ଲୋକେ ଆଉ ଥରେ ଜେଲ ବରଣ କରିବାକୁ ନ ଆସନ୍ତି, ସେଥିଲାଗି ତାଙ୍କର ଦେଶଭକ୍ତିରେ ଉଣା ହୋଇଗଲା ବୋଲି କହି ହବ ନାହିଁ । ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶମତେ କେହି କ୍ଷତିପୂରଣ ଦାବୀ କରୁ ନ ଥିଲେ । ଏଣେ କଂଗ୍ରେସ ବା ସତ୍ୟାଗ୍ରହ କର୍ତ୍ତୃପକ୍ଷଙ୍କ ଠାରୁ ସେମାନଙ୍କ ପରିବାର ପୋଷଣ କରିବାର କିଛି ବ୍ୟବସ୍ଥା ନ ଥାଏ । ନିଜର ମର୍ଯ୍ୟାଦା ରକ୍ଷା କରି ସେମାନେ ଭିକ୍ଷାଥାଳ ଧରନ୍ତି ନାହିଁ । ମାତ୍ର କି କାଲବାଲ ! କି ଦୁଃଖ, ତ୍ୟାଗ । ତିଳ ତିଳ କରି ଜୀବନ ଦାନ । ଏମିତି ତ୍ୟାଗ ହେତୁ ସ୍ୱରାଜ୍ୟ ଆସିଛି । ବହୁତ ମରି ହଜି ଗଲେଣି । ଏବେ ସରକାର ଯେ ଜୀବିତ ରହିଥିବା କେତେକଙ୍କ ପାଇଁ କିଛି କିଛି ସମ୍ମାନ ପେନ୍‌ସନ ଦେଉଛନ୍ତି, ସେଇଟା କଣ ସମୂଚିତ, ପ୍ରତିଦାନ !

ସେଇଠି ଲାଗି ଗାନ୍ଧୀଜୀଙ୍କର ସ୍ୱରାଜ ଆନ୍ଦୋଳନର ଧାରା ବନ୍ଦ ରହେ ନାହିଁ । କିଛିଦିନ ହୁଏ ତ ମାନ୍ଦା ପଡ଼ିଯାଏ । ଅନ୍ୟ ରଚନାତ୍ମକ ବା ରାଜନୀତିକ କାର୍ଯ୍ୟ ଲାଗି ରହିଥାଏ । ୧୯୩୦ରେ ଗାନ୍ଧୀ—ଇରଓ୍ୱିନ୍ ଚୁକ୍ତି ହେବାରୁ ଆମର ନଅ ମାସ ମିଆଦ ନ ପୂରୁଣୁ ଆମେ ସବୁ ଖଲାସ ହେଲୁ । ଗୋଟାଏ ବିରାଟ ଆନନ୍ଦର ଢେଉ ଖେଳିଗଲା । ବନ୍ଦୀ ସବୁ ଖଲାସ ହେଲେ; ସେଥିରେ ପୁଣି ହିଂସାରେ ସଂପୃକ୍ତ ଦଫାରେ ଥିବା ରାଜବନ୍ଦୀଙ୍କ ମୁକ୍ତି ଦେବାରେ ବିଳମ୍ବ ଘଟୁଥିଲା । ଆମ ନିଜ କେସ୍‌ରେ ଆମେ ସବୁ ଦଙ୍ଗା ହାଙ୍ଗାମା (riot) ଦଫାରେ ଜେଲ ପାଇ ଥିବାରୁ ସମସ୍ତଙ୍କ ସାଙ୍ଗରେ ମୁକ୍ତି ନ ପାଇ ଟିକିଏ ବିଳମ୍ବରେ ଆସିଲୁ । ପିକେଟିଂ କରିବା ଅଧିକାର ସ୍ୱୀକାର କରାଗଲା । ଅର୍ଥାତ୍ ଆଗ ଯେମିତି ଗଞ୍ଜା, ଅଫିମ, ମଦ ବା ବିଲାତି ଲୁଗା ଦୋକାନ ପିକେଟିଂ କଲେ ଗିରଫ ହେଉ ଥିଲେ, ସେପରି ହେଲା ନାହିଁ । ଏଥିରେ ସବୁଠାରୁ ବଡ ଲାଭ ହେଲା— ବ୍ରିଟିଶ ସାମ୍ରାଜ୍ୟବାଦ ଗାନ୍ଧୀ ଓ କଂଗ୍ରେସକୁ ଏକ ଶକ୍ତି ରୂପେ ସ୍ୱୀକାର କଲା । ଭାରତର

ଭାଇସରାୟ କଂଗ୍ରେସର ମହାତ୍ମା ଗାନ୍ଧୀଙ୍କ ସହ ଚୁକ୍ତିବଦ୍ଧ ହେବାକୁ ବାଧ୍ୟ ହେଲେ । ସ୍ୱାଧୀନତା ଲଢାଇର ବିଜୟର ଏହା ଥିଲା ପ୍ରଥମ ପାହାଚ ।

କିନ୍ତୁ ଏଥିରେ ଶେଷ ହେଲା ନାହିଁ । ଲଢ଼ାଇର ଧାରା ଗ୍ଲୁଲିଥିଲା । ଗୋଟିକ ପରେ ଗୋଟିଏ ପୁଣି ଆଇନ ଅମାନ୍ୟ ଗ୍ଲୁଲୁ ରହିଲା । କେତେକ ପୁରୁଣା ଜେଲ ଫେରନ୍ତା ଓ ଆଉ କେତେକ ନୂଆ ଲୋକ ଜେଲ ବରଣ କରିବାକୁ ବାହାରି ଆସୁଥିଲେ । ସ୍ୱରାଜ୍ୟ ସୈନିକଙ୍କୁ ଏହି ଭବରେ ଜେଲ ଯିବାକୁ ବାରମ୍ବାର ପଡୁଥିଲା । ଏହି ସମୟରେ କବି ବୀର କିଶୋର ଦାସଙ୍କର ନୂତନ ଗାନ ଅତି ତାତ୍ପର୍ଯ୍ୟ ପୂର୍ଣ୍ଣ ଥିଲା । "ଅରି ଫେରି ନାହିଁ, ଯୁଦ୍ଧ ସରି ନାହିଁ, ଆସ ମୋ ଶିବିରେ ଆସ ଭାଇ ।"

卐

[ ୧୩ ]

## ସନ୍ଧି ନା ପୁଣି ଯୁଦ୍ଧ ଲାଗି ତିଆରି !

ଗାନ୍ଧୀ–ଇରଓ୍ୱିନ୍ ଚୁକ୍ତି ହୋଇଗଲା । ଗାନ୍ଧୀ–ଆନ୍ଦୋଳନରେ ଜେଲରେ ଥିବା ବନ୍ଦୀମାନେ ମୁକ୍ତି ଲଭିଲେ । ମାତ୍ର ଏଥି ଭିତରେ ଗୋଟିଏ କାର୍ଯ୍ୟରେ ଗାନ୍ଧୀଜୀ ଅସଫଳ ହେଲେ । ସେ ସର୍ଦ୍ଦାର ଭଗତ୍ ସିଂହଙ୍କୁ ମୃତ୍ୟୁମୁଖରୁ ରକ୍ଷା କରି ପାରିଲେ ନାହିଁ । ମନ କଷ୍ଟରେ ବିଲାତରେ ଗୋଲଟେବୁଲ ବୈଠକରେ ଯୋଗ ଦେବା ଲାଗି ଗଲେ ।

ଭଗତ୍ ସିଂହ ଓ ତାଙ୍କ ସାଥି କିଛି ଗାନ୍ଧୀ ପନ୍ଥୀ ନ ଥିଲେ କିମ୍ବା ଅହିଂସାରେ ବିଶ୍ୱାସ କରୁ ନ ଥିଲେ । ସେମାନେ ଯେ କୌଣସି ପନ୍ଥାରେ ବ୍ରିଟିଶ ସାମ୍ରାଜ୍ୟର ଲୋପ ନିମନ୍ତେ ଶପଥ ନେଇଥିଲେ । ଘଟଣାଟି ହେଉଛି ଅହିଂସାରେ ବିଶ୍ୱାସ କରୁ ନ ଥିବା ବହୁ ଗୋଷ୍ଠୀ ଭାରତର ବିଭିନ୍ନ ପ୍ରଦେଶରେ ବିଶେଷଭାବରେ ପଞ୍ଜାବ, ବଙ୍ଗଳା ଓ ଉତ୍ତର ପ୍ରଦେଶର କେତେକ ଅଞ୍ଚଳରେ ଅତି ଶକ୍ତିଶାଳୀ ଗୁପ୍ତ ସଶସ୍ତ୍ର ସଂଗଠନମାନ ଗଠନ କରିଥିଲେ । ସେଥି ଭିତରୁ ଗୋଟିଏ ଥିଲା ସର୍ଦ୍ଦାର ଭଗତ ସିଂ ଓ ତାଙ୍କ ସାଥିମାନଙ୍କ ଦ୍ୱାରା ଗଠିତ ହିନ୍ଦୁସ୍ଥାନ ରିପବ୍ଲିକାନ ସୋସଲିଷ୍ଟ ଆର୍ମି । ସେମାନେ ବୋମା ଓ ଅନ୍ୟ ମାରଣାସ୍ତ୍ର ଦ୍ୱାରା ଇଂରେଜମାନଙ୍କୁ ହତ୍ୟା କରିବା ଏବଂ ତଦ୍ୱାରା ଇଂରେଜରାଜ ଖତମ କରିବାର ଦୀକ୍ଷା ନେଇଥିଲେ । ଚରମ ତ୍ୟାଗ କରିବା ନିମନ୍ତେ ସେମାନେ ନିଜକୁ ପ୍ରସ୍ତୁତ କରିଥିଲେ ।

୧୯୨୮ରେ ଲୋକଙ୍କ ବିରୋଧ ସତ୍ତ୍ୱେ ବ୍ରିଟିଶ ସରକାର ସାଇମନ କମିଶନକୁ ଭାରତକୁ ପଠାଇଲା । ଭାରତରେ ପାଦ ପକାଇଲା ମାତ୍ରେ ଚାରିଆଡୁ

ବିରୋଧ ହେଲା । ଜବାହାର ଲାଲ ନେହରୁ, ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ ଆଦି କଳା ପତାକା ପ୍ରଦର୍ଶନ କରିଥିଲେ ଓ ଲାଠି ପ୍ରହାର ଖାଇଥିଲେ । ପନ୍ଥଜୀଙ୍କ ମୁଣ୍ଡରେ ଲାଠିରେ ଏପରି ଗୁରୁତର ଆଘାତ ହେଲା ଯେ ତାଙ୍କ ଦେହ ଓ ମଥା ବରାବର ଥରା ରୋଗରେ ଆକ୍ରାନ୍ତ ହେଲା ମୃତ୍ୟୁ ପର୍ଯ୍ୟନ୍ତ । ସବୁଠାରୁ ନିର୍ମମ ଓ କଠୋର ଲାଠିମାଡ ହେଲା ଲାଲା ଲଜପତ୍ ରାୟଙ୍କ ନେତୃତ୍ୱରେ ଗ୍ରଳିତ ଲାହୋରର ପ୍ରତିବାଦ ପ୍ରଦର୍ଶନୀ । ଲାଲାଜୀଙ୍କର ସେହି ମାଡରେ ମୃତ୍ୟୁ ଘଟିଲା । ଦେଶସାରା ପ୍ରଳୟର ଅଗ୍ନି ଜଳିଲା । ଇଂରେଜଙ୍କ ବିରୁଦ୍ଧରେ କ୍ରୋଧ ଓ ଅସନ୍ତୋଷ ବୃଦ୍ଧି ପାଇଲା । ଲାହୋର ଲାଠି ଗ୍ରର୍ଜର ମୂଳ ନାୟକ ଥିଲେ ଆଇ.ଜି. ମିଷ୍ଟର ସଟ୍ । ଯେମିତି ଜାଲିଆନାଓ୍ୱାଲାବାଗର ହତ୍ୟାକାଣ୍ଡ ଲାଗି କର୍ଣ୍ଣେଲ ଡାୟାରଙ୍କୁ ଦାୟୀ କରାଯାଏ, ସେହିଭଳି । ଭଗତ୍ ସିଂ ଓ ତାଙ୍କର ସାଥିମାନେ ସ୍ଥିର କରିନେଲେ ଏହି ଶଇତାନ୍ ଇଂରେଜକୁ ଖତମ କରିଦେବା ନିମନ୍ତେ । ରିପବ୍ଲିକାନ ଆର୍ମି ଏଥି ଲାଗି ପ୍ରସ୍ତୁତ ହୋଇଗଲେ । ସେହି ବର୍ଷ ନଭେମ୍ବର ମାସରେ ସଟଙ୍କୁ ଘେରାଉ କରି ହତ୍ୟାର ଉଦ୍ୟମ ହେଲା । ସର୍ଦ୍ଦାର ଭଗତ୍ ସିଂ, ରାଜଗୁରୁ, ଚନ୍ଦ୍ରଶେଖର ଆଜାଦ ମିଳିତ ଭାବରେ ଏ ଉଦ୍ୟମ କରିଥିଲେ । ମାତ୍ର ସଟ ନ ମରି ତାର ସହକାରୀ ସଣ୍ଡର୍ସ ସାହେବ ମଲା । ଏଥିରେ ବିପ୍ଳବୀମାନେ ଶାନ୍ତ ପଡ଼ିଲେ ନାହିଁ । ସେମାନଙ୍କ ବିପ୍ଳବର ଆବାଜ ଏପରି ଗୋପନୀୟ ଭାବେ ନ ରଖି ବ୍ରିଟିଶ ସରକାରକୁ ଚେତେଇ ଦେବାକୁ ଗ୍ରହିଁଲେ । ବ୍ରିଟିଶରାଜ ଅପସରି ନଗଲେ ଚରମ ବିଦ୍ରୋହର ସମ୍ମୁଖୀନ ହେବେ ଏବଂ ସବୁ ଚୁରମାର୍ ହୋଇଯିବ । ବ୍ରିଟିଶ ସରକାର ଆସେମ୍ବ୍ଲି ଆଦି ସଂସାର କରିଆରେ ଲୋକଙ୍କ ଆଖିରେ ଯାହା ଝୁଲାଉଛି, ତାହା ତୁଚ୍ଛ, ଗ୍ରହଣଯୋଗ୍ୟ ନୁହେଁ । ଏହା ଚେତାଇ ଦେବା ନିମନ୍ତେ ସର୍ଦ୍ଦାର ଭଗତ୍ ସିଂ ରଣ କୌଶଳ ବଦଳାଇ ଦେଲେ ।

୧୯୨୮ ମସିହା ଜୁନ ୬ ତାରିଖ । ଦିଲ୍ଲୀରେ କେନ୍ଦ୍ର ଆସେମ୍ବ୍ଲିର ବୈଠକ ବସିଥାଏ । ଦର୍ଶକ ଭାବରେ ସାଇମନ୍ କମିଶନର ଲୋକ ବି ରହିଥାଆନ୍ତି— ସ୍ୱତନ୍ତ୍ର ଦର୍ଶକ ଗ୍ୟାଲେରୀରେ । ଏହି ମଉକାରେ ଚେତାବନୀ ଶୁଣାଇବାକୁ ବିପ୍ଳବୀମାନେ ସ୍ଥିର କଲେ । ଦର୍ଶକ ଗ୍ୟାଲେରୀରେ ଆଗରୁ ଯାଇ ବସିଥିଲେ । ସେଠାରୁ ହଠାତ୍ ଧମାଧମ୍ ଦୁଇଟ ପଟ୍ଟ ଫୋପାଡ଼ିଲେ ସ୍ଥରିଆଡେ ଉଡ଼ି ସାରା ହଲ ଭରିଗଲା ଏବଂ ଉଡ଼ିବାକୁ ଲାଗିଲା । ସମସ୍ତେ ଆଚମ୍ବିତ ।

କଣ ହେଉଛି କେହି ଅନୁମାନ କରି ପାରୁ ନ ଥାନ୍ତି । ଏତିକି ବେଳେ ଦୁଇଟି ବୋମା ବର୍ଷଣ ହେଲା । ସାରା ହଲଟି ଧୂଆଁରେ ଭରିଗଲା; କେହି କାହାରିକି ଭଲ କରି ଦେଖି ପାରିଲେ ନାହିଁ । ରିଭଲଭର୍‌ରୁ ଗୁଳିର ନିନାଦ ବି ଶୁଣାଗଲା । ଏତେଶୀଘ୍ର ଏ ସବୁ ଘଟଣା ଘଟିଗଲା ଯେ ହଠାତ୍ ନିଜକୁ ସମ୍ଭାଳି ବିପ୍ଳବୀମାନଙ୍କୁ ଆୟତ କରିବା ସହଜସାଧ୍ୟ ନ ଥିଲା । ଧ୍ୱନି ଉଠୁଥାଏ; ଇନ୍‌କିଲାବ ଜିନ୍ଦାବାଦ । ଏହାପରେ ଭଗତ୍ ସିଂ ଓ ତାଙ୍କ ସାଥି ବଟୁକେଶ୍ୱର ଦତ୍ତଙ୍କୁ ଗିରଫ କରାଗଲା । ସଣ୍ଡର୍ସର ହତ୍ୟାକାରୀ ବୋଲି ଦୋଷାରୋପ କରି ଲାହୋର ଷଡଯନ୍ତ୍ର ମକଦ୍ଦମାର ବିଗ୍ଭର ଗ୍ଭଲିଲା । ହତ୍ୟା ଅପରାଧଟା ଭଗତ୍ ସିଂଙ୍କ ନାମରେ ଅଣାଗଲା ତାଙ୍କୁ ଫାସି ଦେବା ମତଲବରେ । ଆସେମ୍ବ୍ଲିରେ ଯେଉଁ ପ୍ରଗ୍ଭରପତ୍ର ବଣ୍ଟନ ହୋଇଥିଲା ଏବଂ ଇନ୍‌କିଲାବ ଜିନ୍ଦାବାଦ ଆଦି ଧ୍ୱନି ଦେଇଥିଲେ ଏବଂ ଭଗତ୍ ସିଂ ମାତୃଭୂମିର ମୁକ୍ତି ନିମନ୍ତେ ଜୀବନ ଦାନ କରିବା ନିମନ୍ତେ ଓ ଇଂରେଜଙ୍କୁ ନିପାତ କରିବା ନିମନ୍ତେ ବଦ୍ଧପରିକର ବୋଲି ବୀରଦର୍ପରେ ଘୋଷଣା କଲେ । ଦେଶଭକ୍ତି ଚରମ ପରାକାଷ୍ଠା ଦେଖାଇଲେ । ସାରା ଦେଶରେ ଚହଳ ପଡ଼ିଗଲା । ଭଗତ୍ ସିଂ ଫାସି ପାଇଯିବେ ଏହା ଭାରତବାସୀ ସହ୍ୟ କରି ପାରିବେ ନାହିଁ । ଦେଶବାସୀଙ୍କର ଏଭଳି ଉତ୍ତେଜନା ଭିତରେ ଗାନ୍ଧୀଜୀ ଗୋଲଟେବୁଲ ବୈଠକରେ କିପରି ଶାନ୍ତିରେ କାର୍ଯ୍ୟ କରି ପାରିବେ ? ତେଣୁ ବିଲାତ ଯିବା ଆଗରୁ ଗାନ୍ଧୀଜୀଙ୍କର ଶେଷ ଉଦ୍ୟମ ହେଲା କିଭଳି ମୃତ୍ୟୁମୁଖରୁ ଭଗତ୍ ସିଂ ଓ ତାଙ୍କ ସାଥିଙ୍କି ରକ୍ଷା କରିବା ନିମନ୍ତେ । ସେଥିଲାଗି ଯତ୍‌ପରୋନାସ୍ତି ଚେଷ୍ଟା କରି ବିଫଳ ମନୋରଥରେ ଲଣ୍ଡନ ଅଭିମୁଖେ ଯାତ୍ରା କଲେ ।

ଏଥି ଭିତରେ ଭଗତ୍ ସିଂ ଓ ତାଙ୍କ ସାଥିଙ୍କି ଫାସି ମିଳିଲା । ଲୋକେ ଉତ୍ତେଜିତ ଅବସ୍ଥାରେ ଥାଆନ୍ତି । ସରକାର ସହିତ ଚୁକ୍ତିରେ ଆବଦ୍ଧ ହେଲା କଂଗ୍ରେସ । ଆଇନ ଅମାନ୍ୟ ସ୍ଥଗିତ ରହିଲା । କିନ୍ତୁ ଏଣେ ଉତ୍ତର ପ୍ରଦେଶ, ସୀମାନ୍ତ ପ୍ରଦେଶ ଇତ୍ୟାଦିରେ ଘୋର ଦମନ ଲୀଳା ଓ ଅସନ୍ତୋଷ ବ୍ୟାପିଗଲା । ଗାନ୍ଧୀଜୀ ବିଲାତରେ । ତାଙ୍କ ଫେରିବା ପର୍ଯ୍ୟନ୍ତ ଅପେକ୍ଷା ନ କରି ଉତ୍ତର ପ୍ରଦେଶରେ ଜବାହାରଲାଲ ନେହରୁ ଓ ଶେରୱାନୀ ପ୍ରମୁଖ ନେତାମାନଙ୍କୁ ଗିରଫ କରାଗଲା । ଯାବତୀୟ ଅକଥନୀୟ ଦମନ ଉତ୍ତର ପ୍ରଦେଶର ଗ୍ଭଷୀକୂଳ ଉପରେ ପ୍ରୟୋଗ କରାଗଲା । କଂଗ୍ରେସ ଲୋକେ ମହା ଦ୍ୱନ୍ଦ୍ୱ ଭିତରେ ରହି ଥାଆନ୍ତି । ଗାନ୍ଧୀଜୀ

ଫେରିଲା ବେଳକୁ ସନ୍ଧିସର୍ତ୍ତ ବ୍ରିଟିଶ ସରକାର ସବୁମନ୍ତେ ଲଂଘନ କରିଛି । ଲୋକଙ୍କୁ ଯୁଦ୍ଧ ବା ସଂଗ୍ରାମ ଆଡକୁ ଠେଲି ନେଉଥାଏ । ସରକାର ଏହି ସନ୍ଧିକାଳ ଭିତରେ ପୁଣି ଜାତୀୟବାଦୀ ଶକ୍ତିକୁ ଧ୍ୱଂସ କରିବା ନିମନ୍ତେ ପ୍ରସ୍ତୁତ ହୋଇଗଲା । ୧୯୩୨ ଜାନୁଆରୀ ୪ରି ତାରିଖରେ ଏକାଦିନେ ବାରଟି ଅର୍ଡିନାନ୍ସ ଜାରି କରି ଭାରତ ଲୋକଙ୍କ ବିରୁଦ୍ଧରେ ବ୍ରିଟିଶ ସରକାର ଯୁଦ୍ଧ ଘୋଷଣା କଲା । ଆମର ପୁଣି ଜେଲ ଯିବା ପାଳି ପଡ଼ିଲା !

卐

## କିଏ କଅଣ କଲେ

ଖାଲି ପାଟନା କ୍ୟାମ୍ପ ଜେଲ ନୁହେଁ, ଓଡ଼ିଶାର ଅନ୍ୟ ଜେଲମାନଙ୍କରେ ଯେ ଯୁଆଡେ ଥିଲେ ସମସ୍ତେ ଖଲସ ହୋଇଗଲେ । ଓଡ଼ିଶାରେ ଜେଲ ପାଇଥିବା ରାଜବନ୍ଦୀଙ୍କ ସଂଖ୍ୟା ଥିଲା ୩୦୦୦ ରୁ ୪୦୦୦ ଭିତରେ । ଆଗରୁ କଂଗ୍ରେସ କମିଟି ଚାଲୁଥିଲା । ମହାତ୍ମା ଗାନ୍ଧୀ ଆଦି ଅସହଯୋଗ ବେଳେ ଏବଂ ପରେ ମଧ୍ୟ ଆସି ଗସ୍ତ କରିଥିଲେ । ପଣ୍ଡିତ ଗୋପବନ୍ଧୁ ଦାଶ ୧୯୨୮ରେ ମରିଗଲେ; କିନ୍ତୁ ତାଙ୍କ ଅମଳର ପ୍ରାୟ ସବୁ କଂଗ୍ରେସ ନେତା କର୍ମତତ୍ପର ଥିଲେ । ଅବଶ୍ୟ କେତେକ ନିଜର ପୁରୁଣା କର୍ମକ୍ଷେତ୍ରକୁ ଫେରିଗଲେ; ଛାତ୍ର, ଯୁବକ କେତେକ ପୁଣି କଲେଜ ସ୍କୁଲକୁ ଫେରି ପଢାରେ ଲାଗିଲେ । ମାତ୍ର ୧୯୨୧ରେ ଜେଲଭୋଗୀଙ୍କ ସଂଖ୍ୟା ବହୁତ ବେଶି ନ ଥିଲା । ୧୯୩୦ରେ ଲୁଣ ଆଇନ ଅମାନ୍ୟ ହେତୁ ସ୍ୱାଧୀନତା ପ୍ରେମୀ ସଚେତନ ଯୁବକ, ଓକିଲ, ପୁରାତନ କଂଗ୍ରେସ କର୍ମୀ, ଶିକ୍ଷକ ଓ ଅନ୍ୟମାନଙ୍କ ଭିତରେ କେତେକ ସାଧାରଣ ଲୋକ ମଧ୍ୟ ଜେଲ ବରଣ କରିଥିଲେ । ଏତେକାଳ ପରେ ସମସ୍ତଙ୍କ ନାମ ସ୍ମରଣ ହେଉନାହିଁ । ଏବେ ଯେଉଁମାନେ ସବୁ ତଥ୍ୟ ସଂଗ୍ରହ କରି ପୁସ୍ତକ ଆଦି ପ୍ରକାଶ କରୁଛନ୍ତି, ସେମାନେ ହୁଏତ ସଂଗ୍ରହ କରିବେ ବା କରୁଥିବେ । ସ୍ମରଣ ରହିଥିବା କେତେକଙ୍କ କଥା ଏଠାରେ ଉଲ୍ଲେଖ କରୁଛି । ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ ନୀଳକଣ୍ଠ ଦାଶ, ଆଚାର୍ଯ୍ୟ ହରିହର ଦାଶ, ରାଜକୃଷ୍ଣ ବୋଷ, ହରେକୃଷ୍ଣ ମହତାବ, ଯଦୁମଣି ମଙ୍ଗରାଜ, ନବକୃଷ୍ଣ ଚୌଧୁରୀ, ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ, ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମିଶ୍ର, ପଣ୍ଡିତ ଲିଙ୍ଗରାଜ ମିଶ୍ର, କବି ବୀର କିଶୋର ଦାସ, ନନ୍ଦ କିଶୋର ଦାସ,

ନାରାୟଣ ବୀରବର ସାମନ୍ତ, ଡାକ୍ତର ବ୍ରଜନାଥ ମିଶ୍ର ଇତ୍ୟାଦି । ଏମାନେ ସବୁ ବିହାରର ହାଜାରିବାଗ୍ ଜେଲରେ ରହିଥିଲେ । ସେହିପରି ସରଳା ଦେବୀ ଭେଲୋର ଜେଲରେ- ରମା ଦେବୀ ଓ ମାଳତୀ ଚୌଧୁରୀ ଓଡ଼ିଶା ଭିତରେ ଜେଲ କଟାଇ ଥିଲେ । ଅନ୍ୟ ଜେଲମାନଙ୍କରେ ଥିବା ଲୋକଙ୍କ ଭିତରେ ରହିଥିଲେ- ସମ୍ବଲପୁରର ଲକ୍ଷ୍ମୀ ନାରାୟଣ ମିଶ୍ର, ଦୟାନନ୍ଦ ଶତପଥୀ, ନୃସିଂହ ଗୁରୁ, ଘନଶ୍ୟାମ ପାଣିଗ୍ରାହୀ, ଭଗୀରଥି ପଟନାୟକ ଇତ୍ୟାଦି । ଏମାନେ ସମସ୍ତେ କଂଗ୍ରେସ କର୍ମୀ ଭବରେ ନିଜ ନିଜ ଅଞ୍ଚଳରେ କାମ କଲେ । ଆଉ ବ୍ୟକ୍ତିଗତ ଧନ୍ଦାକୁ ଲେଉଟି ନଥିଲେ । ପଣ୍ଡିତ ଲକ୍ଷ୍ମୀ ନାରାୟଣ ମିଶ୍ର ଥିଲେ ଜଣେ ସୁବକ୍ତା ଓ ନିର୍ଭିକ ସମାଲୋଚକ । ଉର୍ଦ୍ଦୁ, ସଂସ୍କୃତ, ହିନ୍ଦୀ ଓ ଓଡ଼ିଆ ଭଷାରେ ତାଙ୍କର ସଂପୂର୍ଣ୍ଣ ଦକ୍ଷତା ଥିଲା । ସାଧୁ ଭଷାରେ ଭଷଣ ଦେଲେ ସୁଦ୍ଧା ବଳିଷ୍ଠ ଭଷଣରେ ସକଳ ଶ୍ରେଣୀର ଲୋକଙ୍କୁ ପ୍ରଭବିତ କରୁଥିଲେ । ତାଙ୍କର ଉର୍ଦ୍ଦୁ ଭଷଣ ଶୁଣି ମୌଲାନା ଅବୁଲ କଲମ ଆଜାଦ ତାଙ୍କୁ ବିଶେଷ ପ୍ରଶଂସା କରୁଥିଲେ । ମହାତ୍ମା ଗାନ୍ଧୀ ଓ ଅନ୍ୟ ନେତାମାନଙ୍କ ପାଖରେ ଆଦୃତ ହୋଇଥିଲେ । ସେ ବରାବର ଏକ ବିବାଦୀୟ ବ୍ୟକ୍ତି ହୋଇ ରାଜନୀତିରେ ତାଙ୍କର ସୁସ୍ପଷ୍ଟ ବକ୍ତବ୍ୟ ଓ କଟୁ ମନ୍ତବ୍ୟ ଯୋଗୁଁ ବହୁ ବିବାଦର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ଜୀବନ ବଡ ନିରାଡମ୍ବର ଓ ସରଳ ଥିଲା । ଶେଷରେ ଏତେକାଳ ଦେଶ ମାତୃକା ସେବାରେ ନିଯୁକ୍ତ ହୋଇ ସୁଦ୍ଧା ତାଙ୍କର ମୃତ୍ୟୁ ବଡ ଦୟନୀୟ ଅବସ୍ଥାରେ ଘଟିଲା । ମୃତ୍ୟୁ କି ହତ୍ୟା ତାହାର ରହସ୍ୟ ସଠିକ ଭବରେ ଜଣା ପଡ଼ିନାହିଁ । ଆମ ଦେଶରେ କଂଗ୍ରେସ ସରକାର ଗଠିତ ହୋଇଗଲା । କୌଣସି ବିଧିବଦ୍ଧ ଚେଷ୍ଟା ଏ ରହସ୍ୟ ଉଦ୍‌ଘାଟନ କରିବା ନିମନ୍ତେ ନ ହୋଇ ପାରିଥିବା ବଡ ପରିତାପର ବିଷୟ ।

ବାଲେଶ୍ୱରରୁ ବହୁ ଲୋକ ଜେଲ ବରଣ କରିଥିଲେ । ଇଞ୍ଚୁଡ଼ିରେ ୧୯୩୦ରେ ଲୁଣମାରା ଆରମ୍ଭ କରାଯାଇ ଥିବାରୁ ସାଧାରଣ ଲୋକ ବି ଧରା ହୋଇ ଥିଲେ । ତେବେ ମୋର ଯେଉଁ କେତେକଙ୍କ ନାମ ମନେ ପଡ଼ୁଛି, ସେ ହେଲେ ହରେକୃଷ୍ଣ ମହତାବ, ନନ୍ଦ କିଶୋର ଦାସ, କରୁଣାକର ପାଣିଗ୍ରାହୀ, ଭୈରବ ଚନ୍ଦ୍ର ମହାପାତ୍ର, ସୁରେନ୍ଦ୍ର ନାଥ ଦାସ, ନୀଳାମ୍ବର ଦାସ, ମହମ୍ମଦ ହନିଫ୍, ଗୋକୁଳାନନ୍ଦ ମହାନ୍ତି, ଭଗବତ ସାହୁ, ଗୌରଚନ୍ଦ୍ର ଦାସ, ବିପିନ ବିହାରୀ ଦାସ, ରବୀନ୍ଦ୍ର ମୋହନ ଦାସ, କ୍ଷେତ୍ର ମୋହନ ରାଉଳ, ଚକ୍ରଧର ବେହେରା,

ବାଞ୍ଛାନିଧି ମହାନ୍ତି, ପ୍ୟାରିମୋହନ ଦାସ, ଦୁଃଖୀଶ୍ୟାମ ପାଢୀ, ପୁରୀର ସତ୍ୟବାଦୀ ନନ୍ଦ, ଲାଲ ବିହାରୀ ଦାସ, ପଣ୍ଡିତ ରଘୁନାଥ ମିଶ୍ର, ମୋହନ ଦାସ, ଗୋକୁଳ ମୋହନ ରାୟ ଚୂଡାମଣି, ଗତିକୃଷ୍ଣ ସ୍ୱାଇଁ, ଜଗନ୍ନାଥ ରଥ, ପଣ୍ଡିତ କୃପାସିନ୍ଧୁ ହୋତା, ସୁନାମଣି ଦେବୀ, ନୃସିଂହ ଚରଣ ସାମନ୍ତସିଂହାର, ପୂର୍ଣ୍ଣାନନ୍ଦ ସ୍ୱାଇଁ, ଦୁଃଖୀଶ୍ୟାମ ଦାସ, ଭଗବାନ ପ୍ରତିହାରୀ ଇତ୍ୟାଦି । ସେମିତି ଗଞ୍ଜାମ ଜିଲ୍ଲାରୁ ଦିବାକର ପଟ୍ଟନାୟକ, ନିରଞ୍ଜନ ପଟ୍ଟନାୟକ, ବିଶ୍ୱନାଥ ଦାଶ, ଅନ୍ତର୍ଯାମୀ ପଣ୍ଡା, ଶୋଭା ପଣ୍ଡା, କୃପାସିନ୍ଧୁ ପଣ୍ଡା, ବଳରାମ ପଣ୍ଡା, ଲକ୍ଷ୍ମୀ ବାଈ, ମାଷ୍ଟର ରାମ ଲିଙ୍ଗମ୍, ସନ୍ନ୍ୟାସୀ ରାଓ, ଭି: ଭି. ଗିରିଙ୍କ ପିତା ଯୋଗେୟା ପାନ୍ତୁଲୁ, ଯୁଗଳ କିଶୋର ପାଣିଗ୍ରାହୀ, ଚକ୍ରପାଣି ରାଉଳ, ମଦନ ମୋହନ ପଟ୍ଟନାୟକ, କାଶୀନାଥ ପାତ୍ର ଓ ଆହୁରି ଅନେକେ ୧୯୩୦ରେ ଜେଲ ବରଣ କରିଥିଲେ । କଟକ ସବୁଠୁ ବଡ ଜିଲ୍ଲା । ଏବେ ବି ଏହାର ଲୋକ ସଂଖ୍ୟା ଅନ୍ୟ ସବୁ ଜିଲ୍ଲା ଠାରୁ ଅଧିକ । କଟକ ନଗର ହେଲା ରାଜନୀତିକ ଜୀବନର ପ୍ରାଣକେନ୍ଦ୍ର । ଗୋପବନ୍ଧୁ ଚୌଧୁରୀ ଓ ତାଙ୍କ ପରିବାରଙ୍କ ତ୍ୟାଗ ଓଡ଼ିଶାରେ ବିଶେଷ ଭାବରେ କଟକ ଜିଲ୍ଲାରେ ଅଲୌକିକ ପ୍ରଭାବ ପକାଇଥିଲା । ୧୯୩୦ରେ ମଧ୍ୟ ଏହି ଜିଲ୍ଲାରୁ ସର୍ବାଧିକ ଲୋକ ଜେଲ ବରଣ କରିଥିଲେ । ଏମାନଙ୍କ ଭିତରେ ପଣ୍ଡିତ ପ୍ରାଣକୃଷ୍ଣ ପଢିଆରୀ ନାମ ଉଲ୍ଲେଖ କରିବା ବୋଧ ହୁଏ ଯଥାର୍ଥ ହେବ । ତାଙ୍କର ଅସୀମ ତ୍ୟାଗ, କଂଗ୍ରେସ ପ୍ରତି ଅଗାଧ ବିଶ୍ୱାସ ଏବଂ ଦୃଢତା ଓ ସ୍ୱରାଜ ସଂଗ୍ରାମରେ ଅଟଳ ବିଶ୍ୱାସ ଓ ଅବିଚଳିତ ସଂଗ୍ରାମ ସମସ୍ତଙ୍କୁ ଚକିତ କରିଥିଲା । ତାଙ୍କ ନିଷ୍ଠା ଆଗରେ ସମସ୍ତେ ମୁଣ୍ଡ ନୁଆଁଉ ଥିଲେ । ହରେକୃଷ୍ଣ ମହତାବ ଯେତେବେଳେ ୧୯୪୬ ମସିହାରେ ପ୍ରଥମେ ଓଡ଼ିଶାର ପ୍ରଧାନ ମନ୍ତ୍ରୀ ହେଲେ, ତାଙ୍କର ପ୍ରତିପତ୍ତି ଥିଲା ଅପରିସୀମ । କଂଗ୍ରେସ ସରକାର ଅମଳରେ ପ୍ରଥମେ ଗୁଳିକାଣ୍ଡ ହେଲା । ତାହା ପୁଣି ତାଙ୍କରି ଗ୍ରାମ ଭଦ୍ରକରେ ସଂଖ୍ୟାନ୍ୟୂନ ସଂପ୍ରଦାୟଙ୍କ ଉପରେ । ନିଶ୍ଚିତ ଭାବରେ ପରିବର୍ତ୍ତିତ ପରିସ୍ଥିତି ସହ ପୁଲିସ ନିଜକୁ ଖାପ ଖୁଆଇ ପାରି ନ ଥିଲେ ଏବଂ ଅନ୍ୟାୟ ଗୁଳିକାଣ୍ଡ କରାଗଲା । ମହତାବ ପୁଲିସକୁ ପୂର୍ଣ୍ଣ ସମର୍ଥନ ଦେଲେ । ମୁଁ ସେତେବେଳେ ପ୍ରାଦେଶିକ କଂଗ୍ରେସ କମିଟିର ସଂପାଦକ, ମାଳତୀ ଚୌଧୁରୀ ସଭାନେତ୍ରୀ । କଂଗ୍ରେସର ଘୋଷିତ ନୀତିର ଖିଲାପ କରାଗଲା ବୋଲି ଆମେ ଅନୁଭବ କଲୁ । ଗୁଳିକାଣ୍ଡର ବିରୋଧ କରି ବିବୃତି ଦେଲୁ ଏବଂ କଟକର ଗୌରୀ ଶଙ୍କର ପାର୍କରେ ସାଧାରଣ ସଭା କଲୁ । କଂଗ୍ରେସର ମର୍ଯ୍ୟାଦା ରକ୍ଷା ଓ

କଂଗ୍ରେସର ନୀତି ସମ୍ବନ୍ଧରେ ଭୁଲ ଧାରଣା ଦୂର କରିବା ନିମନ୍ତେ ଏହା କରଗଲା । ମହତାବଙ୍କ କୋପରେ ଅନ୍ୟ କଂଗ୍ରେସ ନେତୃବୃନ୍ଦ ପ୍ରକାଶ୍ୟରେ ସମର୍ଥନ କରିବାକୁ ବାହାରିଲେ ନାହିଁ । କିନ୍ତୁ ପଣ୍ଡିତ ପଡିହାରୀ ପ୍ରକାଶ୍ୟରେ ପ୍ରତିବାଦରେ ଯୋଗ ଦେଲେ । ତାଙ୍କର ମୂଲ୍ୟବୋଧର ତଳନା ନାହିଁ । ମାତ୍ର ଆମେ ତାଙ୍କ ସ୍ମୃତି ରକ୍ଷା ଲଗି ‹ଥଣ କରି ପାରିଛୁ !

ମୋଟାମୋଟି ଦେଖିଲେ ୧୯୩୦ରେ ଜେଲଭୋଗୀଙ୍କ ଭିତରୁ ଅତି ଅଳ୍ପ ସଂଖ୍ୟକ ହୁଏତ ନିଜ ବ୍ୟବସାୟକୁ ଫେରିଗଲେ କିମ୍ବା ଘରେ ନୀରବ ରହିଲେ । କିନ୍ତୁ ଅଧିକ ସଂଖ୍ୟକ ବିଶେଷତଃ ଯେଉଁମାନଙ୍କ ନାମୋଲ୍ଲେଖ କର ଯାଇଛି, ସମସ୍ତେ ରହିଲେ ରାଜନୀତିରେ । ୧୯୩୨ରେ ବ୍ରିଟିଶ ସରକାର ଆକ୍ରମଣର ସମ୍ମୁଖୀନ ହେବା ନିମନ୍ତେ ଆଗରୁ ଏମାନେ ପ୍ରସ୍ତୁତ ରହିଥିଲେ । ଏକ ସ୍ଥାୟୀ ସ୍ୱରାଜ୍ୟ ସୈନିକ ବାହିନୀ ସୃଷ୍ଟି ହୋଇଗଲା ।

卐

[ ୧୫ ]

# ଜେଲଭୋଗୀଙ୍କ ହାତରେ ନେତୃତ୍ୱ

୧୯୨୧ ଓ ୧୯୩୦ରେ ଯେଉଁମାନେ ଜେଲ ବରଣ କରିଥିଲେ, ସେମାନଙ୍କର ଆଦର୍ଶ ଥିଲେ ମହାତ୍ମା ଗାନ୍ଧୀ । ତାଙ୍କରି ନିର୍ଦ୍ଦେଶ ପାଳନ କରୁଥିଲେ । ଆଗରେ ଏକମାତ୍ର ଲକ୍ଷ୍ୟ ଥିଲା ବ୍ରିଟିଶ ରାଜ ସହିତ ଅହିଂସ ସଂଗ୍ରାମ– କିଭଳି ସ୍ୱରାଜ୍ୟ, କଅଣ ହେବ ସେ ବିଷୟରେ କିଛି ନିଶ୍ଚୟତା ନଥିଲା । କଂଗ୍ରେସ ବା ଗାନ୍ଧୀଜୀ କିଛି ସ୍ୱରାଜ୍ୟର ପରିଷ୍କାର ବ୍ୟାଖ୍ୟା କରି ନ ଥିଲେ । ମୋଟାମୋଟି କୁହା ହେଉଥିଲା ରାମ ରାଇଜ ସ୍ଥାପିତ ହେବ । ପୁରାଣ ବର୍ଣ୍ଣିତ ରାମରାଜ୍ୟ କିଛି ସମାଜବାଦ ବା ପୂର୍ଣ୍ଣ ସ୍ୱରାଜ୍ୟର ଅନୁରୂପ ହୋଇ ପାରନ୍ତା ନାହିଁ । ଏହାକୁ ସ୍ଥୂଳ ଭବରେ ଧରା ଯାଉଥିଲା ଏକ ସୁଖୀ ରାଇଜ ଓ ଉତ୍ତମ ଶାସନ । ଯେଉଁମାନେ ଲଢ଼ାଇରେ ଯୋଗ ଦେଉଥିଲେ, ସେମାନେ ଦିନେ ଅଧେକେ ଏହା ମିଳିଯିବାର କଳ୍ପନା ସୁଦ୍ଧା କରି ନ ଥିଲେ । ଗାନ୍ଧୀଜୀ ଅବଶ୍ୟ ଘୋଷଣା କରିଥିଲେ ଯେ ଏକ ବର୍ଷ ଭିତରେ ସ୍ୱରାଜ୍ୟ ଆସିଯିବ । ଅସହଯୋଗ କଲେ ବ୍ରିଟିଶ ସରକାର କାବୁରେ ଆସିଯିବ । ଗାନ୍ଧୀଜୀ ଏ ଘୋଷଣା କଲା ବେଳେ କଂଗ୍ରେସ ପୂର୍ଣ୍ଣ ସ୍ୱାଧୀନତା ଦାବୀ ଉଠାଇ ନଥିଲା । ବ୍ରିଟିଶ ସରକାର ଅଧୀନରେ ଏକ କାଳ୍ପନିକ ସ୍ୱରାଜ୍ୟ ମନ ଭିତରେ ଖେଳୁଥିଲା । ମୋର ମନେ ଅଛି ୧୯୨୯ରେ ଲାହୋର କଂଗ୍ରେସରେ ପୂର୍ଣ୍ଣ ସ୍ୱାଧୀନତା ଓ ବ୍ରିଟିଶ ସାମ୍ରାଜ୍ୟବାଦ ଠାରୁ ସମସ୍ତ ସଂପର୍କ ତୁଟାଇବା କଥା ଉଠିଲା । ୧୯୩୦ ମସିହା ଜାନୁଆରୀ ୨୬ ତାରିଖରେ ଭରତର ନର ନାରୀ ବିଭିନ୍ନ ସ୍ଥାନରେ ଏକତ୍ର ହୋଇ ପ୍ରକାଶ୍ୟ ଶପଥ ଗ୍ରହଣ କଲେ । ସେଥିରେ ମୁଖ୍ୟ ବିଷୟ ଥିଲା– ବ୍ରିଟିଶ ସାମ୍ରାଜ୍ୟବାଦ ଭରତକୁ ରାଜନୀତିକ,

ଅର୍ଥନୀତିକ, ସାମାଜିକ ଓ ସଂସ୍କୃତିକ ସବୁ ଦିଗରୁ ଶୋଷଣ କରିଛି– ଆମର ସଂସ୍କୃତିକି ଲୋପ କରିଛି । ତେଣୁ ଏ ସରକାରକୁ ଆମେ ଆଉ ସ୍ୱୀକାର କରିବୁ ନାହିଁ । ଆମେ ଚାହୁଁ ପୂର୍ଣ୍ଣ ସ୍ୱାଧୀନତା । ଏଥିରୁ ବୁଝାଯିବ ମୁଖ୍ୟ ହେଲା ଇଂରେଜଙ୍କ କବଳରୁ ଆମେ କେମିତି ମୁକ୍ତିଲାଭ କରିବା । ସ୍ୱରାଜ୍ୟ ରାମରାଜ୍ୟ କିଭଳି ହେବ ଏବଂ କଅଣ ହେବ ସେଥିରେ କେହି ମୁଣ୍ଡ ଘୁରାଉ ନଥିଲେ । ସବୁ ଜୋର ଥିଲା କେମିତି ଆମେ ବହୁ ସଂଖ୍ୟାରେ ସ୍ୱରାଜ୍ୟ ସୈନିକ ହୋଇ ଗାନ୍ଧୀ ବିପ୍ଳବକୁ ସଫଳ କରିବୁ । ଆମର ସେଥି ଲାଗି ଝଣ୍ଡା ରହିଲା । ତ୍ୟାଗ ଓ କଷ୍ଟଭୋଗ ହେଲା ଭୂଷଣ । ନିଜ ଜୀବନକୁ ଉତ୍ସର୍ଗ କରିବା ହେଲା ବ୍ରତ । ନିଜ ପାଇଁ କିଛି ଆଶା ରଖିବ ନାହିଁ; ଅଥଚ ପର ଲାଗି, ଦେଶ ଲାଗି ଜୀବନ ଦାନ । ଏହି ମହାନ୍ ଆଦର୍ଶରେ ସ୍ୱରାଜ୍ୟ ସୈନିକ ଉଦ୍‌ବୁଦ୍ଧ ହେଉଥିଲେ । କରାଚୀ କଂଗ୍ରେସରେ ୧୯୩୧ ମସିହାରେ ସ୍ୱରାଜ୍ୟର ଏକ ମାମୁଲି ଖସଡା ତିଆର ହୋଇଥିଲା । କିନ୍ତୁ ଏଥି ପ୍ରତି ଜୋର ନ ଥିଲା । ଗାନ୍ଧୀଜୀ ୧୯୨୧ ପରେ ଗଠନ ମୂଳକ କାର୍ଯ୍ୟ ଆରମ୍ଭ କରିଥିଲେ । ଚରଖା ସଂଘ ପରି କିଛି ସଂଗଠନ ସ୍ଥାପିତ ହେଲା । ମାତ୍ର ପରବର୍ତ୍ତୀ ଘଟଣା ସବୁ ଦେଖିଲେ ସେ ଗୁଡ଼ିକ ଥିଲା ସ୍ୱରାଜ୍ୟ ସୈନିକଙ୍କୁ ବଡ ଲଢାଇକି ପ୍ରସ୍ତୁତ ହେବା ନିମନ୍ତେ । ଏଥିରେ ସାଧନା କରିବାକୁ ପଡୁଥିଲା । ୧୯୩୦ ଆନ୍ଦୋଳନ ବେଳକୁ ସବୁ ଛାଡ଼ି ଛୁଡ଼ି ଦେଇ ଏମାନେ ଲୁଣମାରା ବା ତଦ୍ରୂପ ଗାନ୍ଧୀ ଆଇନ ଅମାନ୍ୟର ବିଶିଷ୍ଟ ଯୋଦ୍ଧା ଭାବରେ ବାହାରି ପଡ଼ିଲେ । ଗାନ୍ଧୀଜୀଙ୍କ ବିରୁଦ୍ଧରେ ଅଭିଯୋଗ ହୁଏ ସେ ହଠାତ୍ ମଝିରେ ମଝିରେ ସତ୍ୟାଗ୍ରହ ଆନ୍ଦୋଳନ ସ୍ଥଗିତ ରଖି ଦେଉଥିଲେ । ଏପରି କରିବା ଦ୍ୱାରା ସର୍ବସ୍ୱ ତ୍ୟାଗ କରି ଜଳାଞ୍ଜଳି ଦେଇଥିବା ଲୋକଙ୍କ ଭିତରେ ବିଷାଦ ଆସେ । କିନ୍ତୁ ଗାନ୍ଧୀଜୀ ତାର ଭିନ୍ନ ଅର୍ଥ କରୁଥିଲେ । ସ୍ୱରାଜ୍ୟ ବା ସତ୍ୟାଗ୍ରହ ଆନ୍ଦୋଳନ ବନ୍ଦ ହୋଇଗଲା ବୋଲି ସେ ବିଶ୍ୱାସ କରୁ ନ ଥିଲେ । ସେ କହିଛନ୍ତି ବହୁ ଯାଗାରେ, ହିମାଳୟ ଆମର ଲକ୍ଷ୍ୟ । ଆମେ ପଥଚାରୀ ବହୁ ପାହାଡ଼ ନଦୀ ଅତିକ୍ରମ କରିବାକୁ ପଡ଼ିବ । ରାତି ନାହିଁ ଦିନ ନାହିଁ, ଆମର ଯାତ୍ରା ଅବ୍ୟାହତ ରହିଛି । ଧର ବାଟରେ ବିରାଟ ନଦୀ ଅତିକ୍ରମ କରିବାକୁ ପଡ଼ିବ । ସମସ୍ତଙ୍କୁ ପହଁରିବା ଆସେନା । ବଡ ଖରସ୍ରୋତା ବା ବରଫାବୃତ ନଦୀ ପହଁରି ପାରିବା ଏକ ଶକ୍ତିର କାର୍ଯ୍ୟ– ଆମ ଦ୍ୱାରା ହୋଇ ପାରିବ ନାହିଁ । ଆମେ ଫେରି ଆସିବା କି ? ନାହିଁ, ଲକ୍ଷ୍ୟ ସ୍ଥଳରେ ଅବଶ୍ୟ ପହଂଚିବା । ନଦୀ ପାରି ହେବା ନିମନ୍ତେ ନୌକା ଆବଶ୍ୟକ । ଡଙ୍ଗା ତିଆରି କରି ପାରି ହେବା ନିମନ୍ତେ ସମୟ ଲାଗିବ ।

ଆମେ ଯାତ୍ରା ସ୍ଥଗିତ ରଖି ସେହି ଢଙ୍ଗ। ତିଆରିରେ ଲାଗିଯିବୁ । ସତ୍ୟାଗ୍ରହ କିମ୍ବା ଆମର ଯାତ୍ରା ବନ୍ଦ ହୋଇ ନାହିଁ । ଯୁଦ୍ଧରେ ପ୍ରବେଶ ଥରେ କଲାପରେ ଆଉ ବନ୍ଦ ହେବା କିମ୍ବା ଫେରିବା ପ୍ରଶ୍ନ ଉଠୁନାହିଁ । ସେ ନିଜେ ସାବରମତୀ ଆଶ୍ରମରେ ୧୯୩୦ ମାର୍ଚ୍ଚ ୧୨ ତାରିଖରେ ଯେତେବେଳେ ଦାଣ୍ଡି ଯାତ୍ରା କଲେ, ଘୋଷଣା କରିଥିଲେ ଯେ ସ୍ୱରାଜ ହାସଲ ନ ହେବା ପର୍ଯ୍ୟନ୍ତ ଆଉ ସାବରମତୀକି ଫେରିବି ନାହିଁ । ଏହା ଆମେ ସବୁ ୧୯୩୦ରେ ଗାନ୍ଧୀ ଆନ୍ଦୋଳନରେ ଯୋଗ ଦେଇଥିବା ଲୋକଙ୍କୁ କମ ଉତ୍ସାହ ଦେଇ ନ ଥିଲା । ମୁଁ ନିଜେ ୧୯୩୨ ମସିହାରେ ଦ୍ୱିତୀୟ ଥର ଜେଲ ଭୋଗି ଫେରିଲା ବେଳକୁ ସବୁଆଡେ ଆଇନ ଅମାନ୍ୟ ପ୍ରାୟ ବନ୍ଦ ହୋଇ ଯାଇ ଥାଏ । ନୂଆ ସ୍ୱେଚ୍ଛାସେବୀ ଆଉ ପ୍ରାୟ ବାହାରୁ ନ ଥାନ୍ତି । ଅବସ୍ଥା ଯାହା ନିଜ ନିଜ ଘରକୁ ଫେରିଯିବା କଥା । ଅନେକ ସାଥି ଯେ ଜେଲରୁ ଆସୁଥିଲେ, ସେମାନେ ପ୍ରାୟ ସେଇଆ କରୁଥିଲେ । କେତେକ ସ୍କୁଲ କଲେଜରେ ଯାଇ ନାମ ଲେଖାଇଲେ । ମୁଁ କିନ୍ତୁ ଗାନ୍ଧୀଜୀଙ୍କ କଥା ମନରେ ରଖି ଜେଲରୁ ସିଧା ଖଲସ ହୋଇ ଯାଇ ମହତାବଙ୍କ ପାଖରେ ଉପସ୍ଥିତ ହେଲି । ସେତେବେଳେ ହରେକୃଷ୍ଣ ମହତାବ ଲଡାଇ ବେଳର ଡ଼ିକ୍ଟେଟର ଭାବରେ କାମ ସମ୍ଭାଳି ଥାଆନ୍ତି । କଂଗ୍ରେସ କମିଟି ବେଆଇନ ଘୋଷିତ ହୋଇଥିଲା । ପ୍ରକାଶ୍ୟରେ ଅଫିସ ନ ଥିଲା । କଟକର ସ୍ୱରାଜ ଆଶ୍ରମ ପୁଲିସ ଦଖଲରେ ଥିଲା; ତାଲା ପଡ଼ୁଥିଲା । ନିଖିଳ ଭାରତ ଚରଖା ସଂଘର ଅଫିସ ଥିଲା ବକ୍ସି ବଜାରରେ । ଚରଖା ସଂଘ ବେଆଇନ ହୋଇ ନ ଥିଲା । ବଂଶୀଧର ରଥ ତାର ସଂପାଦକ ଥିଲେ । ସେ ସେଇ ଅଫିସରେ ରହୁଥିଲେ । ମହତାବ ସେହି ଠାରେ ତାଙ୍କ ପାଖରେ ଥିଲେ ।

ଏହି ଭଳି ଉପାଦାନରେ ଗଢ଼ା ହୋଇଥିଲେ ୧୯୨୧ ଓ ୩୦ରେ ଜେଲଭୋଗୀମାନେ । କେତେକ ନିଜ ନିଜ ଧନ୍ଦା ବା ଘରକୁ ଗଲେ ସିନା ଅନନ୍ୟୋପାୟ ହୋଇ । କଟକ ଜିଲାର ବନ୍ଦୀମାନଙ୍କ ନାମ ମୁଁ ଲେଖୁଲି ନାହିଁ ବହୁତ ଲମ୍ବା ହେବ ବୋଲି । ମାତ୍ର କେତେକ ଅଶ୍ରୁତ ଗାଁ ଗହଳର ସାଥିଙ୍କ ନାମ ଏବେ ବି ଆଖି ଆଗରେ ଝୁଲୁଛି । ତିର୍ତ୍ତୋଲର ଲୋକନାଥ ଅବଧାନ (ନାୟକ)ର ତ୍ୟାଗର କିଏ କ୍ଷତି ପୂରଣ ଦେବ ? ବିଲାତି ଲୁଗା ବେପାରୀ ନ ଶୁଣିବାରୁ ଆମେ ସ୍ଥିର କଲୁ ଲୁଗା ଗାଣ୍ଡି ଗାଡ଼ିରେ ଆସୁଥିବା ବେଳେ ସେଥିରେ ଏସିଡ୍ ପକାଇ ନଷ୍ଟ କରି ଦବା । ଲୋକନାଥ ବଳଦ ଗାଡ଼ି ଭିତରେ ପଶିଥିବା ବେଳେ ଏଣେ

ଉପରୁ ଏସିଡ ପଡ଼ିଗଲା । ଦେହ ଗୋଟାକ ଏସିଡ ପଡ଼ି ପୋଡ଼ି ଗଲା । ବହୁ ଦିନ ଲାଗିଲା ଶୁଖିବା ଲାଗି । ସେମିତି ଯାଜପୁର ଭଗବାନ ସାହୁ କଥା କିଏ ଭୁଲି ପାରିବ । ତାଙ୍କୁ ଚାଳିଶ ବର୍ଷ ସଜା ହୋଇଥିଲା । ଏମିତି ଅଗଣିତ ସ୍ୱରାଜ ସୈନିକଙ୍କ ତ୍ୟାଗ ଓ କଷ୍ଟଭୋଗ ଫଳରେ ଏ ଦେଶର ସ୍ୱାଧୀନତା ଆସିଛି । ସ୍ୱେଚ୍ଛାକୃତ ଭାବରେ କୌଣସି ପ୍ରତ୍ୟାଶା ନ ରଖି ଏପରି ଗାଁ ଗହଳର ଯୁବକ ବାହାରି ଆସିବା କମ୍ ଗୌରବର କଥା ନୁହେଁ ।

ଓଡ଼ିଶା ପକ୍ଷରେ ଆଉ ଏକ ଗୌରବର ବିଷୟ ହେଉଛି ୧୯୨୧ ଓ ୧୯୩୦ରେ ଏପରି ଅଗ୍ନି ପରୀକ୍ଷା ଭିତର ଦେଇ ଆସିଥିବା ବହୁ ବ୍ୟକ୍ତି ରାଜନୀତିରେ ରହିଗଲେ । ସେହିମାନେ ନେଲେ ଓଡ଼ିଶାର ସତ୍ୟାଗ୍ରହ ଆନ୍ଦୋଳନର ନେତୃତ୍ୱ ଏବଂ ସ୍ୱାଧୀନତା ପ୍ରାପ୍ତି ପରେ ସେମାନଙ୍କ ଭିତରୁ କେତକ ରହିଲେ ନେତୃତ୍ୱ ସ୍ଥାନରେ ।

卐

# ୧୯୩୨ ଆନ୍ଦୋଳନ ଓ ଆଇନ ଅମାନ୍ୟ

ଗାନ୍ଧୀଜୀ ଯାଇ ଗୋଲଟେବୁଲରେ ଯୋଗ ଦେଲେ । ଦେଶବାସୀଙ୍କ ଠାରୁ ଦୂରରେ ରହିଲେ । ସେ କିଛି ବ୍ୟକ୍ତିଗତ ଭାବରେ ଯାଇ ନ ଥିଲେ । କଂଗ୍ରେସ କମିଟି ବୈଠକରେ ତାଙ୍କୁ ପ୍ରତିନିଧି ରୂପେ ବଛାଗଲା । ଅବଶ୍ୟ ସରୋଜିନୀ ନାଏଡୁ, ପଣ୍ଡିତ ମଦନ ମୋହନ ମାଲବ୍ୟ, ମହମ୍ମଦ ଆଲି ଜିନ୍ନା, ବି. ଆର: ଆମ୍ବେଦକାର, ଏମ୍. ଆର: ଜୟକର ଓ ତେଜବାହାଦୁର ସାପ୍ରୁଙ୍କ ଭଳି ବିଶିଷ୍ଟ ଲୋକମାନଙ୍କୁ ବି ନିମନ୍ତ୍ରଣ ଦିଆ ଯାଇଥିଲା । ସେଗୁଡ଼ିକ ଥିଲା ବ୍ୟକ୍ତିଗତ ନିମନ୍ତ୍ରଣ । କେତେକଙ୍କୁ ତ ସାଂପ୍ରଦାୟିକ ଦାବୀ ଆଦି ଉଠାଇବା ନିମନ୍ତେ ହିଁ ବିଶେଷ ଭାବରେ ନିମନ୍ତ୍ରଣ କରାଯାଇ ଥିଲା । ସେମାନେ ଭବିଷ୍ୟତ ଭାରତ ଗଠନ କିମ୍ବା ଭାରତ ପାଇଁ ପୂର୍ଣ୍ଣ ଅଧିକାର ପ୍ରାପ୍ତିରେ ଆଗ୍ରହୀ ନଥିଲେ । ନିଜ ସଂପ୍ରଦାୟ ଓ ଅନ୍ୟ ସଂକୀର୍ଣ୍ଣ ଗୋଷ୍ଠୀସ୍ୱାର୍ଥ କଥା ସେଠାରେ ଉତ୍‌ଥାପନ କଲେ । ମିଳିତ ଭାବରେ ଭାରତର ଦାବୀ ଆଲୋଚନା କରିବା କିମ୍ବା ଏକାଠି ବସି ନିଜ ଭିତରେ ବିଚାର ପରାମର୍ଶ ବି କରାଯାଇ ପାରିଲା ନାହିଁ । ବ୍ରିଟିଶ ସରକାର ସାରା ଜଗତକୁ ଦେଖାଇ ଦେବାକୁ ଚାହୁଁଥିଲା– ଭାରତବାସୀଙ୍କ ଭିତରେ ଏକତା ନାହିଁ । ସ୍ୱରାଜ୍ୟ ଦାବୀ ପଛରେ ବି ସମସ୍ତଙ୍କର ସମର୍ଥନ ନାହିଁ । ବିଭିନ୍ନ ସଂପ୍ରଦାୟ ଭିତରେ ବିବାଦ ଓ ନାନା କଳହ ପୂରି ରହିଛି । ବିଶେଷ ଭାବରେ ହିନ୍ଦୁ, ମୁସଲମାନ ଓ ହରିଜନଙ୍କ ଭିତରେ ବଡ ଆଶଙ୍କା ଓ ସନ୍ଦେହ ପୂରି ରହିଛି । ବ୍ରିଟିଶ ସରକାର ଅପସରି ଗଲେ ଭାରତ ବର୍ଷରେ ବଡ ଦଙ୍ଗା ହାଙ୍ଗାମା ଓ ସାଂପ୍ରଦାୟିକ ବିବାଦ ତୀବ୍ର ଭାବରେ ଉଠିବ । ପ୍ରତ୍ୟେକ ଗୁରୁତ୍ୱପୂର୍ଣ୍ଣ ଆଲୋଚନାକୁ ପଣ୍ଡ କରିଦେବା

ନିମନ୍ତେ ଏହା ଥିଲା ଏକ କୌଶଳ । ମହାତ୍ମା ଗାନ୍ଧୀଙ୍କର ସକଳ ପ୍ରସ୍ତାବର ସତେ କି ବିରୋଧ କରିବା ନିମନ୍ତେ ଏପରି ଏକ ଷଡଯନ୍ତ୍ର କରାଯାଇ ଥିଲା । ତାହାହିଁ ହେଲା । ଗାନ୍ଧୀଜୀ ଘୋଷଣା କଲେ ମୁଁ ଏଠାରେ ଦେଶର କୋଟି କୋଟି ନିରନ୍ନ ଦରିଦ୍ର ଜନସାଧାରଣଙ୍କର ପ୍ରତିନିଧିତ୍ୱ କରୁଛି । ଏଥିରେ ଜାତି, ଧର୍ମ ଓ ବର୍ଣ୍ଣର ପାର୍ଥକ୍ୟ ନାହିଁ । ଭରତର ପ୍ରତ୍ୟେକ ନାଗରୀକର ସମର୍ଥନ ମୋ ଦାବୀ ପଛରେ ରହିଛି । ଗାନ୍ଧୀଜୀଙ୍କର ଏପରି ସ୍ପଷ୍ଟ ଉକ୍ତି ଶୁଣି ଅନେକଙ୍କ ମନରେ ବିଶେଷତଃ ବ୍ରିଟିଶ ସରକାର ଉପରେ କିଂଚିତ ପ୍ରଭାବ ପକାଇଲା । ମାତ୍ର ବ୍ରିଟିଶ ସରକାର ତ ଆଗରୁ ନିଜର ଚକ୍ରାନ୍ତ କରି ସାରିଥିଲେ– ତହିଁରେ ସେ ସଂପ୍ରଦାୟିକ ବିବାଦ ବିଷୟକୁ ମୁଖ୍ୟ ସ୍ଥାନ ଦେଇ ଗାନ୍ଧୀଜୀଙ୍କ ସାମୁହିକ ଦାବୀ ଗୁଡ଼ିକୁ ଗୁରୁତ୍ୱ ଦେଲେ ନାହିଁ । ବିଫଳ ମନୋରଥ ହୋଇ ଗାନ୍ଧୀଜୀ ଦେଶକୁ ଫେରିଲା ବେଳକୁ ଏଣେ ଦେଶ ସାରା ନିଆଁ ଜଳୁଥିଲା । ଏହି ସମୟରେ ଜାତୀୟ କବି ବାଞ୍ଛାନିଧି ମହାନ୍ତି ଗୀତ ବୋଲିଲେ–

"ଭଲ ଗୋଲଟେବୁଲ ପାଇଁ ଲଗିଲା ରେ, କାନ୍ଦି କାନ୍ଦି ଗାନ୍ଧୀବୁଢ଼ା ଫେରିଲାରେ ।"

ଏହି ଗୀତଟିକି ସେ ନିଜେ ବୋଲି ଥିଲେ ଏବଂ ରେକର୍ଡ ମଧ୍ୟ ହୋଇ ଥିଲା ।

ଏଣେ ଗାନ୍ଧୀ ଇର୍‌ୱିନ୍ ଚୁକ୍ତି ହେତୁ ସ୍ୱରାଜ୍ୟ ସୈନିକମାନେ ଆଉ ସଂଗଠିତ ହୋଇ ରହି ନ ଥିଲେ । ସାମାନ୍ୟ କିଛି ପିକେଟିଂ ଆଦି ହେଉଥିଲା । ମାତ୍ର ବହୁ ଲୋକ ନିଜ ନିଜ ଧନ୍ଦାରେ ପ୍ରବେଶ କଲେ । ପରେ ଆବଶ୍ୟକ ହେବାରୁ କେତେକ ଅବଶ୍ୟ ଆସିଲେ । ମାତ୍ର ଥରେ ଛତ୍ରଭଙ୍ଗ ହେଲେ ଆଉ ସମସ୍ତିଙ୍କି ଉତ୍ସାହ ଦେଇ ଏକତ୍ର କରିବା ଏକ କଷ୍ଟସାଧ୍ୟ କାର୍ଯ୍ୟ ଥିଲା । ମୋର ଆତ୍ମୀୟ ଡାକ୍ତର ବ୍ରଜନାଥ ମିଶ୍ର ହାଜାରିବାଗରୁ ଖଲାସ ହୋଇ ଆସି ଥାଆନ୍ତି । କଟକରେ ଏକା ବସାରେ ରହୁଥିଲେ ଯେତେବେଳେ ଆସନ୍ତି । ସେ ଓ ମୋର ମାମୁଁ ଅକୁଳ ମିଶ୍ର ଦୁହେଁ ପ୍ରାୟ ସମବୟସୀ– କୁଟୁମ୍ବ ହିସାବରେ ଭାଇ । ମାମୁଁଙ୍କ କଥା କାଳେ ନମାନିବି, ବ୍ରଜ ମାମୁଁକୁ ସାଙ୍ଗରେ ଆଣି ଦୁହେଁ ମତେ ପ୍ରଭାବିତ କରିବା ନିମନ୍ତେ ଚେଷ୍ଟା କଲେ ପୁଣି ଯାଇ ସ୍କୁଲରେ ନାମ ଲେଖାଇ ପାଠ୍ୟ ପୁସ୍ତକ ପଢ଼ା ଆରମ୍ଭ କରିବା ନିମନ୍ତେ । ବ୍ରଜମାମୁଁ ବୁଝାଇ ଦେଲେ ବ୍ରିଟିଶ ସରକାର ସହ ଯେତେବେଳେ ସନ୍ଧି ହୋଇ ଗଲାଣି; ଆଉ ସ୍କୁଲକୁ ଫେରିବାରେ

କିଛି ରାଜନୀତିକ ଦୋଷ ନାହିଁ । ମୁଁ କିନ୍ତୁ ମୋର ପୂର୍ବ ଶପଥରେ ଅଟଳ ରହିଲି; ଇଂରେଜ ସ୍କୁଲକୁ ଆଉ ଫେରିବି ନାହିଁ । ଏହି ସମୟରେ ଓ ୧୯୨୧ର ଶିଥିଳତା ପରେ ଭାରତର ବିଭିନ୍ନ ସ୍ଥଳରେ ସ୍କୁଲ, କଲେଜ ଛାତ୍ରଙ୍କ ପାଇଁ ଏକ ଉଦ୍ୟମ ହୋଇଥିଲା । ଯେଉଁ ଛାତ୍ର ଯୁବକ ସ୍କୁଲ କଲେଜ ଛାଡ଼ି ଅସହଯୋଗ ଓ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ, ସେମାନଙ୍କୁ ଜାତୀୟ ସ୍ତରରେ ଶିକ୍ଷା ଦେବା ନିମନ୍ତେ କେତୋଟି ଅନୁଷ୍ଠାନ ବିଭିନ୍ନ ରାଜ୍ୟରେ ଗଢି ଉଠିଲା । ଆମର ସତ୍ୟବାଦୀ ସ୍କୁଲ ଗୋପବନ୍ଧୁ ବାବୁ ଅସହଯୋଗ ବେଳୁ ଭାଙ୍ଗି ଦେଇଥିଲେ । ମାତ୍ର ବିହାରରେ ବିହାର ବିଦ୍ୟାପୀଠ, ଗୁଜରାଟରେ ଗୁଜରାଟ ବିଦ୍ୟାପୀଠ, ଉତ୍ତର ପ୍ରଦେଶରେ କାଶୀ ବିଦ୍ୟାପୀଠ ପ୍ରଭୃତି ଅନୁଷ୍ଠାନ ଗଢି ଉଠିଲା । ବିହାରରେ ଆଚାର୍ଯ୍ୟ କ୍ରିପାଲନୀ, ଗୁଜରାଟରେ ଆଚାର୍ଯ୍ୟ କାକା କାଲେଲ୍କାର ଏବଂ ଉତ୍ତର ପ୍ରଦେଶ କାଶୀ ବିଦ୍ୟାପୀଠରେ ଆଚାର୍ଯ୍ୟ ନରେନ୍ଦ୍ର ଦେବ ପ୍ରିନ୍ସିପାଲ କାର୍ଯ୍ୟ ଚଳାଉ ଥିଲେ । ଏହି କାଶୀ ବଦ୍ୟାପୀଠରୁ ଓଡ଼ିଶାର ତିନି ଜଣ କମ୍ୟୁନିଷ୍ଟ ନେତା ଶିକ୍ଷା ଲାଭ କରିଥିଲେ । ଶରତ୍ ପଟନାୟକ, ପ୍ରାଣନାଥ ପଟନାୟକ ଓ ଗୁରୁ ଚରଣ ପଟନାୟକ । ଗୁରୁ ଚରଣ ବୋଧ ହୁଏ ପଢ଼ା ଶେଷ କରି ନଥିଲେ ।

ଆଉ ଲଢ଼ାଇ ହେବାର ସମ୍ଭାବନା କମ ବୋଲି ସାଧାରଣତଃ ଏକ ଧାରଣା ଜନ୍ମିଥିଲା । ଏକ ଶିଥିଳତା ଓ ସ୍ୱସ୍ତିର ପବନ ବହୁଥିଲା । ବ୍ରିଟିଶ ସରକାର କିନ୍ତୁ ଆଗରୁ କ୍ଷେତ୍ର ପ୍ରସ୍ତୁତ କରୁଥାଏ । କେତେକ ରାଜ୍ୟରେ ସ୍ଥାନୀୟ ଅଫିସରଙ୍କ ସହ ଛୋଟ ଛୋଟ ସଂଘର୍ଷ ଲାଗିଲା । କର୍ତ୍ତୃପକ୍ଷ ବଡ କଠୋର ହେଲେ । ଜେଲ ଓ ଅନ୍ୟ ଶାସ୍ତି ସବୁ ଦିଆଗଲା । ସାମାନ୍ୟ ଅପରାଧରେ ବହୁ ଚାଷୀଙ୍କୁ ଦଣ୍ଡ ଦିଆଯାଇ ଜୋରିମାନା, ଘର କୋରଖ, ଜମି ନିଲମ, ଯେପରି ଏକ ଦୈନନ୍ଦିନ ଘଟଣା ହୋଇ ଯାଇ ଥିଲା । ଚାରିଆଡେ ଅଶାନ୍ତି, ଅସନ୍ତୋଷ । ଗାନ୍ଧୀଜୀ ଆଉ କଥାବାର୍ତ୍ତା କରି କିଛି ବାଟ ବାହାର କରିବାର ସ୍ଥିତି ନ ଥିଲା । ଲର୍ଡ ଉଇଲିଂଡନ୍ ଭାରତର ଜାତୀୟବାଦୀ ଶକ୍ତି ଉପରେ ଆଗ ଆକ୍ରମଣ ଆରମ୍ଭ କରିଦେଲେ । କେତେ ଗୁଡ଼ିଏ ଅର୍ଡିନାନ୍ସ ଜାରି କରିଦେଲେ । ଯେ କୌଣସି ଲଢ଼ାଇରେ ପ୍ରଥମେ ଯେ ଆକ୍ରମଣ କରେ, ସେ କେତେକ ସୁବିଧା ଅବସ୍ଥାରେ ଥାଏ । ଅପର ପକ୍ଷକୁ ଅପ୍ରସ୍ତୁତ ଅବସ୍ଥାରେ ତାର ସମ୍ମୁଖୀନ ହେବା ଅତ୍ୟନ୍ତ

କଷ୍ଟକର ହୁଏ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ହେତୁ ହୋଇଥିଲା ଗଣ ଆନ୍ଦୋଳନ । କିନ୍ତୁ ୧୯୩୨ରେ ଅତର୍କିତ ଆକ୍ରମଣ ହେତୁ ବିଭିନ୍ନ ସ୍ଥାନରେ ଆଇନ ଅମାନ୍ୟ ଯଥା ବିଲାତି ଲୁଗା ଦୋକାନ, ମଦ, ଅଫିମ ଦୋକାନ ପିକେଟିଂ, ୧୪୪ ଧାରା ଅମାନ୍ୟ କରିବା, ଏହିଭଳି ବିଭିନ୍ନ ଢ଼ଙ୍ଗରେ ଆଇନ ଭଙ୍ଗ କରାହେଲା । ଲୋକ ସଂଗ୍ରହ କରିବାକୁ ପଡୁଥିଲା । ମୋର ସ୍ମରଣ ହେଉଛି ଏହିଭଳି ସତ୍ୟାଗ୍ରହୀ ସଂଗ୍ରହ କରିବା ନିମନ୍ତେ ମୁଁ ତାଳଚେରରୁ ଜଙ୍ଗଲ ରାସ୍ତାରେ ଚାଲି ଚାଲି ଅନୁଗୁଳର କୋଶଳ ଗ୍ରାମକୁ ଯାଇଥିଲି । ଟ୍ରେନରେ ଗଲି ତାଳଚେର । ଜଙ୍ଗଲ ରାସ୍ତାରେ ପରିଚିତ ଗୋଟିଏ ଲୋକକୁ ସାଙ୍ଗରେ ଯିବାଲାଗି ସ୍ଥିର କରିଦେଲେ ଅନୁଗୁଳର କଣ୍ଟ୍ରାକ୍ଟର ଗିରିଜା ଭୂଷଣ ଦତ୍ତ । ସେ ସେତେବେଳକୁ ଓଡ଼ିଶାରେ କଂଗ୍ରେସ ଅଧିବେଶନର କାର୍ଯ୍ୟରେ ସହଯୋଗ କରି ବେଶ୍ ପରିଚିତ ହୋଇ ସାରିଥିଲେ । ସେ ପରେ ଏମ୍. ଏଲ୍. ଏ. ବି ହେଲେ । ଆସନ୍ତା ଲେଖାରେ ତାଙ୍କ ବିଷୟରେ କିଛି ଲେଖିବାର ପ୍ରୟୋଜନ ହେବ । ସେ ଲୋକଟି କାନ୍ଧରେ ଗୋଟିଏ ଟାଙ୍ଗିଆ ପକାଇ ମୋ ଆଗେ ଆଗେ ଚାଲିଲା । କୋଶଳ ଗାଁରୁ ବହୁ ସତ୍ୟାଗ୍ରହୀ ୧୯୩୦ ମସିହାରେ ଜେଲ ବରଣ କରିଥିଲେ । ସେମାନଙ୍କ ଭିତରୁ କିଛି ଲୋକଙ୍କୁ ପ୍ରବର୍ତ୍ତାଇ ପୁଣି ଆଇନଭଙ୍ଗକାରୀ ସତ୍ୟାଗ୍ରହୀ ଶ୍ରେଣୀଭୁକ୍ତ କରାଇବା ଥିଲା ଉଦ୍ଦେଶ୍ୟ । କିଂଚିତ ସଫଳତା ମିଳିଲା । ଏହି ରୂପେ ୧୯୩୨ ଆନ୍ଦୋଳନର ଏବଂ ଜେଲ ଭରିବାର ପନ୍ଥା ହେଲା ଭିନ୍ନ ।

卐

[ ୧୭ ]

# ସନ୍ଧିବେଳେ ଓଡ଼ିଶାରେ ଜେଲ

ଗାନ୍ଧୀ ଇରଓ୍ୱିନ୍ ଚୁକ୍ତି ଓ ପୁରୀ କଂଗ୍ରେସ ଅଧିବେଶନର ପ୍ରସ୍ତୁତି କାମ ଯୋଗୁଁ ଆଇନ ଅମାନ୍ୟ ପ୍ରାୟ ବନ୍ଦ ହୋଇ ଯାଇଥାଏ । ପୂର୍ବରୁ କଂଗ୍ରେସର ସଂଗଠନ ନ ଥିବା କେତେକ ସ୍ଥାନରେ ଜେଲ ଫେରନ୍ତା କର୍ମୀମାନେ କଂଗ୍ରେସ ଶାଖା ସ୍ଥାପନାର ଉଦ୍ୟମ କଲେ । ଅନୁଗୁଳ ସେହିପରି ଏକ ସ୍ଥାନ । ଓଡ଼ିଶାରେ ତିନିଗୋଟି ସବ୍‌ଡ଼ିଭିଜନର ଶାସନକୁ ଇଂରେଜ ସରକାର ନିଜର ଅକ୍ତିଆରରେ ରଖି ଥାଆନ୍ତି ତାଙ୍କର ବିଶ୍ୱସ୍ତ କର୍ମଚାରୀଙ୍କ ଜରିଆରେ । ପ୍ରାୟ ଆଇ. ସି. ଏସ୍. ଅଫିସରମାନଙ୍କୁ ଏଠାରେ ଏସ୍.ଡ଼ି.ଓ. ଭବରେ ନିଯୁକ୍ତି ମିଳୁଥିଲା । ଯଥା ଖୋର୍ଦ୍ଧା, ଭଦ୍ରଖ ଏବଂ ଅନୁଗୁଳ । ଗଞ୍ଜାମର ଘୁମୁସରକୁ ସେହିଭଳି ପର୍ଯ୍ୟାୟରେ ରଖା ଯାଇଥିଲା । ଏସବୁ ସ୍ଥାନରେ ପୂର୍ବରୁ ଫିତୁରୀ ବା ବିଦ୍ରୋହ ହୋଇ ଥିବାର ବର୍ଣ୍ଣନା ରହିଛି ।

ଅନୁଗୁଳ ଓ ଫୁଲବଣୀ କି ଏକ ଶାସନଭୁକ୍ତ କରା ଯାଇଥିଲା । ସ୍ପେସାଲ ରେଗୁଲେସନ ଆକ୍ଟ ଅନୁସାରେ ଅନୁଗୁଳ ଶାସିତ ହେଉଥିଲା । ଅନୁଗୁଳ ଥିଲା ଦେଶୀୟ ରାଜ୍ୟ ଗୁଡ଼ିକ ମଝିରେ । ଢେଙ୍କାନାଳ, ତାଳଚେର, ଆଠମଲ୍ଲିକ ରେଢ଼ାଖୋଲ ଆଦି ଗଡଜାତଗୁଡ଼ିକ ଥିଲା ଅନ୍ଧାରୀ ମୁଲକ । ଗଡଜାତ ରାଜାଙ୍କର ସ୍ୱେଚ୍ଛାକୃତ ଶାସନ । ଅନୁଗୁଳ କିନ୍ତୁ ବ୍ରିଟିଶ ଓଡ଼ିଶାର ଅନ୍ତର୍ଭୁକ୍ତ ଥିଲା । ମାତ୍ର ବ୍ରିଟିଶ ସରକାର ଅନୁଗୁଳଟିକୁ ଗଡଜାତୀ ଶାସନର ଅନୁରୂପ କରି ରଖି ଥିଲେ । ଜମିଜମା ଗଛମାଛ ଘରବାଡ଼ି କେଉଁଥିରେ ପ୍ରଜାର ଅଧିକାର ନ ଥାଏ ।

ଏପରିକି ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାର ଅଧିକାର ଲୋକେ ହରାଇ ବସିଥିଲେ । ରେଗୁଲେସନ ନିୟମ ଅନୁସାରେ ଅନୁଗୋଳ ବାହାରର କୌଣସି ଲୋକକୁ, ସେ ନିଜର ବନ୍ଧୁ ହୋଇଥିଲେ ସୁଦ୍ଧା, ଡେପୁଟି କମିଶନରର ଅନୁମତି ବିନା ଘରେ ରଖା ଯାଇ ପାରିବ ନାହିଁ । କେହି ଆସିଲେ ସୂର୍ଯ୍ୟାସ୍ତ ପୂର୍ବରୁ ଫେରି ଯିବାକୁ ପଡୁଥିଲା । ପୋକ, ମାଛି ଠାରୁ ଲୋକଙ୍କ ଧନ, ଜୀବନ ଆହୁରି ତୁଚ୍ଛ ବୋଲି ବିଗ୍ରର କରାଯାଉଥିଲା । ଏସବୁ କଟକଣା ସତ୍ତ୍ୱେ ଅନୁଗୁଳରୁ ବହୁ ଲୋକ ଜେଲ ବରଣ କରିଥିଲେ । ଗାନ୍ଧୀ-ଇରଓ୍ୱିନ୍ ଚୁକ୍ତି ଯୋଗୁଁ ସେମାନେ ଖଲାସ ହୋଇଗଲେ । ସେମାନଙ୍କ ଭିତରେ ଥିଲେ ଡାକ୍ତର କୃପାସିନ୍ଧୁ ଭୂକ୍ତା । ଲବଣ ସତ୍ୟାଗ୍ରହ ବାହିନୀରେ ସେ ଇଞ୍ଚୁଡ଼ି ଲୁଣ ମାରିବା ନିମନ୍ତେ ଯାଇଥିଲେ । ମୋର ଯେତେଦୂର ମନେ ପଡୁଛି ସତ୍ୟାଗ୍ରହୀ ବାହିନୀର ୩ୟ ବାହିନୀର ସେ ଥିଲେ ସେନାପତି । ଗ୍ରକିରୀ ଆଦି ତ ଛାଡ଼ି ଥିଲେ । ସେମାନେ ସ୍ଥିର କଲେ ଅନୁଗୁଳରେ ସର୍ବବେଳେ କଂଗ୍ରେସର ପ୍ରଗ୍ରର କାର୍ଯ୍ୟ କରିବା ନିମନ୍ତେ । ସେଥିଲାଗି ଅଫିସ ଦରକାର ଓ ସ୍ଥାନ ଦରକାର । ଆଜି କାଲି ଅନୁଗୁଳ ସହରର ଯେଉଁ ଛୋଟିଆ ପାହାଡଟି ଉପରେ ପାଣିପାଗ ଯନ୍ତ୍ର ରହିଛି, ତାହାର ଏକ ଅଂଶରେ ପତ୍ର କୁଡ଼ିଆ କରି ଏମାନେ ଅଫିସ ବୋଲି ଘୋଷଣା କଲେ ଏବଂ ସେହି ଠାରେ ରହୁଥିଲେ । କଂଗ୍ରେସ କାମ ବୋଲିଲେ ଥିଲା କଂଗ୍ରେସର ଗ୍ରରି ଅଣିଆ ସଭ୍ୟ ସଂଗ୍ରହ । ପିକେଟିଂ ଆଦି କରିବାର କ୍ଷେତ୍ର ନ ଥିଲା । ଅଳ୍ପ କେତେକ ଲୁଗା ଦୋକାନ ଥିଲା । ୟାଙ୍କର ମୁଖ୍ୟ କାର୍ଯ୍ୟ ହେଲା ବାଣ୍ଟି ହୋଇ 'ସମାଜ' କାଗଜ ବିକ୍ରୀ କରିବା । ତାହା ବି ଅନୁଗୁଳ କର୍ତ୍ତାଙ୍କର ସହ୍ୟ ହେଉ ନ ଥିଲା । 'ସମାଜ'ର ହେଡ ଲାଇନ ବଡ଼ ପାଟିରେ ଡାକି ବିକ୍ରି କରିବାଟା ଏକ ରାଜଦ୍ରୋହ କାର୍ଯ୍ୟରୂପେ ସରକାର ମନେ କରୁଥିଲେ । ସରକାରୀ ବିରୋଧୀ ହେଡ୍ ଲାଇନ ଡାକିବା ଦ୍ୱାରା ଓ ସେମାନଙ୍କୁ ଗିରଫ ନ କରି ପାରିବା ହେତୁ ଲୋକଙ୍କ ଭିତରେ ଭୟ ଭାଙ୍ଗି ଥିଲା । ଏହି ସତ୍ୟାଗ୍ରହୀମାନେ ସ୍ଲୋଗାନ ଆଦି ଦେଲେ ଏବଂ କଂଗ୍ରେସ ପତାକା ବିଭିନ୍ନ ଗ୍ରାମବାସୀଙ୍କ ଘରେ ବିକ୍ରୀ କଲେ । ସହରରେ କେତେକ ଲୋକ ଉଡାଇଲେ ମଧ୍ୟ । ସରକାରୀ କର୍ତ୍ତୃପକ୍ଷଙ୍କ ଚକ୍ଷୁଶୂଳ ହେଉଥିଲା; ମାତ୍ର ଚୁକ୍ତି ଯୋଗୁଁ ଏମାନଙ୍କୁ ଗିରଫ କରି ପାରୁ ନଥିଲେ । 'ସମାଜ' ବିକ୍ରୀରୁ ପ୍ରତିଦିନ କିଛି ପଇସା ମିଳୁଥିଲା । 'ସମାଜ' ଖଣ୍ଡିକର ଦାମ ବୋଧ ହୁଏ ଏକ ପଇସା ଥିଲା ସେତେବେଳେ । ଲଣ୍ଡା ପାହାଡ଼ବାସୀମାନେ ସହର ଓ ଆଖ ପାଖ ଲୋକଙ୍କ ଠାରୁ

ମାଗି ଯାଚି ଗ୍ରଉଳ ପରିବା ସଂଗ୍ରହ କରି ଆଣନ୍ତି ଏବଂ ପାହାଡ ଉପରେ କୌଣସି ପ୍ରକାର ଭାତ, ଡାଲଣା ରାନ୍ଧି ଖାଆନ୍ତି । ସେମାନେ କ୍ରମେ ଲୋକପ୍ରିୟ ହୋଇ ଉଠିଲେ । କିମିତି ବିଶେଷ ଭାବରେ 'ସମାଜ' ବିକ୍ରୀ ବନ୍ଦ ହେବ ଏହା ଥିଲା କର୍ତ୍ତୃପକ୍ଷଙ୍କର ପ୍ରଧାନ ଚିନ୍ତା ।

ଲଣ୍ଡା ପାହାଡଟି ସରକାରର ଜମି । ବିନାନୁମତିରେ ସେଠାରେ ପଲା ପକାଇ ରହିବା ଏକ ବେଆଇନ କାର୍ଯ୍ୟ । ତେଣୁ ଡାକ୍ତର କୃପାସିନ୍ଧୁ ଭୁକ୍ତା ଓ ତାଙ୍କ ସାଥିମାନଙ୍କ ଉପରେ ଟ୍ରେସପାସ୍ କରିଛ ଓ ତୁମ ଉପରେ କାହିଁକି କେସ୍ କରା ନ ଯିବ ବୋଲି ଏକ ଶୋ' କଜ୍ ନୋଟିସ ଜାରି ହେଲା । ଏମିତି ଥରକୁ ଥର ତିନି ଥର ନୋଟିସ ହେଲା । ମାତ୍ର ସତ୍ୟାଗ୍ରହୀ ସରକାରୀ ନୋଟିସକୁ ଗ୍ରହଣ କରିବେ ନାହିଁ କି ପରୁଆ କରିବେ ନାହିଁ, ନୋଟିସର ବେଖାତିର କଲେ । ଏଣେ କଂଗ୍ରେସ କାର୍ଯ୍ୟର ଅଗ୍ରଗତି ହେବାରୁ ଏକାଉଣ୍ଟ ରଖିବା ଓ ଅନ୍ୟ ଅଫିସ କାଗଜ ପତ୍ର କେମିତି କରାଯିବ ଏହି ପରାମର୍ଶ ଦେବା ନିମନ୍ତେ ମତେ ସେଠିକି ପଠାଗଲା କଟକରୁ । ମୁଁ ପହଂଚି ରାତିରେ ତଳେ ଚଦର ଖଣ୍ଡେ ପକାଇ ସେହି ପାହାଡ ଉପରେ ଖୋଲାରେ ସେମାନଙ୍କ ସାଙ୍ଗରେ ଶୋଇଲି ଓ ଖାଇଲି । ସେମାନେ ସବୁ ଖଜୁରିଆ ପଟିରେ ଶୋଉ ଥାଆନ୍ତି । କି ବୁଢା ବୁଢା ମଶାର ଆକ୍ରମଣ ଯୋଗୁଁ ରାତିଯାକ ଛଟପଟ ହେଉ ଥାଉ । ତହିଁ ଆରଦିନ ସକାଳ ପ୍ରାୟ ୧୧ଟା ବେଳେ ଆମେ ସବୁ ପତର ପକାଇ ଖାଇବା ଆରମ୍ଭ କରିଛୁ । ଏକ ମାଜିଷ୍ଟ୍ରେଟ ପୁଲିସ ସହ ଆସି ଖାଇ ବସିଥିଲା ବେଳେ ଆମକୁ ଘେରି ନେଲେ । ଦରଖୁଆ ହୋଇ ଉଠିଲୁ । ଡାଲି ଆଦି ଯେ ପତରରେ ଦିଆ ହୋଇଥିଲା, ହାତରେ ଗୋଟାଏ ପାଖରେ ନ ଧରି ପାରିବା ଯୋଗୁଁ ଗଡାଣିଆ ପାହାଡରେ ସବୁ ତଳକୁ ବହିଗଲା । ମାଜିଷ୍ଟ୍ରେଟ କହିଲେ ତୁମମାନଙ୍କୁ ତିନି ଥର ନୋଟିସ ହୋଇଛି । ତୁମେ ତାର ଜବାବ ନ ଦେଇ ବେଆଇନ ଜବର ଦଖଲ ଯୋଗୁଁ ଓ୍ୱାରଣ୍ଟ ବାହାରିଛି । ତୁମକୁ ଆରେଷ୍ଟ କରାଗଲା । ଆଗରୁ ଯେଉଁମାନେ ଥିଲେ ସମସ୍ତଙ୍କ ନାମ ମନେ ନାହିଁ । ତେବେ ସେଥିରେ ଥିଲେ ଡାକ୍ତର ଭୁକ୍ତା, ହୃଷିକେଶ ତ୍ରିପାଠୀ, ଆନନ୍ଦ ଚନ୍ଦ୍ର ପ୍ରଧାନ, ରତ୍ନାକର ନାୟକ ଇତ୍ୟାଦି । ପୁଲିସ ସବ୍ଇନିସ୍‌ପେକ୍ଟର ଗଙ୍ଗାଧର ଦ୍ୱିବେଦୀଙ୍କ ସାନଭାଇ ସେଠିକି ଯିବା ଆସିବା କରୁ ଥିଲେ । ସେ ବି ସେତେବେଳକୁ ସେଠି ପହଂଚି ଥିଲେ । ମତେ ଓ ତାଙ୍କୁ ବି ଅନ୍ୟ ସମସ୍ତଙ୍କ

ସାଙ୍ଗରେ ଗିରଫ କରଗଲ । ମୁଁ ଯୁକ୍ତି କଲି ମୋ ଉପରେ ନୋଟିସ ହୋଇନାହିଁ, ମୁଁ ଆସି ଥିଲି, ଗ୍ଲାଲିଯିବି ମତେ କେମିତି ଗିରଫ କରିବ ! କିନ୍ତୁ ସେମାନଙ୍କର ଜବାବ ହେଲ ଏକ ବେଆଇନ ଗୋଷ୍ଠି ସହ ତୁମେ ସଂଶ୍ଳିଷ୍ଟ । ଏତିକି ବେଳେ ହଠାତ୍ ହାତ ନ ଧୋଇ ଅଇଁଠା ହାତରେ ଉଠି ଗ୍ଲାଲିଗଲି ଗିରିଜା ଭୂଷଣ ଦତ୍ତଙ୍କ ପାଖକୁ । ସେ ଥିଲେ ସରକାରୀ କଣ୍ଟ୍ରାକ୍ଟର । ନିଜେ ଅବିବାହିତ; କିନ୍ତୁ ତାଙ୍କ ପୁତୁରା ଝିଆରୀ ଆତ୍ମୀୟମାନଙ୍କ ସହ ଏକ ବଡ କୋଠା ବୁଢ଼ୀନଦୀ କୂଳରେ ତିଆରି କରି ଥାଆନ୍ତି । ମୁଁ ତାଙ୍କୁ ସବୁ କଥା ଜଣାଇବାରୁ ସେ ମୋ ସହିତ ଘଟଣା ସ୍ଥଳକୁ ଆସିଗଲେ ଏବଂ ଉପସ୍ଥିତ କର୍ତ୍ତୃପକ୍ଷଙ୍କ ସହ କଥାବାର୍ତ୍ତା ହେଲେ । ଆରେଷ୍ଟ କରିବା ନିମନ୍ତେ ସେମାନେ ପ୍ରସ୍ତୁତ ହୋଇ ଆସିଥିଲେ; କୌଣସି କଥା ଶୁଣିବା ଅବସ୍ଥାରେ ନଥାନ୍ତି । ମୋ ଓ ବଂଶୀଧର ନାମରେ ଓ୍ୟାରଣ୍ଟ ନ ଥାଇ ବି ଗିରଫ କରଗଲ । ସନ୍ଧିବେଳ; ଆମେ ଜାମିନରେ ଖଲସ ହେବୁ ଏବଂ ମକଦ୍ଦମା ଲଢିବୁ ବୋଲି ମୁଁ କହିଲି । କିନ୍ତୁ ଡାକ୍ତର ଭୁକ୍ତା ଓ ଅନ୍ୟ ସାଥିମାନେ ଧରିବସିଲେ ମକଦ୍ଦମା ଲଢିବୁ ନାହିଁ କି ଜାମିନରେ ଖଲସ ହେବୁ ନାହିଁ । ଜେଇ ହେବ ତ ହୋଇ ଯାଉ । ସେମାନଙ୍କୁ ବୁଝାଇବା କଷ୍ଟ ହେଲ । ମୁଁ ଓ ବଂଶୀଧର ଜାମିନରେ ଖଲସ ହେଲୁ । ଗିରିଜାବାବୁ ଜାମିନଦାର ହେଲେ । ଏମାନେ ତ ଜେଇ ଯାଇ ଗୋଟିଏ ଆଶ୍ରାସ୍ଥଳ ପାଇଗଲେ । ମାତ୍ର ମୁଁ ରହିବି କେଉଁଠି । କଟକ ଗୁଉଳିଆଗଞ୍ଜର ଜଣେ ସାହୁ ସେଠି ଲଖ ବ୍ୟବସାୟ କରୁ ଥାଆନ୍ତି । ସେ ମତେ ବି ଚିହ୍ନି ନଥିଲେ । ତଥାପି ସାହସ କରି ମତେ ଘରେ ରଖିବା ନିମନ୍ତେ ସମ୍ମତ ହେଲେ । ମୁଗ୍ଳିକା ଦେଲେ ଯେ ମତେ କୁଆଡକୁ ଛାଡ଼ିବେ ନାହିଁ । ଅନୁମତି ମିଳିଲ । ମୁଁ ତାଙ୍କ ଘରେ ରହିଲି; କିନ୍ତୁ ମୋର ଖିଆପିଆ ହେଲ ଗିରିଜା ବାବୁଙ୍କ ଘରେ । ଏହାର ଅଧିକା କାହାଣୀ ପରବର୍ତ୍ତୀ ଅଧ୍ୟାୟରେ ମିଳିବ ।

卐

[ ୧୮ ]

# ଅନୁଗୁଳର ପରବର୍ତ୍ତୀ ଘଟଣା

ସମସ୍ତେ ଗିରଫ ହୋଇ ଯିବାରୁ କଂଗ୍ରେସ କାର୍ଯ୍ୟ ବନ୍ଦ ହୋଇଗଲା । ଉପସ୍ଥିତ ସମସ୍ୟା ହେଲା ମକଦ୍ଦମା । ବଂଶୀଧର ଦ୍ୱିବେଦୀଙ୍କୁ ଧମକ ଦେଇ ଗାଁକୁ ବିଦା କରି ଦିଆଗଲା । ତା' ଘର ଅନୁଗୁଳ ସହର ଠାରୁ ଅଳ୍ପ ଦୂରରେ । ମତେ ଜାମିନ ମିଳିଥିଲା । କୋର୍ଟ ଜାମିନ । ପୁଲିସ ସବୁ ଆଡକୁ ବିଗ୍ଭର କରି ଅନ୍ୟମାନଙ୍କୁ ନେଇ କୋର୍ଟରେ ହାଜର କରି ଜେଲକୁ ପଠାଇ ଦେଲେ । ମୁଁ ଜଣାଇଦେଲି ଯେ ମୁଁ ମକଦ୍ଦମା ଲଢିବି । ଜାମିନ ମିଳିବାରୁ ପୁଲିସ ମୋ ଠାରୁ ଗୋଟିଏ ନୋଟ୍ ବୁକ୍ ଓ ଜବାହାରଲାଲ ନେହରୁଙ୍କ ଲିଖିତ ସୋଭିଏଟ୍ ରୁଷ ବହିଟି ଯେ ନେଇ ଯାଇଥିଲେ, ଫେରସ୍ତ ଦେବା ଲାଗି କହିଲି । କୋର୍ଟର କେସ୍ ସହ ତାର କୌଣସି ସମ୍ପର୍କ ନ ଥିଲା । କିନ୍ତୁ ପୁଲିସ ସେ ନୋଟବୁକ ଓ ବହିକୁ ଜବରଦସ୍ତ ରଖି ନେଲେ । କୋର୍ଟ କାଗଜ ପତ୍ରରେ ମକଦ୍ଦମା ଅନ୍ତର୍ଭୁକ୍ତ କଲେ ନାହିଁ । ତାହା କରିଥିଲେ କୋର୍ଟରୁ ଛାଡ ଅଣା ଯାଇ ପାରିଥାନ୍ତା । ସେବ କାଳରେ ପୁଲିସ କିପରି ଜୁଲମ କରୁଥିଲେ ତାହାର ଏକ ଦୃଷ୍ଟାନ୍ତ । ଖାଲି ମାରିବା ବା ଗାଳିଦେବାଟାକୁ ଜୁଲମ କହିଲେ ହେବ ନାହିଁ । ମାନସିକ ଖାଦ୍ୟରୁ ଅନ୍ୟାୟରେ ବଂଚିତ କରିବା ମଧ୍ୟ ଜୁଲମ ।

ବିଗ୍ଭର ହେଲା ମକଦ୍ଦମା ଲଢାଯିବ କି ନାହିଁ । ମତେ ତ ବିନା କାରଣରେ ଜବରଦସ୍ତି ଧରିଛନ୍ତି ! ବହୁତ କଷ୍ଟରେ ଡାକ୍ତର ଭୁକ୍ତା ଓ ଅନ୍ୟ ଜେଲ ସାଥିଙ୍କି ମଗାଇଲୁ ଏବଂ ସେମାନେ ଓକିଲ ଦେବାକୁ ସମ୍ମତ ହୋଇଗଲେ ।

ସତ୍ୟାଗ୍ରହ ବନ୍ଦ ଥିଲେ ସୁଦ୍ଧା ତାଙ୍କ ମନରେ ସେହି ପୁରୁଣା କଥା । ଗାନ୍ଧୀଜୀ ତ କହିଥିଲେ, ବ୍ରିଟିଶ ସରକାର ଗିରଫ କଲେ, ଜେଲ ଯିବ । ଆଉ ଆମେ ପୁଣି ଲଢିବୁ କଅଣ ? ମତେ ତ ଅନୁଗୁଳରେ ଅଟକ ରଖାଗଲା । ମୁଁ କଟକ ଚିଠି ଲେଖିବାରୁ ଓକିଲ ସତ୍ୟ ନାରାୟଣ ସେନଗୁପ୍ତଙ୍କୁ ପଠାଗଲା ଏବଂ ରାଜକୃଷ୍ଣ ବୋଷ ବି ତାଙ୍କ ସହିତ ଆସିଥିଲେ । ସତ୍ୟ ନାରାୟଣ ବାବୁ ଖାଲି ନାମଜାଦା ଓକିଲ ନ ଥିଲେ । ଖଦଡଧାରୀ ଏବଂ ନିର୍ଭୟରେ କଂଗ୍ରେସକୁ ସାହାଯ୍ୟ କରୁଥିଲେ, ସଭା ସମିତିରେ ଯୋଗ ଦେଉଥିଲେ । ଆର୍ଥିକ ସାହାଯ୍ୟ ଦେବାକୁ ପଛାଉ ନ ଥିଲେ । ତାଙ୍କ ଭଉଣୀ କିରଣ ବାଳା ସେନ୍ ଓ ଝିଆରୀ ମଙ୍ଗଳା ସେନ୍ ଜେଲ ଯାଇଥିଲେ । ସେ ମୋଟରେ ତାଙ୍କର ପରିବାରକୁ ଏକ କଂଗ୍ରେସ ବା ଜାତୀୟବାଦୀ ପରିବାରରେ ପରିଣତ କରିଥିଲେ । ତାଙ୍କ ପରି ଲୋକଙ୍କର ତ୍ୟାଗ ଓ ସାହସ ସେତେବେଳେ କଂଗ୍ରେସ ସଂଗଠନ ଓ ଜାତୀୟ ଆନ୍ଦୋଳନକୁ ବଳ ଯୋଗାଇ ଥିଲା ।

ଡେପୁଟି କମିଶନରଙ୍କ କୋର୍ଟରେ ବିଚାର ହେଲା । ମୋ ବିରୁଦ୍ଧରେ ଚାର୍ଜସିଟ୍ କରଯାଇ ପାରିଲା ନାହିଁ । ମାତ୍ର ଅନ୍ୟମାନଙ୍କ ବିଚାର ଲାଗି ତାରିଖ ପଡ଼ିଲା । ରାଜକୃଷ୍ଣ ବାବୁ ରାଜବନ୍ଦୀମାନଙ୍କୁ ବୁଝାଇ ଦେଲେ ଲଢିବାଟା ସର୍ବଦା ବେଳେ କିଛି ନୀତି ଲଂଘନ ହେଉ ନାହିଁ । ଦ୍ୱିତୀୟ ତାରିଖକୁ କଟକର ଲଳିତ ମୋହନ ଦାସଗୁପ୍ତ ଯାଇଥିଲେ । ଆମ ସାଥିମାନଙ୍କୁ ତିନି ମାସ କରି ସଜା ହେଲା । ସତ୍ୟାଗ୍ରହ ଆନ୍ଦୋଳନ ବେଳେ ଜେଲ ନ ଯାଇ ସୁଦ୍ଧା ବ୍ରିଟିଶ ସରକାର ବିରୁଦ୍ଧରେ ଯିବାଟା କମ ସାହସର କଥା ନୁହେଁ । ଯେଉଁ ଓକିଲମାନେ ତାହା କରୁଥିଲେ ସେମାନେ ସରକାରର ବିରାଗ ଭାଜନ ହେଉଥିଲେ ଏବଂ ସରକାରୀ ଓକିଲ ବା ସରକାର ତରଫରୁ ମକଦ୍ଦମା ଆଦି ପାଉ ନ ଥିଲେ । ଏହା ବି ଏକ ତ୍ୟାଗ ବୋଲି ଧରାଯିବ । ପରବର୍ତ୍ତୀ କାଳରେ ଦୀନବନ୍ଧୁ ସାହୁଙ୍କ ପରି କେତେକ ବ୍ୟକ୍ତି ବରାବର ଓକିଲାତିରେ କଂଗ୍ରେସ ସପକ୍ଷରେ କାର୍ଯ୍ୟ କରିଥିଲେ । ସେଥିଯୋଗୁଁ ଦୀନବନ୍ଧୁ ସାହୁ, ମନ୍ତ୍ରୀ, ଆଡଭୋକେଟ ଜେନେରାଲ ଆଦି ଅଫିସ ପାଇଥିଲେ । ଅନେକେ ଓ ତାଙ୍କର ବିଶେଷ ସ୍ତାବକମାନେ ସେ ଜଣେ ସ୍ୱାଧୀନତା ସଂଗ୍ରାମୀ ବୋଲି କହି ଥାଆନ୍ତି । ମାତ୍ର ସେ କଥାଟି ଠିକ ନୁହେଁ । ସେ କେବେ ହେଲେ ଜେଲ ଯାଇ ନ ଥିଲେ ।

ଏହା ପରେ ମୁଁ ଅନୁଗୁଳ ଛାଡ଼ିଲି । ମାତ୍ର ପୁରୀରେ କଂଗ୍ରେସର ଅଧିବେଶନ ହେବା ନିମନ୍ତେ ଯୋଗାଡ ଚାଲିଥାଏ । ବାସ୍ତବିକ ଚୁକ୍ତିବେଳେ କଂଗ୍ରେସ ଅଧିବେଶନର ପ୍ରସ୍ତୁତି କାମରେ ସମସ୍ତେ ଲାଗି ପଡ଼ିଲେ । ଓଡ଼ିଶା ଭାଗ୍ୟରେ କରାଚୀ ଅଧିବେଶନ ପରେ ଏ ସୁଯୋଗ ମିଳିଥିଲା । କରାଚୀ ତ ଏବେ ପାକିସ୍ଥାନରେ । ସେତେବେଳକୁ ଭାରତ ଓ ପାକିସ୍ତାନ ଏକ ଅଖଣ୍ଡ ଭାରତ ଥିଲା । ୧୯୪୭ ମସିହାରେ ବ୍ରିଟିଶ ସରକାର ଦେଶକୁ ଦୁଇଭାଗ କରି ଦେଲେ । ଦେଶ କଟା ହୋଇଗଲା– ଭାଗ ଭାଗ ହୋଇ ବଣ୍ଟାଆର ହୋଇଗଲା । ବ୍ରିଟିଶ ଚକ୍ରାନ୍ତର ଆମେ ଶିକାର ହେଲୁ । ମହାତ୍ମା ଗାନ୍ଧୀଙ୍କ ବିରୋଧ ସତ୍ୱେ ଆମେ ବଣ୍ଟାଆରକୁ ସମର୍ଥନ କରିଗଲୁ । ଆମ ନେତାମାନଙ୍କ ମନରେ ସେତେବେଳକୁ ଦୁର୍ବଳତା ପଶିଥିଲା । ସାଂପ୍ରଦାୟିକ ଗଣ୍ଡଗୋଳରେ ସେମାନେ ବିବ୍ରତ ହୋଇପଡ଼ି ଯାହା ଘଟୁ ପଛକେ ବ୍ରିଟିଶ କେମିତି ଯାଉ ଏହି ଲୋଭରେ ପଡ଼ିଗଲେ । ଗାନ୍ଧୀଜୀ ରହିଗଲେ । ତାଙ୍କ ଅନୁଚରମାନଙ୍କର ପ୍ରତ୍ୟକ୍ଷ ବିରୋଧ କଲେ ନାହିଁ କିମ୍ବା ନୀରବ ସ୍ୱାଧୀନତାର ଉତ୍ସବ ପାଳନରେ ଯୋଗଦେଲେ ନାହିଁ ।

ପ୍ରକୃତ କର୍ମୀ ସବୁ ଜେଲରେ ରହିଗଲେ । ତେଣୁ ଗିରିଜା ଭୂଷଣ ଦତ୍ତ ସରକାରୀ କଣ୍ଟ୍ରାକ୍ଟର ଥାଇ ସୁଦ୍ଧା କଂଗ୍ରେସ ଅଧିବେଶନର ପ୍ରସ୍ତୁତିରେ ଲାଗି ପଡ଼ିଲେ । କଂଗ୍ରେସ କମିଟିର କାର୍ଯ୍ୟ ବି ଚାଲୁ କଲେ । ଅନୁଗୁଳର ସେବକାଳର ପରିସ୍ଥିତି ବିଷୟରେ ମୁଁ ଆଗରୁ ଲେଖିଛି । ପ୍ରକୃତ ସ୍ଥିତି ଗଡଜାତମାନଙ୍କ ଠାରୁ ଆହୁରି ଭୟାବହ ଥିଲା । ଗିରିଜା ବାବୁଙ୍କ ଘର ପୂର୍ବ ବଙ୍ଗରେ ଥିଲା । ଯାହାଙ୍କୁ ବଙ୍ଗାଲ୍ ବୋଲି କହୁଥିଲେ । ମୁଁ ତାଙ୍କ ଘରେ ବଙ୍ଗାଲ୍‌ମାନଙ୍କ ସୁସ୍ୱାଦୁ ରନ୍ଧା ଖାଇ ଭାରି ଖୁସି । ବନ୍ଦୀ–ଜାମିନ୍ ଅବସ୍ଥାରେ ଖାଉ ଥିବାରୁ ଏବେ ବି ତା ମନରେ ପଡୁଛି । ତାଙ୍କର ପରିବାର ଲୋକେ ଟିକିଏ ହେଲେ ଭୟ ନ କରି ସମସ୍ତ ଚର୍ଚ୍ଚା କରୁଥିଲେ । ସେଠି ବୁଢ଼ୀ ନଈରେ ଗାଧେଇ ତାଙ୍କ ଘରେ ଖାଇ ମୁଁ ଆସି ରହୁଥିଲି ଆମ ଗୁଉଳିଆଗଞ୍ଜ ସାହୁଙ୍କ ଘରେ ।

ଗିରିଜା ବାବୁ ଥିଲେ ବହୁତ ବଡ଼ କଣ୍ଟ୍ରାକ୍ଟର । ଫରେଷ୍ଟରେ ତାଙ୍କର ବେଶି କାରବାର । ପୂର୍ବବଙ୍ଗବାସୀ ହୋଇ ଥିବାରୁ ଓଡ଼ିଶାରେ କିଛି ନିଶ୍ଚୟତା ନ ଥାଏ । ତେବେ ତାଙ୍କର ବ୍ୟବହାର ଏତେ ଭଲ ଏବଂ ସେ ଏପରି ଉଦାର

ଥିଲେ ସେ ଖୁବ୍ ଲୋକପ୍ରିୟ ହୋଇ ଥିଲେ । ଏ କାର୍ଯ୍ୟରେ ସମସ୍ତ ସମୟ ଦେଇ ଲାଗିବାରୁ ବ୍ୟବସାୟ ବୁଡ଼ିଲା । ତାଙ୍କର ଆତ୍ମୀୟମାନେ ଦେଶକୁ ବାହୁଡ଼ି ଗଲେ । ସେ ରହିଲେ ଏକା– ଅବିବାହିତ ବି ଥିଲେ । କୋଠା ଘରଟି ବିକ୍ରୀ କରିବାକୁ ପଡ଼ିଲା । ସେ ଅନୁଗୁଳ ସହର ଏକ ପାଖକୁ କିଛି ଜମି କିଣି ସେଠାରେ କମଳା ବଗିଚା କରି ରହିଲେ । ଜୀବନର ଧାରା ବଦଳି ଗଲା । ବେଶ୍ ବୟସ ହୋଇ ଯାଇଥିଲା । ମନରେ ସେହି ପରି ଦୃଢ଼ତା ଥିବାରୁ ସିନା ଏପରି ଦଡ଼ମଡ଼ି ସହି ପାରିଲେ । ତେଣୁ ସ୍ୱାଧୀନତା ଆନ୍ଦୋଳନ ଖାଲି ଜେଲ ଯାତ୍ରୀଙ୍କ ଯୋଗୁଁ ନୁହେଁ– ଏହିପରି ତ୍ୟାଗୀ ପୁରୁଷମାନଙ୍କ ଯୋଗୁଁ ବଳଶାଳୀ ହୋଇଥିଲା । ମୋର ଯେତେଦୂର ସ୍ମରଣ ଅଛି ଗିରିଜା ବାବୁ ୧୯୩୬ ଆସେମ୍ବ୍ଲି ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ଭାବରେ ଜିତିକରି ଆସିଥିଲେ । ମାତ୍ର ବହୁଦିନ ବଂଚି ପାରିଲେ ନାହିଁ । ସେହି ଅନୁଗୁଳରୁ ପରେ ହୃଷିକେଶ ତ୍ରିପାଠୀ ଏମ୍. ଏଲ୍. ଏ. ହୋଇ ଆସିଲେ । ପ୍ରଥମେ ଯେଉଁମାନେ ଜେଲ ବରଣ କରିଥିଲେ, ସେମାନଙ୍କ ଭିତରେ ସେ ଥିଲେ ଅନ୍ୟତମ ।



[ ୧୯ ]

# ୧୯୩୨ ଓ ୩୩ର କାହାଣୀ

୧୯୩୨—୩୩ରେ ବ୍ରିଟିଶ ସରକାର ତରଫରୁ ପ୍ରଥମେ ଆକ୍ରମଣ ହେଲା । ମହାତ୍ମା ଗାନ୍ଧୀ ଗୋଲଟେବଲ ସମ୍ମିଳନୀରୁ ଫେରିବା ପୂର୍ବରୁ ସରକାର ଦମନ ମୂଳକ ଅସ୍ତ୍ର ପ୍ରୟୋଗ କଲେ । ତେଣୁ ପ୍ରତିଆକ୍ରମଣ ଲାଗି ପ୍ରସ୍ତୁତି ଲାଗି ବେଳ ନ ଥିଲା । ନିର୍ଦ୍ଦେଶ ଦେବାକୁ ପ୍ରାୟ କେହି ନ ଥିଲେ । କଂଗ୍ରେସ ସଭାପତି ଗିରଫ ହେଲେ ସେ ଜଣେ ଡ଼ିକ୍ଟେଟର ନିଯୁକ୍ତ କରି ଯାଉଥିଲେ । ଆନ୍ଦୋଳନ ମଧ୍ୟ ଲବଣ ସତ୍ୟାଗ୍ରହ ପରି ଗୋଟିଏ ନିର୍ଦ୍ଦିଷ୍ଟ ବାଟରେ ହେଲା ନାହିଁ । ବ୍ରିଟିଶ ସରକାର ଯେମିତି ସମଗ୍ର ଭାରତରେ କଂଗ୍ରେସ କମିଟି ଓ କଂଗ୍ରେସ ଲୋକଙ୍କ ଉପରେ ଆକ୍ରମଣ କଲା, ସେହିପରି ସବୁଆଡେ କଂଗ୍ରେସ ବିଭିନ୍ନ ପ୍ରକାର ଆନ୍ଦୋଳନରେ ଲିପ୍ତ ହୋଇଗଲେ । ଆଗ ଆନ୍ଦୋଳନର କିଛି ଅଭିଜ୍ଞତା ଥିଲା— ତଦ୍ରୂପ ଆଇନ ଭଙ୍ଗ ଚାରିଆଡେ ଲାଗିଗଲା । ଉଦାହରଣ ସ୍ୱରୂପ ସାରା ଦେଶରେ କଂଗ୍ରେସ ଓ ତାର ଶାଖା ଅନୁଷ୍ଠାନ ଗୁଡ଼ିକ ବେଆଇନ ଘୋଷଣା କରାଗଲା । କଂଗ୍ରେସ ଅଫିସ ଦଖଲ କରି ତହିଁରେ ତାଲା ପକାଇ ଦିଆଗଲା । ତେଣୁ ଏଭଳି ଅଫିସ ବା ଆଶ୍ରମ ଗୁଡ଼ିକ ସମର କ୍ଷେତ୍ରରେ ପରିଣତ ହେଲା । କଟକର ସାହେବ ବଜାରରେ ଥିବା ସ୍ୱରାଜ ଆଶ୍ରମକୁ ଦଖଲ କରିଥିଲେ । ସତ୍ୟାଗ୍ରହ ବାହିନୀ ଗଠିତ ହେଲା ଆଶ୍ରମ ପୁନର୍ଦଖଲ କରି ତା ଉପରେ କଂଗ୍ରେସ ପତାକା ଉଠାଇବା ନିମନ୍ତେ । ଦଳକୁ ଦଳ ସତ୍ୟାଗ୍ରହୀ ଆଶ୍ରମ ଦଖଲ କଲେ । ବହୁ ନାମାଜାଦା କଂଗ୍ରେସ ଲୋକ ମଧ୍ୟ ଏଥିରେ ଯୋଗ ଦେଇଥିଲେ । ସେଥିରେ ଥିଲେ ବାଙ୍କୀର ଗୋଲକ ବିହାରୀ ମହାରଣା ।

ସେତେବେଳେ ଲେନ୍ ସାହେବ ନାମକ ଜଣେ ଇଂରେଜ କଟକର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଥିଲେ । ସେ ନିଜେ ବ୍ୟାଟନ୍‌ରେ ସତ୍ୟାଗ୍ରହୀଙ୍କୁ ପିଟିବାକୁ ଆରମ୍ଭ କଲେ । କେତେକଙ୍କର ମୁଣ୍ଡ, ପିଠି ଓ କାନ୍ଧ ଫାଟି ଯାଇ ରକ୍ତ ବାହାରିଲା । ରୀତିମତ ସଂଘର୍ଷ । ଲେନ୍ ସାହେବର ଜିଦ୍ ଆଶ୍ରମରେ ପୂରାଇ ଦେବ ନାହିଁ । ସତ୍ୟାଗ୍ରହୀଙ୍କର ଜିଦ୍ ରକ୍ତନଦୀ ପଛକେ ବୋହିଯାଉ, ଆମେ ଆମ ଜାଗାକୁ ଶତ୍ରୁ କବଳରୁ ଉଦ୍ଧାର କରିବୁ । ଏ ସବୁ ମାଡ ସତ୍ତ୍ୱେ ସତ୍ୟାଗ୍ରହୀମାନେ ଯେଉଁ ଅଟଳ ବିଶ୍ୱାସ ମନରେ ପୋଷଣ କରି ବାରମ୍ବାର ଏହାର ସମ୍ମୁଖୀନ ହୋଇଛନ୍ତି, ତାର କୌଣସି ଦୃଷ୍ଟାନ୍ତ ହିଂସା ଲଢାଇରେ ମିଳିବ କି ? ଏହି ସତ୍ୟାଗ୍ରହ ଲଢ଼ାଇରେ ମୋର ଯେତେଦୂର ସ୍ମରଣ ହେଉଛି ଏବେ କଳାବିକାଶ କେନ୍ଦ୍ରର ପୂର୍ବତନ ସଂପାଦକ ବୈକୁଣ୍ଠ ନାଥ ମହାନ୍ତି ଥିଲେ । ବୈକୁଣ୍ଠଙ୍କ ଜୀବନ ଅତି ରୋମାଞ୍ଚକାରୀ । ସାଧାରଣ ସ୍କୁଲରୁ ପଢ଼ା ଛାଡ଼ି ବାନର ସେନା ଦଳରେ ଯୋଗ ଦେଇଥିଲେ । ବେତମାଡ ଖାଇ ହାତ ପାପୁଲି ଫାଟି ଯାଇଛି । ତଥାପି ସେ ମରଣବାହିନୀ ଶପଥ କଲା ପରି ବାରମ୍ବାର ଜେଲ ଓ ଅନ୍ୟ ନିର୍ଯ୍ୟାତନା ଭୋଗରେ କେବେହେଲେ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ଏହି ସତ୍ୟାଗ୍ରହ ଭିତରେ ବେଆଇନ କଂଗ୍ରେସ ଅଧିବେଶନ ଗୋଟିଏ ପଣ୍ଡିତ ମଦନ ମୋହନ ମାଳବ୍ୟଙ୍କ ସଭାପତିତ୍ୱରେ ଓ ଅନ୍ୟଟି ବଙ୍ଗଳାର ପ୍ରସିଦ୍ଧ ନେତା ଯତୀନ୍ଦ୍ର ମୋହନ ସେନଗୁପ୍ତଙ୍କ ସ୍ତ୍ରୀ ନେଲି ସେନ୍‌ଗୁପ୍ତଙ୍କ ସଭାପତିତ୍ୱରେ ହୋଇଥିଲା । ସେଥିରେ ବୈକୁଣ୍ଠ ଓ ତାଙ୍କ ସାଥି ମୁରଲୀଧର ପରିଜା ଓ ବଙ୍କିମ ବିହାରୀ ସିଂହ ଯୋଗ ଦେଇଥିଲେ । ବୈକୁଣ୍ଠ ସାରା ଭାରତରେ ପଦଯାତ୍ରା କଲେ । ବଙ୍କିମ, ମୁରଲୀ ଓ ରାଧାଶ୍ୟାମ ପରିଜା ବମ୍ବେରେ ପୁଣି ଗିରଫ ହେଲେ । ଶେଷକୁ ବମ୍ବେରେ ହିଁ ସେମାନେ ବସବାସ ବାନ୍ଧିଲେ । ବଙ୍କିମ ସାମାନ୍ୟ ବ୍ୟବସାୟ କରୁଥିଲେ, ମରି ଗଲେଣି । ତାଙ୍କ ଘର କଟକ ଜିଲ୍ଲା କେଶନଗରରେ– ପ୍ରଖ୍ୟାତ ଗାନ୍ଧୀବାଦୀ ବ୍ରଜ ମୋହନ ସିଂହଙ୍କର ସେ ସାନ ଭାଇ । ତାଙ୍କର ଗୋଟିଏ ପୁଅ ରଣା ଓ ବଙ୍କିମ ସ୍ତ୍ରୀ ଏବେ ମୁରଲୀଙ୍କ ସାଙ୍ଗରେ ବମ୍ବେରେ ଅଛନ୍ତି । ଓଡ଼ିଶାକୁ ଆଉ ଫେରିଲେ ନାହିଁ । ରାଧାଶ୍ୟାମ ବିରଳା ସାଇକଲରେ ଚାକିରୀ କରି ଅବସର ପରେ ନିଜ ଗ୍ରାମ କୁଜଙ୍ଗକୁ ଫେରି ଆସିଲେ । ଏଇଠାରେ ତାଙ୍କର ମୃତ୍ୟୁ ଘଟିଲା । ତାଙ୍କର ସାନ ଝିଅକୁ ମୁରଲୀ ପାଳି ନିକଟରେ ବିବାହ କରି ଦେଇଛନ୍ତି । ଆଉ ଏକ ସାଥି ସୁଧାଂଶୁ ମୋହନ ମୈତ୍ର ବି ସେମିତି ବମ୍ବେରେ ଅଟକି ଗଲେ । ସେଠାରେ ବନ୍ଦର ଶ୍ରମିକଙ୍କ

ସଂଗଠନରେ ଲିପ୍ତ ରହି ନେତୃସ୍ଥାନକୁ ଉଠି ଥିଲେ । କେତେଥର ବନ୍ଦର ଶ୍ରମିକଙ୍କ ନେତୃତ୍ୱ ନେଇ ଜେଲ ଭୋଗିଛନ୍ତି ଏବଂ ସରକାରଙ୍କୁ ନାନାଭବରେ ଦହଗଞ୍ଜ କରିଛନ୍ତି ।

ଏମାନଙ୍କ ଭିତରୁ ବୈକୁଣ୍ଠ ଥିଲେ ସଂଗୀତ ଓ ସାହିତ୍ୟପ୍ରେମୀ । ସେ ଫେରି ଆସିଲେ ଓଡ଼ିଶାକୁ ଭ୍ରମଣ ଶେଷ କରି । ଭ୍ରମଣ ବୃତ୍ତାନ୍ତ ପୁସ୍ତକ ଆକାରରେ ଲେଖିଛନ୍ତି । ତାହା ବ୍ୟତୀତ ଆହୁରି କେତେକ ପୁସ୍ତକ ଓ ଜାତୀୟ ସଂଗୀତ ରଚନା କରିଛନ୍ତି । ଆମେ ସବୁ କଂଗ୍ରେସ ଛାଡ଼ି ସ୍ୱତନ୍ତ୍ର ସୋସଲିଷ୍ଟ ପାର୍ଟି ଗଠନ କରିବାରୁ ସେ ତହିଁରେ ଯୋଗ ଦେଲେ । ବହୁ ବିଷୟରେ ଅଭିଜ୍ଞତା ରହିଥିଲା । ସୋସଲିଷ୍ଟ ପାର୍ଟିର ପ୍ରାର୍ଥୀ ହୋଇ ଦୁଇଥର ଓଡ଼ିଶା ବିଧାନ ସଭାର ସଭ୍ୟ ହେଲେ ବଡ଼, ପ୍ରତିପତ୍ତିଶାଳୀ କଂଗ୍ରେସ ପ୍ରାର୍ଥୀଙ୍କୁ ହରାଇ । ସେ ନିଜର ଲୋକ ପ୍ରିୟତା ନିଜ ଗୁଣରୁ ଲାଭ କରିଛନ୍ତି । ତାଙ୍କ ବିଷୟ ଏତେ ବିସ୍ତୃତ ଭବରେ ଲେଖିବାର କାରଣ ହେଉଛି ଏହି ଜେଲ ଯାତ୍ରୀଙ୍କ ଭିତରୁ ଏହିପରି କେତେ ରତ୍ନ ବାହାରିଛନ୍ତି ।

ସେମିତି ବିନୋଦ କାନୁନ୍‌ଗୋଙ୍କ ବିଷୟ ବି ବିଚାରକୁ ନିଆଯାଇ ପାରେ । ସେ ମୋର ବାଲ୍ୟ ସାଥି; ଏକା ସ୍କୁଲରେ ଏକା କ୍ଲାସରେ ପଢୁଥିଲୁ । ଏକାଠି ପଢ଼ା ଛାଡ଼ିଲୁ ଏବଂ ସ୍ୱରାଜ୍ୟ ଆନ୍ଦୋଳନରେ ଯୋଗ ଦେଲୁ । ୧୯୩୦ ଓ ୧୯୩୨ରେ ଏକ ସାଙ୍ଗରେ ଏକା ଜେଲରେ ରହିଲୁ । ସେ ତ ତାଙ୍କ ଜୀବନୀ କାହାଣୀ ଦୁଇଟି ପୁସ୍ତକରେ ଲେଖି ସାରିଲେଣି । 'ଜ୍ଞାନମଣ୍ଡଳ'ର ପ୍ରଣେତା ଭବରେ ଖ୍ୟାତି ଲଭିଛନ୍ତି । ଭରତ ସରକାର ତାଙ୍କୁ ଏବେ 'ପଦ୍ମଶ୍ରୀ' ଉପାଧି ଦେଇଛନ୍ତି, ସାହିତ୍ୟ ସାଧନା ନିମନ୍ତେ । ଏନ୍‌ ସାଇକ୍ଲୋପୋଡ଼ିଆ ପ୍ରଣୟନ ଦିଗରେ ସେ ସାରା ଭରତରେ ଜଣେ ପ୍ରତିଷ୍ଠିତ ଲୋକ ହୋଇ ସାରିଲେଣି । ଜେଲ ଭିତରେ ରହି ସେଇଠି ତାଙ୍କ ଜ୍ଞାନ ଚକ୍ଷୁର ବିକାଶ ଘଟିଲା । ସ୍ୱଚେଷ୍ଟାରେ ସେ ଅପୂର୍ବ ଯଶ ଲାଭ କରିଛନ୍ତି । ତେଣୁ ଜେଲ ଜୀବନ ବ୍ୟର୍ଥ ଯାଇ ନାହିଁ ।

୧୯୩୨–୩୩ରେ ଜେଲଯାତ୍ରା ମାନ୍ଦା ହୋଇଗଲା । କ୍ରମେ ଆନ୍ଦୋଳନ ଶିଥିଳ ହୋଇଗଲା । ଜେଲ ଭୋଗିଥିବା ସମସ୍ତଙ୍କୁ ପୂରା ଜେଲ ଭୋଗ କରିବାକୁ ପଡ଼ିଲା । ଯେଉଁମାନେ ଫେରିଲେ ଅଧିକାଂଶ ଅନ୍ୟ କିଛି କାମ ନ ଦେଖି ନିଜ ଧନ୍ଦାକୁ ଫେରିଲେ ଏବଂ ଅନ୍ୟ ବ୍ୟବସାୟ ଖୋଜି ସେଥିରେ ପ୍ରବେଶ କରି ରହିଗଲେ । ଆମେ କେତେଜଣ ସେହିଦିନୁ ପୂରା ସମୟ ଦେଇ ରହିଗଲୁ ସାଧାରଣ କ୍ଷେତ୍ରରେ ।

卐

[ ୨୦ ]

# ୧୯୩୨-୩୩ର ଆଉ କେତେ କଥା

୧୯୩୨—୩୩ ବେଳକୁ ଆନ୍ଦୋଳନ ସିନା ମାନ୍ଦା ପଡ଼ିଗଲା । ଜେଲ ଯାତ୍ରା ବନ୍ଦ ହୋଇ ନ ଥାଏ । ଛୋଟ ଛୋଟ ଘଟଣାରେ ସଂଘର୍ଷ ଲାଗିଥାଏ । ଆମେ ସବୁ ମୁଖ୍ୟତଃ କଟକରେ କାମ କରୁଥାଉ । ପାଟନା କ୍ୟାମ୍ପ ଜେଲରୁ ୧୯୩୨ ମଧ୍ୟ ଭାଗରେ ପାଞ୍ଚ ଛଅ ମାସ ଜେଲ ଭୋଗି ଫେରିଲା ପରେ ଗାଁରେ ବାପା ବୋଉଙ୍କୁ ଭେଟି ଆସି ମୁଁ ପୁଣି ଲାଗିଗଲି ବ୍ରିଟିଶ ବିରୋଧୀ କାର୍ଯ୍ୟରେ । ମୋ ଉପରେ ତିନୋଟି କାର୍ଯ୍ୟର ଦାୟିତ୍ୱ ଦିଆଗଲା । (୧) 'ବିପ୍ଳବୀ' ନାମକ ସାପ୍ତାହିକ ବେଆଇନ ବୁଲେଟିନ୍ ବାହାର କରିବା ଓ ତାର ବଣ୍ଟନ ବ୍ୟବସ୍ଥା (୨) ଏଠା ବେଆଇନ କଂଗ୍ରେସ ଅଫିସରୁ ବାହାରୁ ଥିବା ଚିଠି ପତ୍ର କେମିତି ବିଭିନ୍ନ ଅଞ୍ଚଳକୁ ସ୍ୱାଧୀନ ପୋଷ୍ଟ ଅଫିସ ଜରିଆରେ ପ୍ରେରଣ ହୋଇ ପାରିବ (୩) ଅଳ୍ପ ଯେ କେତେଜଣ ସ୍ୱେଚ୍ଛାସେବକ ଥିଲେ, ସେମାନଙ୍କୁ କାମରେ ଲଗାଇବା ।

ଏ ବୁଲେଟିନ୍‌ଟି ସୁତାହାଟ ତେଲେଙ୍ଗା ଦଳି ସାହି ଗଳିରେ ଠିକ ଜେଲ କାଛକୁ ଲାଗି ଏକ ଘରୁ ବାହାରୁ ଥିଲା । କିଛିଦିନ ପରେ ପୁଲିସର ସେଠାରେ ନଜର ପଡ଼ିବାର ସନ୍ଦେହ ଉପୁଜିବାରୁ କାଠଗଡା ସାହି ଛକ ଉପରେ ଏକ ଦୋତାଲା ଘର ତଳ ମହଲର ଗୋଟିଏ ରୁମ୍‌ରେ କାର୍ଯ୍ୟ କଲୁ । ଛୋଟିଆ ସାଇକ୍ଲୋ-ଷ୍ଟାଇଲ ମେସିନ ଟିଏ ଥାଏ । କାଗଜ କାଳି କିଣା ହୋଇ ଆସେ । ମୋର କାମ ଥାଏ ବୁଲେଟିନ୍ ଲେଖିବା । ଛପାଇବା ଲାଗି ଅନ୍ୟ ସାଥି ଥାଆନ୍ତି । ସେମାନେ କେବେ ବାହାରେ ଅନ୍ୟ କାମରେ ସଂପୃକ୍ତ ହୁଅନ୍ତି ନାହିଁ । ଅବଶ୍ୟ ବିଭିନ୍ନ ଯାଗାକୁ

ଯେଉଁ ସବୁ ବିତା ପଠାଯାଏ, ତାକୁ ନେଇ ବିଭିନ୍ନ ଯାଗାକୁ ଯାଆନ୍ତି । ମୁଁ ଏହାର ଗୋଟାଏ ଖୁବ ଉତ୍ତମ ବ୍ୟବସ୍ଥା କରି ପାରିଥିଲି । ମୋର ଜଣେ ଆତ୍ମୀୟ ଯଦୁନାଥ ଦ୍ୱିବେଦୀ ମେଲ ଭ୍ୟାନରେ କାର୍ଯ୍ୟ କରୁଥିଲେ । ତାଙ୍କୁ ଯାଇ କହିବାରୁ ସେ କଟକ, ପୁରୀ ଓ ବାଲେଶ୍ୱରରେ ଛୋଟ ଛୋଟ ଷ୍ଟେସନରେ ଥିବା ଗୁହା ଦୋକାନୀଙ୍କ ସହ ସଂପର୍କ କରାଇ ଦେଲେ । ବୁଲେଟିନ ପ୍ୟାକେଟ ସେମାନଙ୍କ ପାଖକୁ ପଠାଇ ଦିଆ ଯାଉଥିଲା । ଆଗରୁ ବ୍ୟବସ୍ଥା ଥାଏ, ସେ ଅଞ୍ଚଳର ସତ୍ୟାଗ୍ରହୀ ଆସି ତାଙ୍କଠୁ ନେଇ ବଣ୍ଟାବର୍ଣ୍ଟି କରନ୍ତି । ବେଳେ ବେଳେ ମେଲ ଭ୍ୟାନରେ ତାଙ୍କ ହାତରେ ଦେଇଦେଲେ ସେ ସଂପୃକ୍ତ ସ୍ଥାନରେ ଫୋପାଡ଼ି ଦିଅନ୍ତି । ମେଲ ତ ସବୁ ଯାଗାରେ ଅଟକେ ନାହିଁ । ଅନ୍ଧାର ଗତିରେ ଯାଏ । ଷ୍ଟେସନରେ ଲୋକ ବାକ ନ ଥାନ୍ତି । କେଉଁ ଦିନ ଆସିବ, ଗୁ ଦୋକାନୀକି ଜଣାଥାଏ, ସେ ଜଗି ଥାଏ ଏବଂ ପ୍ୟାକେଟ ଫୋପାଡ଼ି ଦେଲେ ଗୋଟାଇ ରଖେ । ଯେଉଁଦିନ ମେଲ ସୁବିଧା ନ ଥାଏ ସେଦିନ ଗତି ପାସେଞ୍ଜର ଗାଡ଼ିରେ ଆମ ଭିତରୁ ଜଣେ ନେଇକରି ଯାଏ । ବେଳେ ବେଳେ ଟ୍ରେନରେ ନିଦ ହୋଇଗଲେ ବଡ ଅଡୁଆ ପରିସ୍ଥିତିରେ ପଡ଼ିବାକୁ ହୁଏ । ଥରେ ଯାଜପୁର ରୋଡ ଷ୍ଟେସନରେ ଏକ ପ୍ୟାକେଟ ଦେବା ନିମନ୍ତେ ମୁଁ ଗଲି । ଶୋଇ ପଡ଼ିଲି । ନିଦ ଭାଙ୍ଗିଲା ବେଳକୁ ଆସି କେନ୍ଦୁଆପଡା ଷ୍ଟେସନ । ବଡ ଅସୁବିଧାରେ ପଡ଼ିଲି । ଏମିତି ବହୁବାର ଅନ୍ୟ ସାଥିମାନେ ପଡ଼ି ଯାଇଥାନ୍ତି । ମାତ୍ର ସେତେବେଳେ ଗୋଇନ୍ଦା ପୁଲିସର ବ୍ୟବସ୍ଥା କିଛି କଠିନ ହୋଇ ନ ଥାଏ । ଜଣେ କି ଦି ଜଣ ଗୋଇନ୍ଦା କନେଷ୍ଟବଲ କଟକରେ ଥାଆନ୍ତି । ତାଙ୍କ ଭିତରୁ ସଲିମ୍ ଥିଲା ସବୁ ଠାରୁ ଜଣା ଶୁଣା । ସେ ମୃତ କି ଜୀବିତ କହି ପାରୁ ନାହିଁ । ଗୋଇନ୍ଦା ବୋଇଲେ ସେ ନିଜ ପୋଷାକରେ ଥାଆନ୍ତି; ସରକାରୀ ପୋଷାକ ପିନ୍ଧନ୍ତି ନାହିଁ । କଟକ ଷ୍ଟେସନ ଟ୍ରେନ ଆସିଲା ବେଳେ ଜଗନ୍ତି । କିଏ ଖଦଡ଼ିଆ କଂଗ୍ରେସ ବାଲା ଆସିଲା ତାହା ଟିପି ଆଣନ୍ତି । ଉପର ଅଫିସରଙ୍କୁ ରିପୋର୍ଟ ଦିଅନ୍ତି । ଆମ ଏକ କାମ ହେଉଛି ଆମେ ଯେ କେତେ ଜଣ କାର୍ଯ୍ୟରେ ଥାଉ, ତାଙ୍କୁ ଅନୁଧାବନ କରିବା ଏବଂ ଗତି ବିଧି ଲକ୍ଷ୍ୟ କରିବା । ସଲିମ୍ ସାଙ୍ଗକୁ ହାଥୀ ବୋଲି ଆଉ ଜଣେ ଥିବା ପରି ମନେ ପଡୁଛି । ହସ ମାଡେ, ସେମାନେ ଯେପରି ତୁମର ଅନୁଧାବନ କରନ୍ତି । କେଉଁଠିକି ଯାଉଛ ଜାଣିବା ପାଇଁ ସାଇକଲ ପଛେ ପଛେ ପ୍ରାୟ ସାଇକଲ ପାଖକୁ ଲଗାଇଲା ଭଳି ଚଳାନ୍ତି । ବେଶ୍ ଛକାପଞ୍ଝା ଗୁଲ ଖେଳା ଯାଏ, କେମିତି ତା ଆଖି ଆଗରୁ ଖସି ଯିବା ପାଇଁ ।

ଘରି ହଇରଣ ହେଲେ ଆଗରୁ ବ୍ୟବସ୍ଥା କରି ଛକ ମୁଣ୍ଡରେ ଜଣେ ସଲିମ୍ ଭାଇ ବୋଲି ଡାକି ଦେଲେ ସେ ଓହ୍ଲାଇ ପଡେ । ଏଥି ଭିତରେ ଆମେ ଚମ୍ପଟ ମାରୁ । ସେ ଏମିତି ଜଣା ଶୁଣା ଗୋଇନ୍ଦା ହୋଇଗଲା ଯେ ଆମେ ଥିବା ଅଞ୍ଚଳକୁ ଯଦି ସେ ଆସେ, ଦୋକାନୀ ବା ଅନ୍ୟ ବାସିନ୍ଦା ଆଖି ମାରି ଦିଅନ୍ତି । ଆମ ତେଲଙ୍ଗା ବଜାର ଘର ଆଗରେ ଏକ ପକା ପିଣ୍ଡାରେ ଜଗି ବସନ୍ତି । ଭେରୁ ବୋଧହୁଏ ତାର ଡ଼ିଉଟି ପଡେ । ସେ ଆସିବା ଆଗରୁ ମୁଁ ଶେଯରୁ ଉଠି ପଳାଇ ଯାଏ 'ବିପ୍ଳବୀ' ଅଫିସକୁ । ସେଠି ସବୁ କାମ ସାରି ଖରବେଳେ ଘରକୁ ଫେରିବା ବେଳକୁ ମତେ ପାଆନ୍ତି । ଆଉ ପିଛା ଛାଡନ୍ତି ନାହିଁ ରତିରେ ଘରକୁ ନଫେରିଲା ପର୍ଯ୍ୟନ୍ତ । ଏହି ପ୍ରକାର ବାଁ କାଳିଆ ଦେଇ କାମ କରା ଯାଏ । ଆମର ସୁତାହାଟ ଘରେ ଯେ ବୁଲେଟିନ୍ ଛପାଉଥିଲେ ଓ ବାଣ୍ଟୁ ଥିଲେ, ତାଙ୍କ ନାମ ଥିଲା ଶ୍ୟାମ । ବହୁତ କଷ୍ଟ ଭୋଗିଛନ୍ତି; ତ୍ୟାଗ କରିଛନ୍ତି; ଜେଲ ବି ଯାଇଛନ୍ତି, ତାଙ୍କର ଅବଦାନ କିଛି ଉଣା ବିଗ୍ଭରିବା ଉଚିତ ନୁହେଁ । ତାଙ୍କ ପରି ବହୁ ଅଶ୍ରୁତ ସାଥିଙ୍କର ଅମୂଲ୍ୟ ଯୋଗଦାନ ହିଁ ସ୍ୱରାଜ ଆନ୍ଦୋଳନକୁ ଶକ୍ତିଶାଳୀ କରିଥିଲା । ତାଙ୍କର ପୂରା ନାମ ମୁଁ ପାଶୋରି ଯାଇଛି ଏବଂ ସେ କେଉଁଠି ଅଛନ୍ତି, ତାର କୌଣସି ସମ୍ବାଦ ବି ରଖି ନାହିଁ । ମୋଟାମୋଟି ବୁଲେଟିନ୍ ବାହାର କରିବା, ବୁଲେଟିନର ବଣ୍ଟନ ଓ ଚିଠି ପତ୍ର କାରବାର ଲାଗି ଗୋଟାଏ ବିଧିବଦ୍ଧ ଗୁପ୍ତ ସଂଗଠନ ଛିଡା ହୋଇଗଲା । କିଛି ଚାନ୍ଦା ସଂଗ୍ରହ କରି ଅନ୍ୟ ସାଥିମାନଙ୍କ ଲାଗି ବ୍ୟବସ୍ଥା ହୋଇଥିଲା । ମୋର ତ ମାମୁଁ ଘରେ ଭୋଜନ ଓ ଶୟନ । ଆଉ ଚିନ୍ତା କଅଣ ! ଭବିଷ୍ୟତର ବି କିଛି ପରୁଆ ନ ଥାଏ । ଜେଲ ଯିବା ଲାଗି ତ ଏ ସବୁ କାର୍ଯ୍ୟ । ଜେଲକୁ ଗଲେ ସେଠାରେ ତିନିବେଳା ଖାଦ୍ୟର ବ୍ୟବସ୍ଥା ରହିଛି । ଯେଉଁମାନେ ଏଭଳି କାର୍ଯ୍ୟରେ ନିଯୁକ୍ତ ଥିଲେ, ସେମାନେ ଯଦି ତିଳେ ହେଲେ ଭବିଷ୍ୟତର ଚିନ୍ତା ମନରେ ପୂରାଉ ଥାଆନ୍ତେ, ଏପରି କାର୍ଯ୍ୟ ସବୁ କରି ପାରୁ ଥାଆନ୍ତେ କି । ମୋର ମନେ ଅଛି ବହୁଦିନ ମୁଁ ଖଣ୍ଡିଏ ଲୁଗା, ହାଫ୍ କାମିଜ ଓ ଗାମୁଛାରେ କଟାଇଛି । ଲୁଗା ଗାଧୋଇ ଶୁଖିଲେ ଯାଇ ବାହାରକୁ ଯିବା କଥା ।

ବିଲାତ ପାର୍ଲିମେଣ୍ଟରେ ଏତିକିବେଳେ ଗାନ୍ଧୀ ଆନ୍ଦୋଳନ ସମ୍ବନ୍ଧରେ ଖୁବ ତର୍କ ଲାଗିଥାଏ । ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ଉପରେ ଅକଥିତ ଅତ୍ୟାଗ୍ଭରର ଅଭିଯୋଗ କରା ଯାଉଥିଲା । ଶେଷକୁ ଭାରତରେ ସତ୍ୟାଗ୍ରହ ଆନ୍ଦୋଳନର ତଦନ୍ତ

କରିବା ନିମନ୍ତେ ଲେବର ପାର୍ଟି ତରଫରୁ ଏକ ତିନି ଜଣିଆ ପାର୍ଲିମେଣ୍ଟ ଟିମ୍ ଆସିଥିଲେ ଭରତ ସାଗ ବୁଲି ଅନୁସନ୍ଧାନ କରିବା ନିମନ୍ତେ । ସବୁ ସଭ୍ୟଙ୍କର ନାମ ମୋର ମନେ ନାହିଁ । ମିସ୍ ଉଇଲକିନ୍‌ସନ୍ ସେଥି ଭିତରୁ ଜଣେ ଥିଲେ । ଭି. କେ. କୃଷ୍ଣ ମେନନ୍ ପାର୍ଲିମେଣ୍ଟ ସଭ୍ୟ ନ ଥିଲେ; ମାତ୍ର ଲେବର ପାର୍ଟିର ସଭ୍ୟ ହିସାବରେ ଭରତୀୟ ଟିମ୍ ସାଙ୍ଗରେ ଆସିଥିଲେ । ସେମାନଙ୍କୁ କଟକ କିଏ ଅଣାଇ ଥିଲା ଓ କିପରି ଆସିଥିଲେ ଏତେ ବର୍ଷର ଘଟଣା ଭୁଲି ଯାଇଛି । ତେବେ ମିସ୍ ଉଇଲକିନ୍‌ସନ୍‌ଙ୍କ ପାଖରେ ମତେ କୁହାଗଲା ଯେ ମୁଁ ହେଉଛି 'ବିପ୍ଳବୀ' ପୋଷ୍ଟ ମାଷ୍ଟର ଢେଙ୍କେନାଲର ଓଡ଼ିଶାର । ଗୋପନରେ ଆମର ଡାକ ଓ ବଣ୍ଟା ଆଗ ବ୍ୟବସ୍ଥା କେମିତି ହୋଇଛି, ତାହାର ଟିକିନିଖି କଥା ମୋ ଠାରୁ ସେ ବୁଝି ନେଇ ଥିଲେ । ଭରତର ସେ ଜଣେ ଥିଲେ ଅତି ପ୍ରଭବଶାଳୀ ଇଂରେଜ ବନ୍ଧୁ ।



[ ୨୧ ]

# ରାସ୍ତାରେ ଘୋଷଣା ଓ ଜେଲଦଣ୍ଡ

ମୋ ଉପରେ ଦିଆ ଯାଇଥିବା ତୃତୀୟ ଦାୟିତ୍ୱଟି ଥିଲା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ସତ୍ୟାଗ୍ରହୀ ଯେ ଥିଲେ ସେମାନଙ୍କୁ ଜେଲ ଯିବା ନିମନ୍ତେ କାର୍ଯ୍ୟକ୍ରମ ତିଆର କରିବା ଓ ପ୍ରସ୍ତୁତ କରିବା । କଟକ ମାରୁଆଡ଼ି ପଟିରେ ପ୍ରାୟ ସବୁ ଲୁଗା ଦୋକାନ ଓ ବେପାରୀ ଥିଲେ । ବିଦେଶୀ ଲୁଗା ବର୍ଜନ ଥିଲା ଆମ ଆନ୍ଦୋଳନର ଏକ ପ୍ରଧାନ ଅଙ୍ଗ । ମାରୁଆଡ଼ି ପଟିରେ ପ୍ରାୟ ସବୁ ଦୋକାନରେ ବିଲାତି ଲୁଗାକାରବାର ବନ୍ଦ ହୋଇ ଯାଇଥିଲା, ପୂର୍ବର ଆନ୍ଦୋଳନ ଫଳରେ । ମାତ୍ର ବଡ ବରଗଛ ତଳେ ଗୋଟିଏ ଦୋକାନ କଂଗ୍ରେସ କଥା ନ ଶୁଣି ବିଲାତି ଲୁଗା ଓ ବିଦେଶୀ ପୋଷାକ ବିକ୍ରୀ କରିବାରେ ଲାଗିଲା । ତାହା ସହିତ ପୁଲିସର ବି ସନ୍ଧା ଥିଲା । ଆମର ସ୍ଥିର କରଗଲା ଉକ୍ତ ଦୋକାନରେ ପିକେଟିଂ କରଯିବ । କେତେକ ସତ୍ୟାଗ୍ରହୀ ସେଥିଲାଗି ପ୍ରସ୍ତୁତ ହୋଇଗଲେ । ସନ୍ଧ୍ୟାରେ ବିକ୍ରୀବଟା ଜମିଲା ବେଳେ ସତ୍ୟାଗ୍ରହୀ ପିକେଟିଂରେ ବସିଲେ । ପ୍ରାୟ ଘଣ୍ଟାଏ ବସନ୍ତି କି ନାହିଁ, ପୁଲିସ ସେମାନଙ୍କୁ ଗିରଫ କରି ଥାନାକୁ ନେଇଯାଏ ଏବଂ ବହୁତ ଉତ୍ତର ରାତିରେ ଖଲାସ କରି ଦିଏ । ଏଭଳି ଭାବରେ ଦୋକାନୀର କାରବାରରେ କିଛି ଆଞ୍ଚ ଆସିଲା ନାହିଁ । ତେଣୁ ଆମର ସ୍ଥିର ହେଲା ପିକେଟିଂ କରୁଥିବା ଲୋକଙ୍କୁ ଯେତେବେଳେ ପୁଲିସ ଧରିବାକୁ ଆସିବ ସେମାନେ ସେଠାରୁ ହଟିବେ ନାହିଁ । ପୁଲିସ ଉଠାଉଠି କଲେ ଲୋକ ଜମିବେ; ଜାଣିବେ ଯେ ଏଠି ବିଲାତି ଲୁଗା ବିକ୍ରୀ ହେଉଛି । ଦୋକାନୀ ଅପଦସ୍ତ ହେବ । ଲୋକେ କିଣିବାକୁ ଆସିବେ ନାହିଁ । ପ୍ରଥମ ଦିନ ସେପରି କରଗଲା । ପୁଲିସ ଆସି ଟଣା ଟଣି କରିବାରୁ ସତ୍ୟାଗ୍ରହୀମାନେ ଉଠିଲେ ନାହିଁ । ଧକ୍କା ଧକ୍କି ଲାଗିଲା ।

ଫଳରେ ଲୋକ ଜମି ଯିବାରୁ ଦୋକାନୀ ବନ୍ଦ କରି ଚାଲିଗଲା । ମୁଁ ଖଣ୍ଡେ ଦୂରରେ ସଂଘର ମେଡ଼ିକାଲ ହଲ ସାମନାରେ ଯେଉଁ ଖଦଡ ଭଣ୍ଡାର ଥାଏ, ସେଠାରେ ବସି ଅବସ୍ଥା ଲକ୍ଷ୍ୟ କରୁଥାଏ । ଦ୍ୱିତୀୟ ଦିନ ଆମର ସତ୍ୟାଗ୍ରହୀ ପୁଣି ଅହିଂସକ ପ୍ରତିରୋଧ କଲେ । ତାଙ୍କୁ ମାଡଦେଇ ପୁଲିସ ଗିରଫ କରିବା ହେତୁ ଲୋକଙ୍କ ଆଡୁ ପ୍ରତିବାଦ ହେଲା । ଦୋକାନୀର କାରବାର ବନ୍ଦ ହୋଇଗଲା । ସେ ତାଲା ପକାଇବାକୁ ବାଧ୍ୟ ହେଲା । ଉପସ୍ଥିତ ଲୋକମାନେ ସେହି ଠାରେ ସ୍ଥିର କରିଦେଲେ ଏ ଦୋକାନରୁ ଆଉ କେହି କିଛି କିଣିବେ ନାହିଁ । ପୁଲିସ ଓ ଦୋକାନୀର ଷଡଯନ୍ତ୍ର ବ୍ୟର୍ଥ ହେଲା । ଏଥିରେ ପୁଲିସ ଓ ଦୋକାନୀ ଉଭୟେ ମୋ ଉପରେ ଗାଳି ବର୍ଷଣ କଲେ । ଦୋକାନୀ ଜଣେ ହେଡ କନ୍‌ଷ୍ଟେବଲ ଓ ଦୁଇଜଣ କନ୍‌ଷ୍ଟେବଲ ସାଙ୍ଗରେ ଧରି ଆସିଥିଲେ । ମୁଁ ଖଦୀ ଭଣ୍ଡାର ସାମନାରେ ପଡ଼ିଥିବା ବେଞ୍ଚ ଉପରେ ବସିଥାଏ । ଆଉ କେତେଜଣ ଆମେ ବସି କଥାବାର୍ତ୍ତା ହେଉଥାଉ । ଦୋକାନୀ ହାତ ଦେଖାଇ ବତାଇ ଦେଲା ଏବଂ ହେଡ୍ କନ୍‌ଷ୍ଟେବଲ ଆସି ମତେ ଗିରଫ କରଗଲା ବୋଲି କହିଲା । କହିଲା ତୁମେ ସେଠି ପିକେଟିଂ କରୁଥିଲ; ସେଥି ଲାଗି ଗିରଫ କର ଯାଉଛି । ମୁଁ ଏହା ମିଥ୍ୟା ଅଭିଯୋଗ କହି ଓ୍ୟାରଣ୍ଟ ଦାବୀ କଲି । ମାତ୍ର ସେ ଶୁଣିଲା ନାହିଁ ଏବଂ ମୋ ହାତ ଧରି ଟାଣିଲା । ଗାନ୍ଧୀଜୀଙ୍କ ନିର୍ଦ୍ଦେଶ ଅନୁସାରେ ଗିରଫ ହେବା ମାତ୍ରେ ଚାଲିଯିବା କଥା । ମାତ୍ର ଏଠାରେ ପରିସ୍ଥିତି ଭିନ୍ନ । ପିକେଟିଂ କରୁଥିବା ସାଥିମାନେ ମୋ କଥାରେ ଗିରଫର ପ୍ରତିରୋଧ କରିଥିଲେ ଏବଂ ପୁଲିସ ହାତରେ ଗଞ୍ଜଣା ସହିଲେ । ତେଣୁ ମୁଁ ନୀରବରେ ଚାଲି ଯାଆନ୍ତି କେମିତି ? ଏକ ନୈତିକ ପ୍ରଶ୍ନ । ଧର୍ମସଂକଟରେ ମୁଁ ପଡ଼ିଲି । ମୁଁ ସ୍ଥିର କଲି ପ୍ରତିରୋଧ କରିବି । ମୋ ପାଖରେ ଆମର ଆଉ ଜଣେ ବଳିଷ୍ଠ ସାଥି ରାଧାଶ୍ୟାମ ପରିଜା ବସିଥିଲେ । ମୁଁ ତାଙ୍କୁ ଡାକିଲି, ଆମେ ଦିହେଁ ହାତ ଛନ୍ଦାଛନ୍ଦି ହୋଇ ବସି ପଡ଼ିଲୁ । ଓ୍ୟାରଣ୍ଟ ଦେଖାଅ; ନଚେତ୍ ଆମେ ଏଠାରୁ ହୁଙ୍କିବୁ ନାହିଁ । ସେମାନେ ତ ଆମକୁ ଯେ କୌଣସି ପ୍ରକାରେ ନେବା କଥା । ଉପର ହାକିମଙ୍କର ଏଥିରେ ସମ୍ମତି ଥାଏ କି ନାହିଁ ଜାଣି ନଥାଉଁ ।

ଆମେ ସାଧାସିଧା ଯିବାକୁ ପ୍ରସ୍ତୁତ ନ ହେବାରୁ ଆମ ଦି ଜଣଙ୍କୁ ସେମିତି ବସିଥିବା ଅବସ୍ଥାରେ ଘୋଷାରିଲେ । ସେତେବେଳେ ସେହି ମୁଖ୍ୟ ରାସ୍ତାଟି

ପକ୍‌କା ହେବା ନିମନ୍ତେ ପଥର ଗେଟିମାନ ପଡ଼ିଥାଏ । ତାରି ଉପରେ ଆମକୁ ଘୋଷାରି ନିଆ ହେଉଥାଏ । ହାତ, ଗୋଡ, ଗଣ୍ଡି ସବୁ ଛିଣ୍ଡିଗଲା । ରକ୍ତ ବୋହିଲା । ଧୂଳିରେ ମିଶିଲା । ଆମେ କିଛୁ କାନ୍ଦୁ ନ ଥାଉ– ଟିକିଏ ପ୍ରତିରୋଧ କରିବାରୁ ଆହୁରି ଜୋରରେ ସେମାନେ ଘୋଷାରୁ ଥାଆନ୍ତି । ସେତେ-ବେଳକୁ ପ୍ରବଳ ଭିଡ । ଲୋକ ଆମ ସହିତ ଜୟଧ୍ୱନୀ ଦେଇ ଚାଲିଲେ । ବଡ଼ ବଡ଼ ପୁଲିସ ଅଫିସର ଆସିଲେ । ମତେ ଅନୁରୋଧ କରିବାରୁ ମୁଁ ଗୋଟିଏ କଥା ଧରିଥାଏ । ଅନ୍ୟାୟ ଗିରଫର ମୁଁ ପ୍ରତିବାଦ କରୁଛି । ମତେ ଓ୍ୟାରଣ୍ଟ ଦେଖାନ୍ତୁ । ସେମାନେ ଫେରି ଯାଆନ୍ତି ଏବଂ ଆମର ଅବାରିତ ଘୋଷରା ଚାଲିଲା ଲାଲବାଗ ପୁଲିସ ଥାନା ପର୍ଯ୍ୟନ୍ତ ସେହି ଗେଟି ଉପରେ । ମୋ ପକ୍ଷରେ ଆଉ ଏକ ଦୁର୍ବଳ ମୁହୂର୍ତ୍ତ ପହଂଚିଲା ଯେତେବେଳେ ବାଲୁ ବଜାର ଦେଇ ଆମେ ଯାଉ । ମୋର ସାନ ମାମୁଁ ଡାକ୍ତର କୁଳମଣି ମିଶ୍ରଙ୍କ ଦୋକାନ ପାଖରେ ପହଂଚିଲୁ । ସେ ଏ ଦୃଶ୍ୟ ସହ୍ୟ କରି ପାରିଲେ ନାହିଁ । ଚିତ୍କାର କଲେ "ତୁ ଉଠି ଚାଲିଯାଆ ।" କି କରୁଣ ବ୍ୟାକୁଳ ନିବେଦନ । ମୁଁ ସେଥିରେ କର୍ଣ୍ଣପାତ କଲି ନାହିଁ । ଲୋକ ଗହଳରେ ସେମିତି ଘୋଷରା ହୋଇ ଲାଲବାଗ୍‌ ଥାନାକୁ ଗଲୁ । ଲୋକେ ଜୟଧ୍ୱନୀ ଦେଇ ଫେରିଲେ । ଆମେ ନିଜେ କଷ୍ଟ ଲଭି ଅହିଂସ ସଂଗ୍ରାମ କିପରି ସଫଳ ହୁଏ, ତାହା ଦେଖାଇ ଦେଲୁ ।

ଥାନାରେ ପହଂଚିଛନ୍ତି ଯେଉଁ ହେଡ କନଷ୍ଟେବଲ ଆମକୁ ଘୋଷାରି ଆଣି ଲହୁ ଲୁହାଣ କରି ଦେଇଥିଲା, ସେ କାନ୍ଦିବାକୁ ଆରମ୍ଭ କଲା । ନିଜର ଗାମୁଛା ଆଣି ଗଣ୍ଡାଧୂଳି ଓ ରକ୍ତ ପୋଛିବାକୁ ଲାଗିଲା । କହୁଥାଏ ଆମେ ପୁଲିସ ଚାକିରୀ କରି କି ପାପ କଲୁ । ସେ ଲୁଗା ଦୋକାନୀର ବେପାର ଏକଦମ୍‌ ବନ୍ଦ ହୋଇଗଲା । ସେ ଚାଲ ପକାଇ ସେଠାରୁ ବିଦାୟ ନେଲା । ଆମେ ଜେଲ ଭିତରକୁ ଯିବା ପରେ ଆମର ଚିକିତ୍ସା ହେଲା । କର୍ଣ୍ଣେଲ ପାଲିତ୍‌ ଥାଆନ୍ତି କଟକ ମେଡ଼ିକାଲ ସ୍କୁଲର ପ୍ରିନ୍‌ସିପାଲ । ସେତେବେଳକୁ ମେଡ଼ିକାଲ କଲେଜ ହୋଇ ନ ଥାଏ । ସେ ପୁଣି କଟକ ଜେଲର ସୁପରିଣ୍ଟେଣ୍ଡେଣ୍ଟ ମଧ୍ୟ । ତାଙ୍କୁ ଅନୁରୋଧ କରିବାରୁ ସେ ଆଣ୍ଟି ଟିଟାନସ୍‌ ଇଞ୍ଜେକ୍‌ସନ ଦେଲେ । ଆମେ ରକ୍ଷା ପାଇଲୁ ।

ଆମକୁ କୋର୍ଟରେ ହାଜର କରାଗଲା । ମାଜିଷ୍ଟ୍ରେଟ ଆଗରେ ପିକେଟିଂ କରୁଥିଲି ବୋଲି ମିଥ୍ୟା ସାକ୍ଷୀ ଦିଆଗଲା । ଘୋଷରା ଆଦି ବିଷୟରେ କିଛି ଉଲ୍ଲେଖ

ରହିଲା ନାହିଁ । ଆମେ ସତ୍ୟାଗ୍ରହୀ ଭାବରେ ମକଦମା ଲଢିଲୁ ନାହିଁ । ଜେଲଖାନା ଯିବା ଲାଗି ତ ଆମର ଆନ୍ଦୋଳନ । ଆମକୁ ପାଞ୍ଚମାସ ଲେଖାଏଁ ସଶ୍ରମ କାରାଦଣ୍ଡ ମିଳିଲା । ୧୯୩୨ ମସିହା ଶେଷ ଆଡକୁ ଏ ଜେଲଦଣ୍ଡ ୩ୟ ଥର ଲାଗି ଘଟିଲା । ଏଥରକ ପୁଣି ଗୌରବ ବେଶି । ଖାଲି ଜେଲ ନୁହେଁ, ମାତ୍ର ଓ ଜେଲ ।

ତୃତୀୟ ଥର ଲାଗି ପୁଣି ପାଟନା କ୍ୟାମ୍ପ ଜେଲକୁ ଆମକୁ ପଠାଗଲା । ଆମେ ବିଚାରିଲୁ ଜେଲ ଯିବାରେ ଆମେ ସଫଳ ଏବଂ ଆମ କାର୍ଯ୍ୟସିଦ୍ଧି ହେବାରୁ ବ୍ରିଟିଶ ସରକାର ହେଲେ ବିଫଳ । ତୃପ୍ତି ଲାଭ କଲୁ । ରାଧାଶ୍ୟାମ ପରିଜା ମରି ଗଲେଣି ମାତ୍ର ମୁଁ ବଂଚିଛି ଏ ସବୁ କଥା ଲେଖିବା ନିମନ୍ତେ ।

卐

[ ୨୨ ]

# ସ୍ୱରାଜ୍ୟ ସୈନିକଙ୍କ ଭିତରେ ଭିନ୍ନ ଚିନ୍ତା

ମୁଁ ନିଜ କଥା କହିବି । ଏପରି ବାରମ୍ବାର ଜେଲ ଗଲି । ଆଖି ଦୃଶିଆ କାମ ହାସଲ ହୋଇ ନ ଥିଲା । ଜେଲରୁ ବାହାରି ଆସିବା ପରେ ପ୍ରାୟ କୌଣସି ବିଧିବଦ୍ଧ ସଂଗଠନ ନ ଥିଲା କାମରେ ଲଗାଇବା ନିମନ୍ତେ । ଆଇନ ଅମାନ୍ୟ ଆନ୍ଦୋଳନ ଆପଣାଛାଏଁ ମିଳେଇ ଗଲା । କେ କୁଆଡେ ଛତ୍ରଭଙ୍ଗ ଦେଲେ— ମୋ ମନରେ କୌଣସି ନିରଶା ଭାବ ନଥିଲା କିମ୍ବା ମୁଁ ଥକି ଯାଇ ନ ଥିଲି ।

ରାଜନୀତିକ ବିପ୍ଳବର ଆମେ ହେଲୁ ପଥିକ । ଆମ ଆଖି ଖୋଲା ହୋଇ ଯାଇଥିଲା । ବିଶ୍ୱର ବିଭିନ୍ନ ଦେଶରେ ଘଟିଥିବା ବିପ୍ଳବ ଗୁଡ଼ିକ ବିଷୟରେ ସମ୍ୟକ ଧାରଣା ହୋଇ ଯାଇଥିଲା । ରୁଷ ବିପ୍ଳବ ବହୁ ପରିମାଣରେ ଆମ ମନରେ ଆଲୋଡନ ସୃଷ୍ଟି କରିଥିଲା । ଆକସ୍ମିକ ଫଳପ୍ରାପ୍ତି ନ ହେବାରୁ ଗାନ୍ଧୀପନ୍ଥା ଛଡା ଅନ୍ୟ କୌଣସି ପନ୍ଥା ନେଲେ ଚଳିବ କି ? ଆମେ ଖୋଜିବାରେ ଲାଗିଲୁ । କିଛି ନୂତନ ଢଙ୍ଗରେ କରିବାକୁ ହେବ । ଆହୁରି କଠୋର ସଂଘର୍ଷ ହେଲେ ବୋଧହୁଏ ଅଭିଷ୍ଟ ସାଧନ ହୋଇ ପାରିବ । ଏତେଦିନ ସ୍ୱରାଜ୍ୟ ଆନ୍ଦୋଳନ ଓ ଗାନ୍ଧୀନୀତି ଅନୁସରଣ କରିବା ଯୋଗୁଁ ତାର ପୃଷ୍ଠଭୂମି ଛାଡ଼ିବା ଲାଗି ମନ ହେଉ ନ ଥାଏ । ହିଂସା ଅହିଂସା ଯେତେ ନୁହେଁ, ଗାନ୍ଧୀ ଆନ୍ଦୋଳନର ନୈତିକ ମୂଲ୍ୟବୋଧର ପ୍ରଚଣ୍ଡ ପ୍ରଭାବ ପଡ଼ିଥାଏ । କେବଳ ଅହିଂସକ ପନ୍ଥା ଆହୁରି କିପରି କ୍ରିୟାଶୀଳ ଓ ଫଳପ୍ରଦ ହୋଇ ପାରିବ, ଏହାର ଖୋଜ କରିବା ନିମନ୍ତେ ମନ ଧାଉଁଥାଏ । ମାତ୍ର ସର୍ବାଗ୍ରେ ମନ ଧାଉଁଥାଏ ପୁଣି କିପରି ସଂଘର୍ଷ ଓ ଲିଡା ଭିଡ଼ି ହୁଅନ୍ତା କି ?

ପରିସ୍ଥିତି ମଧ୍ୟ ଭିନ୍ନରୂପ ଧାରଣ କଲା । ଗାନ୍ଧୀଜୀ କଂଗ୍ରେସ କମିଟିକୁ ରଦ୍ଦ କରାଇ ଦେଲେ । ସତ୍ୟାଗ୍ରହ ବା ଆଇନ ଅମାନ୍ୟ ସ୍ଥଗିତ କରାଗଲା । ଗାନ୍ଧୀଜୀଙ୍କ ଛଡା ଆଉ କେହି ସତ୍ୟାଗ୍ରହୀ ରହିଲେ ନାହିଁ । କିନ୍ତୁ ଅନ୍ୟମାନେ କେଉଁ ଆଡକୁ ଯିବେ, କଅଣ କରିବେ ସେଥିପାଇଁ କିଛି ନିର୍ଦ୍ଦେଶ ନ ଥାଏ । ଏହା ହେଉଛି ଫରକ କୌଣସି ବିପ୍ଳବୀ ସଂଗଠନ ଓ ଏକ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ଭିତରେ । କର୍ମୀଗୋଷ୍ଠୀ ବଞ୍ଚାଇ ରଖିବା କିମ୍ବା ସେମାନଙ୍କୁ ଶିକ୍ଷା ଦେବାର କୌଣସି ଯୋଜନା ନ ଥାଏ । ଗାନ୍ଧୀ ଆନ୍ଦୋଳନର ଏହା ଥିଲା ଏକ ବିରାଟ ବିଚ୍ୟୁତି । କଂଗ୍ରେସ ଗାନ୍ଧୀଜୀଙ୍କ ନେତୃତ୍ୱ ଗ୍ରହଣ କରିଥିଲା । କିନ୍ତୁ ତାଙ୍କ ଆଦର୍ଶ ପୂରାପୂରି ମାନି ନ ଥିଲା । ବିଭିନ୍ନ ମତବାଦୀ ସ୍ୱରାଜ୍ୟ ସୈନିକଙ୍କ ଭିତରେ ଥିଲେ । ସାମ୍ରାଜ୍ୟ ବିରୋଧୀ ସଂଗ୍ରାମ ହେଉ ଥିବାରୁ ରାଜା, ଜମିଦାର, ପ୍ରଜା ଯେ ବ୍ରିଟିଶ ସାମ୍ରାଜ୍ୟବାଦର ବିରୋଧୀ ଥିଲେ, ତାଙ୍କ ପାଇଁ ଦ୍ୱାର ଉନ୍ମୁକ୍ତ ରହିଥିଲା । ତେଣୁ କଂଗ୍ରେସକୁ ଏକ ଆଦର୍ଶବାଦୀ ସଂଗଠନ ବୋଇଲେ ଭୁଲ ହେବ । କଂଗ୍ରେସ ଥିଲା ଏକ ସଂଗ୍ରାମୀ ଓ ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ ଅନୁଷ୍ଠାନ । ଯୁଦ୍ଧ ପରେ କିମ୍ବା ଲଢ଼ାଇ ସ୍ଥଗିତ ରହିଲେ କଂଗ୍ରେସର କାହାରି ପ୍ରତି କିଛି ଦାୟିତ୍ୱ ନ ଥିଲା । ସ୍ୱେଚ୍ଛାକୃତ ସଂଗଠନ; ତେଣୁ ନିଜ ନିଜର ବ୍ୟବସ୍ଥା କରିବା ନିମନ୍ତେ ସମସ୍ତଙ୍କର ସ୍ୱାଧୀନତା ଥିଲା; ଆଜି ବି ଅବସ୍ଥା କିଛି ବିଶେଷ ଭିନ୍ନ ନୁହେଁ । ଆମେ ସ୍ୱାଧୀନତା ଲାଗି ଏଥିରେ ଯୋଗ ଦେଇଥିଲୁ— ଏବେ କ୍ଷମତା ପାଇବା ଲାଗି ଲାଳାୟିତମାନେ ଏଥିରେ ଧାଡ଼ି ବାନ୍ଧୁଛନ୍ତି ।

ଏପରି ଅବସ୍ଥାରେ କଂଗ୍ରେସର କୌଣସି ନିର୍ଦ୍ଦିଷ୍ଟ ସଂଗ୍ରାମମୂଳକ କାର୍ଯ୍ୟକ୍ରମ ରହି ନ ଥିଲା । ବିଭିନ୍ନ ପଥଗାମୀ ବାର୍ଣ୍ଣିକୁର୍ଣ୍ଣି ହୋଇ ଗଲେ । ମହାତ୍ମା ଗାନ୍ଧୀ ଏକ ବର୍ଷ ଲାଗି ହରିଜନ କାର୍ଯ୍ୟରେ ବ୍ୟସ୍ତ ରହିଲେ । ଓଡ଼ିଶାରେ ପଦଯାତ୍ରା କଲେ । ଏଥିରେ ସବୁ କଂଗ୍ରେସ ଲୋକ ସହଯୋଗ କରି ନ ଥିଲେ । ପଦଯାତ୍ରା ଗାନ୍ଧୀଜୀଙ୍କର ସଫଳ ହେଲା । ଗାଁ ସହରର ସାଧାରଣ ଲୋକେ ହରିଜନ ଇତ୍ୟାଦି ଉଦ୍‌ବୁଦ୍ଧ ହେଲେ ଏବଂ ଗାନ୍ଧୀଜୀଙ୍କ ପ୍ରତି ତାଙ୍କର ଆକର୍ଷଣ ବଢିଲା । ଏହାକୁ ଭିତ୍ତି କରି ଓଡ଼ିଶାରେ ଏକ ଗାନ୍ଧୀଗୋଷ୍ଠୀ ଗଠିତ ହୋଇଗଲା । ଓଡ଼ିଶାରେ ଗୋପବନ୍ଧୁ ଚୌଧୁରୀ ହେଲେ ଆଦି ନେତା । ରାଜନୀତିକ କାର୍ଯ୍ୟରେ ସକ୍ରିୟ ଭାବରେ ଯୋଗଦାନ ନ କରି ସେମାନେ ଗାନ୍ଧୀଜୀଙ୍କ ରଚନାତ୍ମକ କର୍ମର

ନୀରବ ପଥିକ ହେଲେ । ବହୁ ସଂଖ୍ୟକ କଂଗ୍ରେସ ଲୋକ ଜିଲ୍ଲାବୋର୍ଡ ଓ ଆସେମ୍ବ୍ଲି ଆଦି ନିର୍ବାଚନ ପ୍ରତି ଆଗ୍ରହୀ ଥିଲେ ଏବଂ ସେଥିଲାଗି ପ୍ରସ୍ତୁତି ହେଉଥିଲା । କଂଗ୍ରେସର ମୂଳଗର୍ଣ୍ଣି— ସଂଖ୍ୟା ଯେତେ କମ ହେଉ ପଛକେ— ଏଭଳି ନିର୍ବାଚନ ସଂଗଠନ ପ୍ରତି ଆକୃଷ୍ଟ ହେଲେ ଏବଂ କରିଥିଲେ ମଧ୍ୟ । ଆଉ କେତେକଙ୍କ ମନରେ ସ୍ୱରାଜ୍ୟ ପ୍ରାପ୍ତି ନିମନ୍ତେ ଗାନ୍ଧୀ ଯେଉଁ ପନ୍ଥା ନିର୍ଦ୍ଦେଶ ଦେଉଛନ୍ତି, ତାହା ଯଥେଷ୍ଟ ନୁହେଁ ବୋଲି ଅନୁଭବ କଲେ । ଗାନ୍ଧୀ ବିରୋଧୀ ନୁହେଁ, ଗାନ୍ଧୀ ଆନ୍ଦୋଳନର ଅସଂପୂର୍ଣ୍ଣତା ତାଙ୍କ ମନକୁ ଆନ୍ଦୋଳିତ କଲା । କିଛି ନୂଆ ବାଟ ଅଛି କି ? ଗାନ୍ଧୀ ବିରୋଧୀ ହେବା ନାହିଁ; ଅଥଚ ଏକ ଅଗ୍ରଗାମୀ ସଂଘର୍ଷମୂଳକ କର୍ମପନ୍ଥା ବାହାର କରିବା ଯହିଁରେ ଦେଶର ସାଧାରଣ ଜନତା କଂଗ୍ରେସ ଓ ସଂଗ୍ରାମ ଅଭିମୁଖୀ ହେବେ !

ଏହି ଖୋଜତାଡରେ ଯେଉଁମାନେ ଲାଗିଥିଲେ, ସେମାନେ ମୁଖ୍ୟତଃ ନୂଆ ସଂଘର୍ଷର ଅନୁସନ୍ଧାନରେ ଥିଲେ । ଓଡ଼ିଶାରେ ଶିଳ୍ପ ପ୍ରାୟ ନ ଥିଲା । ତେଣୁ ଶିଳ୍ପ ଶ୍ରମିକ ସଂଗଠନ କରିବାର ବିଶେଷ ସୁଯୋଗ ନ ଥିଲା । ଏ ଶ୍ରେଣୀର କଂଗ୍ରେସ ଲୋକେ ସଂଗଠିତ ଭାବରେ କାର୍ଯ୍ୟ କରିବା ନିମନ୍ତେ ଶ୍ରେଣୀ ସଂଘର୍ଷ ଭିତ୍ତିରେ କୃଷକ ସଂଘମାନ ଗଠନ କଲେ । ଜମିଦାର ଓ ପ୍ରଜା ଭିତରେ ସଦ୍‌ଭାବ ନୁହେଁ, ସଂଘର୍ଷ ସୃଷ୍ଟି ହେଲା ଏମାନଙ୍କର ମୂଳ ଲକ୍ଷ୍ୟ । ଏହା ନିଶ୍ଚିତ ଭାବରେ ଗାନ୍ଧୀ ଭାବନା ସହ ମେଳ ଖାଉ ନ ଥିଲା । ମାତ୍ର କାଳକ୍ରମେ ଓଡ଼ିଶାର କଂଗ୍ରେସ ରାଜନୀତିରେ ଏହା ମୁଖ୍ୟ କାମ ହୋଇଗଲା । ସୋସାଲିଷ୍ଟ ନାମରେ ଏମାନେ ଖ୍ୟାତ ହେଲେ ।

ମୁଁ ଏଇଥିରେ ଯୋଗ ଦେଲି ଏବଂ ନିଖିଳ ଉତ୍କଳ କୃଷକ ସଂଘର ହେଲି ଯୁଗ୍ମ ସଂପାଦକ । ଏଥି ଭିତରେ ମୋର ନିଜଗ୍ରାମ ଖଣ୍ଡସାହୀ (କଟକ ଜିଲ୍ଲା)କୁ ଯାଇଥିଲି । ଆନନ୍ଦ ମହାନ୍ତି ବୋଲି ଆମର ଜଣେ ସାଥି କଂଗ୍ରେସ କର୍ମୀ ଆମ ଗ୍ରାମରେ କୃଷୀ ସଭାଟିଏ ଡାକିଲେ । ଜମିଦାରୀ ପ୍ରପିଡ଼ିତ ଓ ଅଧିକାରଗ୍ରସ୍ତ ଗ୍ରାମ । ପଣ୍ଡିତ ନାରାୟଣ ମିଶ୍ର ହେଲେ ସଭାପତି— ମୁଁ ମୁଖ୍ୟବକ୍ତା । ଆମ ଗ୍ରାମରେ ବୋଧହୁଏ ଏହା ଥିଲା ପ୍ରଥମ ରାଜନୀତିକ ସଭା । ଜମିଦାରଙ୍କ ଉପରେ ମୁଁ ପ୍ରତ୍ୟକ୍ଷ ଆକ୍ରମଣ କଲି । ଜମିଦାରଙ୍କର ଅସହ୍ୟ ହେଲା । ପୁଲିସ କି ପ୍ରଭାବିତ

କରି ଆମକୁ ଗିରଫ କରଯାଇ ପାରିଲା ନାହିଁ । ମାତ୍ର ଦୂର ଗାଁର ତାଙ୍କର ଜଣେ ପ୍ରଜାକୁ ମୁଦେଇ କରି ମାଜିଷ୍ଟ୍ରେଟଙ୍କ କୋର୍ଟରେ ମକଦମା ଦାଏର ହେଲା ଆମ ତିନି ଜଣଙ୍କ ନାମରେ । ଜାମିନରେ ଆସିଲୁ । ମକଦମା ଲଢିଲୁ । କୃଷକ ଆନ୍ଦୋଳନରେ ପରେ ତ ଏ ପ୍ରକାର ବହୁ କେସ୍ ଓ ଗିରଫଦାରୀ ହୋଇଛି । ମାତ୍ର ଏ ଧରଣର ମିଥ୍ୟା ମକଦମା ଥିଲା ପ୍ରଥମ । ଆମ ପକ୍ଷରୁ ଖ୍ୟାତନାମା ଲୋକେ ସାକ୍ଷୀ ଦେଲେ । ପୁଲିସ ମଧ୍ୟ କହିଲେ ଉକ୍ତ ଦିନ ମୁଁ ସେ ଗ୍ରାମରେ ନ ଥିଲି । ଅନ୍ୟତ୍ର ସଭା କରୁଥିବାର ରିପୋର୍ଟ ଥାନା ଖାତାରୁ ଦର୍ଶାଇଲେ । ଓକିଲ ଭାବରେ ଲଢିଲେ ସୌରୀ ପ୍ରସାଦ ମହାପାତ୍ର, ବାଞ୍ଛାନିଧି ମହାପାତ୍ର, ଦୀନବନ୍ଧୁ ସାହୁ ଓ ବୀର କିଶୋର ରାୟ । ବ୍ରିଟିଶ ସରକାର ଏପରି ଜମିଦାରୀ ସପକ୍ଷ ଯେ, ଏ ସବୁ ପ୍ରମାଣ ସତ୍ୱେ ଆମକୁ ମିଳିଲା ତିନିମାସ ସଶ୍ରମ କାରାଦଣ୍ଡ ଓ ତିନି ଶତ ଟଙ୍କା ଜୋରିମାନା । ଉପର କୋର୍ଟରେ ଅପୀଲ୍ କରି ଖଲାସ ହେଲୁ । ଏବେ ଲେଖିବାରେ ଆପତ୍ତି ନାହିଁ ଯେ, ବିଚାରକ ଥିଲେ ଦୁର୍ଗା ଚରଣ ଦାସ । ଭଗୀରଥି ମହାପାତ୍ରଙ୍କର ସମ୍ବନ୍ଧି । ଭଗୁ ବାବୁ ତାଙ୍କୁ କହିଲେ ଏବଂ ତାଙ୍କର ଆଉ ଜଣେ ବନ୍ଧୁ ବୀର କିଶୋର ରାୟ ଆମର ହେଲେ ଓକିଲ । ସେ ପରେ ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ହେଲେ । ଆମେ ଅପୀଲରେ ଜିତିଲୁ । ବ୍ରିଟିଶ କୋର୍ଟର ନ୍ୟାୟ ବିଚାରର ଏହା ଏକ ନଗ୍ନ ନମୁନା ।

卐

[ ୨୩ ]

## ୧୯୪୦ ସତ୍ୟାଗ୍ରହ ପୂର୍ବରୁ

ସତ୍ୟାଗ୍ରହ ସ୍ଥଗିତ ହେଲା । କଂଗ୍ରେସ କର୍ମୀମାନେ ନିଜ ନିଜର ବାଟ ଧରିଲେ । କଂଗ୍ରେସ କମିଟି ରହିଥିଲା; ତାହା ପାଖରେ ଆଉ କୌଣସି ସଂଗ୍ରାମର ପ୍ରୋଗ୍ରାମ ନ ଥିଲା । ଜିଲ୍ଲାବୋର୍ଡ, ମ୍ୟୁନିସିପାଲିଟି ଓ ପରେ ଆସେମ୍ବ୍ଲି ନିର୍ବାଚନ ଆଦି କାର୍ଯ୍ୟରେ ଆଗ୍ରହାନ୍ୱିତ ହେଲେ । କଂଗ୍ରେସର ତୁଙ୍ଗ ନେତୃବୃନ୍ଦଙ୍କ ଭିତରୁ ଗୋପବନ୍ଧୁ ଚୌଧୁରୀ, ରମା ଦେବୀ ଓ ଆଚାର୍ଯ୍ୟ ହରିହର ଦାସ ଆଦି ଗାନ୍ଧୀବାର୍ତ୍ତା ପ୍ରଚାର ଲାଗି କଟକ ଜିଲ୍ଲାର ବରୀ ଗ୍ରାମରେ କେନ୍ଦ୍ର ସ୍ଥାପନା କରି ରଚନାତ୍ମକ କାର୍ଯ୍ୟରେ ଲାଗିଲେ । ହରେକୃଷ୍ଣ ମହତାବ ଆଉ କୌଣସି କେନ୍ଦ୍ରିକ ସଂଗଠନ ସହ ସଂପୃକ୍ତ ନ ରହି ନିଜ ଗ୍ରାମ ଅଗରପଡା ଠାରେ ଗାନ୍ଧୀ କର୍ମ ମନ୍ଦିର ସ୍ଥାପନା କଲେ । କେବଳ ପ୍ରତ୍ୟକ୍ଷ ରାଜନୀତି କ୍ଷେତ୍ରରେ ଥାଆନ୍ତି ପଣ୍ଡିତ ନୀଳକଣ୍ଠ ଦାଶ । ସେ କେନ୍ଦ୍ର ଆସେମ୍ବ୍ଲିର ସଦସ୍ୟ ବି ଥାଆନ୍ତି । ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସେ ହେଲେ ସଭାପତି । ଆମେ ସୋସାଲିଷ୍ଟମାନେ କୃଷକ ସଂଗଠନରେ ବ୍ୟସ୍ତ ରହିଲୁ । ନବକୃଷ୍ଣ ଚୌଧୁରୀ ଥିଲେ ଆମର ନେତା । ଆମେ ସମସ୍ତେ କଂଗ୍ରେସ କମିଟି ସହ ସଂପୃକ୍ତ ହୋଇଗଲୁ । ପଣ୍ଡିତ ନୀଳକଣ୍ଠ ଦାଶ ପ୍ରଦେଶ କଂଗ୍ରେସ କମିଟିର ସଂପାଦକ ଭାବେ ନବକୃଷ୍ଣ ଚୌଧୁରୀଙ୍କି ବାଛିଲେ । ସବୁଠାରୁ ତାତ୍ପର୍ଯ୍ୟ ପୂର୍ଣ୍ଣ ହେଉଛି ସୋସାଲିଷ୍ଟମାନେ ଯେଉଁଭଳି ଭାବରେ ଜମି ସମସ୍ୟାର ସମାଧାନ ଓ ତତ୍‌ସମ୍ପର୍କୀୟ ଆଇନର ପରିବର୍ତ୍ତନ ଓ ସଂଶୋଧନ ଚାହୁଁଥିଲେ, ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ନିର୍ବାଚନ ଇସ୍ତାହାରରେ ତାହା ଗ୍ରହଣ କରିଗଲା । ଭାରତର ଅନ୍ୟ କୌଣସି ପ୍ରଦେଶରେ ଏହା ହୋଇ ପାରି ନ ଥିଲା ।

ଦ୍ରୁତ ରାଜନୀତିକ ପରିବର୍ତ୍ତନ ଘଟିଲା । ୧୯୩୬ ଏପ୍ରିଲ ପହିଲାରେ ନୂତନ ଓଡ଼ିଶା ପ୍ରଦେଶ ହେଲା । ଓଡ଼ିଶାର କେନ୍ଦ୍ର ହେଲା କଟକ ନଗର । ନୂଆ ଆସେମ୍ବ୍ଲି । ନୂଆ ପ୍ରାଦେଶିକ ଶାସନର ସମଗ୍ର ବ୍ୟବସ୍ଥାରେ ଲାଗି ପଡ଼ିଲେ । ସବୁ ହେଲା କିନ୍ତୁ ଓଡ଼ିଶାର ଇଉନିଭରସିଟି ଓ ହାଇକୋର୍ଟ ବିହାରର ପାଟନା ସହ ଯୋଡ଼ି ହୋଇ ରହିଥିଲା ।

ଓଡ଼ିଶା ଆସେମ୍ବ୍ଲିରେ ମୋଟେ ଥିଲା ୬୦ଟି ସ୍ଥାନ । କଂଗ୍ରେସ ସବୁସ୍ଥାନ ଲାଗି ପ୍ରାର୍ଥୀ ଛିଡା କରାଇ ପାରିଲା ନାହିଁ । ମାତ୍ର ୩୬ ଜଣ ପ୍ରାର୍ଥୀ ଦେଲା । ସେତେବେଳେ କଂଗ୍ରେସ ଓ ଗାନ୍ଧୀ ନାମ ଏପରି କୁହୁକ ପରି କାମ କରୁଥିଲା ଯେ ୩୬ ସ୍ଥାନରୁ କଂଗ୍ରେସ ୩୫ଟି ଯାଗା ପାଇଗଲା । ସ୍ପଷ୍ଟ ବହୁମତ । ଭାରତରେ ପ୍ରଥମ ଓଡ଼ିଶାରେ କଂଗ୍ରେସକୁ ବହୁମତ ମିଳିଲା । ସେଥିଲାଗି ସର୍ଦ୍ଦାର ପଟେଲ ତାର ଦ୍ୱାରା ଜଣାଇଲେ "ସାବାସ୍ ଓଡ଼ିଶା" । ଖଣ୍ଡିଆ ମଣ୍ଡିଆ ହେଉ ପଛକେ ଓଡ଼ିଆଙ୍କ ମନରେ ଗର୍ବ, ଆନନ୍ଦ । ନିଜର ରାଜ୍ୟଟିଏ ତ ହେଲା ।

କିଏ ମନ୍ତ୍ରୀମଣ୍ଡଳ ଗଠନ କରିବ ! କଂଗ୍ରେସର ବହୁମତ— ମନ୍ତ୍ରୀମଣ୍ଡଳ ଗଠନ କଂଗ୍ରେସର ପ୍ରାପ୍ୟ । ମହାତ୍ମା ଗାନ୍ଧୀ ବ୍ରିଟିଶ ସରକାର ଠାରୁ ପ୍ରତିଶ୍ରୁତି ଚାହିଁଲେ । ସେ ନିଷ୍ପତ୍ତି ନ ନେଇ 'ତେର ଦିନିଆ ଯମ' ପରି କଂଗ୍ରେସ ପ୍ରଦେଶରେ ସଖ୍ୟ କଣ୍ଢେଇ ମନ୍ତ୍ରୀସଭା ସ୍ଥାପନା କଲେ । ପାରଳା ଖେମଣ୍ଡିର ମହାରାଜା ଏଥିରେ ଥିଲେ ଅସ୍ଥାୟୀ ପ୍ରଧାନ ମନ୍ତ୍ରୀ । କଂଗ୍ରେସ ସହିତ ବୁଝାମଣା ହୋଇଗଲା । କଂଗ୍ରେସ ମନ୍ତ୍ରୀ ମଣ୍ଡଳ ସ୍ଥାପିତ ହେଲା । ବିଶ୍ୱନାଥ ଦାଶ ହେଲେ ଓଡ଼ିଶାର ପ୍ରଥମ ପ୍ରଧାନ ମନ୍ତ୍ରୀ । ସେତେବେଳକୁ କେନ୍ଦ୍ର ଆସେମ୍ବ୍ଲି ପୁରୁଣା ଢ଼ଙ୍ଗରେ ଚାଲୁଥାଏ । ପ୍ରାଦେଶିକ ସ୍ତରରେ ମୁଖ୍ୟମନ୍ତ୍ରୀଙ୍କୁ କୁହା ହେଲା Premier ଅର୍ଥାତ୍ ପ୍ରଧାନ ମନ୍ତ୍ରୀ । ତାହା ପୁଣି କେନ୍ଦ୍ରରେ ପ୍ରଧାନ ମନ୍ତ୍ରୀ ହେବା ପରେ ପରିବର୍ତ୍ତନ କରାଗଲା । ରାଜ୍ୟ ଗୁଡ଼ିକରେ ହେଲେ ମୁଖ୍ୟମନ୍ତ୍ରୀ ।

ବିଶ୍ୱନାଥ ଦାଶଙ୍କ ମନ୍ତ୍ରୀ ମଣ୍ଡଳ ପ୍ରାୟ ଦୁଇଟି ବର୍ଷ ସୁରୁଖୁରୁରେ ଚାଲିଲା । ଲୋକପ୍ରିୟ ହୋଇଥିଲା । କୌଣସି ବ୍ୟଭିଚାରର ଅଭିଯୋଗ ନ ଥିଲା । ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶ ବହୁ ପରିମାଣରେ ପାଳନ କରୁଥିଲେ— ସରଳ

ନିଗଡ଼ମୟ ଜୀବନରେ ରହୁଥିଲେ । ମନ୍ତ୍ରୀ ହେଲେ ମୋଟେ ତିନି ଜଣ । ବିଶ୍ୱନାଥ ଦାସ ପ୍ରଧାନ ମନ୍ତ୍ରୀଙ୍କ ସାଙ୍ଗକୁ ନିତ୍ୟାନନ୍ଦ କାନୁନ୍‌ଗୋ ଓ ବୋଧରାମ ଦୁବେ । ଏ ମନ୍ତ୍ରୀ ମଣ୍ଡଳର ସୁଖ୍ୟାତି ହେଲା । ଗଭର୍ଣ୍ଣର ହବାକ୍ ଛୁଟିରେ ଯାଉଥିବାରୁ ମନ୍ତ୍ରୀ ମଣ୍ଡଳ ଅଧୀନରେ କାର୍ଯ୍ୟ କରୁଥିବା ରେଭିନ୍ୟୁ କମିଶନର ଡେନ୍ ସାହେବଙ୍କୁ ବ୍ରିଟିଶ ରାଜା ଗଭର୍ଣ୍ଣର ଭାବେ ନିଯୁକ୍ତି ଦେଲେ । ମନ୍ତ୍ରୀମଣ୍ଡଳ ଅଡ଼ି ବସିଲା । ମହାତ୍ମା ଗାନ୍ଧୀ ଓ କଂଗ୍ରେସ କାର୍ଯ୍ୟକାରୀ ସମର୍ଥନ କଲେ । ଡେନ୍ ସାହେବଙ୍କୁ ଦିଆଗଲେ ମନ୍ତ୍ରୀ ମଣ୍ଡଳ ଇସ୍ତଫା ଦେଇଦେବେ । King can do no wrong କିନ୍ତୁ ଓଡ଼ିଶାରେ ବ୍ରିଟିଶ ରାଜାଙ୍କୁ ନିଜ ଆଦେଶ ପ୍ରତ୍ୟାହାର କରିବାକୁ ପଡ଼ିଲା । ଗଭର୍ଣ୍ଣର ହବାକ୍ ଛୁଟି କ୍ୟାନସଲ କରି ପଦବୀରେ ରହିଲେ । କଂଗ୍ରେସର ଜିଦ୍ ରହିଲା । ଏଥି ଭିତରେ ଆସିଗଲା ବିଶ୍ୱଯୁଦ୍ଧ; ଦ୍ୱିତୀୟ ମହାସମର । ହିଟଲରର ଆକ୍ରମଣ । କଂଗ୍ରେସ ଯୁଦ୍ଧକୁ ସାହାଯ୍ୟ କରିବ ନାହିଁ ବୋଲି ସ୍ଥିର କଲା । ଆମେ ପରାଧୀନ, ଆମ ମତ ନ ନିଆଯାଇ ଆମକୁ ଯୁଦ୍ଧରେ ଭର୍ତ୍ତି କରା ଯାଇଛି । ଆମେ ଏହାକୁ ସମର୍ଥନ କରି ପାରୁନା । ମହାତ୍ମା ଗାନ୍ଧୀ ଓ କଂଗ୍ରେସ ସହ ଏଥି ଲାଗି ବହୁ ଯୁକ୍ତିତର୍କ ଲାଗିଲା । କିଛି ମୀମାଂସା ହୋଇ ପାରିଲା ନାହିଁ । ରାଜଗୋପାଳାଚାରୀଙ୍କ ନେତୃତ୍ୱରେ ମହାତ୍ମା ଗାନ୍ଧୀଙ୍କ ବିରୋଧରେ କଂଗ୍ରେସ ପ୍ରସ୍ତାବ ଦେଲା ଯେ ଜାତୀୟ ସରକାର ଗଠନ କରାଯାଇ କିଛି କ୍ଷମତା ହସ୍ତାନ୍ତର କଲେ ଯୁଦ୍ଧରେ ସହଯୋଗ ବିଷୟ ବିଚାର କରାଯାଇ ପାରେ । ମାତ୍ର ବ୍ରିଟିଶ ସରକାର କୌଣସି ସନ୍ତୋଷ-ଜନକ ସମାଧାନ ନିମନ୍ତେ ସମ୍ମତ ହେଲା ନାହିଁ । ବ୍ରିଟିଶ ଯୁଦ୍ଧ ସହିତ ସହଯୋଗ ସମ୍ଭବ ନୁହେଁ– ଏହାର ପ୍ରତିବାଦରେ ଯେତେ ପ୍ରଦେଶରେ କଂଗ୍ରେସ ମନ୍ତ୍ରୀ ମଣ୍ଡଳ ଥିଲେ, ସମସ୍ତେ ଇସ୍ତଫା ଦେଇ ଦେଲେ । ପୁଣି ବ୍ରିଟିଶ ସରକାର ସହ ସଂଘର୍ଷ ଲାଗି ଦେଶ ପ୍ରସ୍ତୁତ ହେଲା । କଂଗ୍ରେସ ବୈଠକରେ ମହାତ୍ମା ଗାନ୍ଧୀଙ୍କୁ ପୂରା କ୍ଷମତା ଦିଆଗଲା । ସେ ପୁଣି ଦେଶରେ ନୂତନ ସଂଘର୍ଷର ହେଲେ ଅଧିନାୟକ ।

卐

[ ୨୪ ]

## ଗାନ୍ଧୀ କେମିତିକା ସେନାପତି

୧୯୪୦ ବେଳକୁ ମୁଁ ଥିଲି କଟକ ଜିଲ୍ଲା କଂଗ୍ରେସ କମିଟିର ସଂପାଦକ । ତାହା ପୂର୍ବରୁ ୧୯୩୮ରୁ ହେଲି ନିଖିଳ ଭାରତ କଂଗ୍ରେସ କମିଟିର ସଦସ୍ୟ । ୧୯୪୮ରେ କଂଗ୍ରେସ ସଭ୍ୟପଦ ତ୍ୟାଗ କରି ସ୍ୱତନ୍ତ୍ର ସୋସାଲିଷ୍ଟ ପାର୍ଟି ଗଠିତ ହେଲା । ସେହି ହେତୁ ୧୯୪୮ରୁ ଆଉ ମୁଁ ଏ.ଆଇ.ସି.ସି.ର ସଭ୍ୟ ହୋଇ ରହିଲି ନାହିଁ । ୧୯୪୦ ସତ୍ୟାଗ୍ରହ ବେଳକୁ ମୁଁ ବିଧିବଦ୍ଧ ଭାବରେ କଂଗ୍ରେସର ଜଣେ କର୍ମକର୍ତ୍ତା । ଗାନ୍ଧୀଜୀଙ୍କୁ ଯେ କଂଗ୍ରେସ କମିଟି ପୂରା କ୍ଷମତା ଦେଲା, ତାହାର ନିର୍ଦ୍ଦେଶ ମାନି କାର୍ଯ୍ୟ କରିବାକୁ ବାଧ୍ୟ ।

ଯୁଦ୍ଧରେ ବ୍ରିଟିଶକୁ ସାହାଯ୍ୟ ନ କରିବା ନିମନ୍ତେ ସ୍ଥିର ହେଲା । କିନ୍ତୁ କି ଧରଣର ସଂଗ୍ରାମ ହେବ ଓ ଲଢ଼ାଇ ହେବ କି ନାହିଁ ଏହାର ପୂର୍ଣ୍ଣ ଦାୟିତ୍ୱ ରହିଲା ଗାନ୍ଧୀଜୀଙ୍କ ଉପରେ ।

ପ୍ରକୃତ ସଂଘର୍ଷ କରିବାର ଏହା ଉପଯୁକ୍ତ ସମୟ କି ନାହିଁ ଏଥି ନେଇ ବହୁ ଯୁକ୍ତିତର୍କ ବିବାଦ ଚାଲିଥାଏ । ଏକ ପକ୍ଷରେ ହିଟଲର, ଫାସିଜିମ୍– ଅପର ପକ୍ଷରେ ବ୍ରିଟିଶ ସାମ୍ରାଜ୍ୟବାଦ । କଂଗ୍ରେସ ବା ଗାନ୍ଧୀଜୀ କାହାରିକି ସମର୍ଥନ ଦେବାକୁ ଚାହାନ୍ତି ନାହିଁ । ବ୍ରିଟିଶ ଶାସନର ତୁରନ୍ତ ଅବସାନ କାମନା କରୁଛନ୍ତି । ବ୍ରିଟିଶ ସରକାର ସହ ପ୍ରତ୍ୟକ୍ଷ ସଂଗ୍ରାମ ଫଳରେ ଶାସନ ହଟହଟାରେ ପଡ଼ିବ । ଶାସନ ଦୁର୍ବଳ ହେଲେ ହିଟଲର ପକ୍ଷକୁ ପରୋକ୍ଷରେ ମଦତ୍ ମିଳିବ ।

ଆମର ଯୁଦ୍ଧ କାର୍ଯ୍ୟରେ ଅସହଯୋଗ ନୀତି କେବଳ ବ୍ରିଟିଶ ପାଇଁ ପ୍ରଯୁଜ୍ୟ ନୁହେଁ, ଜର୍ମାନୀ, ଜାପାନ ଲାଗି ସମ ପରିମାଣରେ ପ୍ରୟୋଗ କରାଯିବ । କମ୍ୟୁନିଷ୍ଟ ଓ ଅନ୍ୟ କେତେକ ରାଜନୀତିକ ଶକ୍ତି ଗାନ୍ଧୀଜୀଙ୍କୁ ଫାସିଷ୍ଟ ଏଜେଣ୍ଟ ବୋଲି ଭର୍ତ୍ସନା କରୁଥିଲେ । ଏହା ଏକ ନିରର୍ଥକ ଅଭିଯୋଗ । କମ୍ୟୁନିଷ୍ଟଙ୍କର ଭାରତ ମାତା ପ୍ରତି ପୂର୍ଣ୍ଣ ଅନୁରକ୍ତି ନ ଥିବା ହେତୁ ସେମାନେ ଏପରି ଦେଶ ବିରୋଧୀ ନୀତି ଧରୁଥିଲେ । ସେମାନଙ୍କର ସମସ୍ତ କାର୍ଯ୍ୟ ରୁଷ ନିର୍ଦ୍ଦେଶରେ ଓ ସୋଭିଏଟ ରୁଷର ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ ବିଗ୍ଭର କରା ଯାଉଥିଲା । କମ୍ୟୁନିଷ୍ଟଙ୍କର ଏଭଳି ଅଭିଯୋଗ କିଭଳି ନିରାଧାର ଭାରତର ସ୍ୱାଧୀନତା ସଂଗ୍ରାମର ପରବର୍ତ୍ତୀ ଅଧ୍ୟାୟରେ ସ୍ପଷ୍ଟ ହୋଇ ଗଲା । ବ୍ରିଟିଶ ସାମ୍ରାଜ୍ୟବାଦ ସହ ଯେତେବେଳେ ଶେଷ ଲଢାଇ ୧୯୪୨ରେ ଗ୍ଭଲିଲା, ତହିଁରେ ସେମାନେ ଦେଶ ପଟରେ ନ ରହି ସୋଭିଏଟ୍ ରୁଷର ସ୍ୱାର୍ଥରକ୍ଷା ଲାଗି ଏବଂ ତାଙ୍କ ନିର୍ଦ୍ଦେଶରେ ଇଂରେଜ ସାମ୍ରାଜ୍ୟବାଦକୁ ସାହାଯ୍ୟ କଲେ ।

ଏସବୁ ପୁରୁଣା ଇତିହାସ କାହାଣୀ ହୋଇ ଗଲଣି । ତଥାପି ଆମମାନଙ୍କର ଜେଲ ଯିବା ଓ ସ୍ୱାଧୀନତା ସଂଗ୍ରାମର କାହାଣୀ ଯେତେବେଳେ ଲେଖା ଯାଉଛି, ସେଥିରେ ଆମ ସ୍ୱାଧୀନତାର ଲକ୍ଷ୍ୟ ବିଷୟରେ ପରିଷ୍କାର ଧାରଣା ରହିବା ଉଚିତ ।

ଗାନ୍ଧୀଜୀଙ୍କୁ ଫାସିଷ୍ଟ ଏଜେଣ୍ଟ କହିବା କିପରି ଅସାର ତାର ମୁଁ ଏକ ପ୍ରତ୍ୟକ୍ଷ ସାକ୍ଷୀ । ଯୁଦ୍ଧରେ ସେନାପତି ନାନା ରଣ କୌଶଳ ପ୍ରୟୋଗ କରନ୍ତି । ବାହାରେ ଗୋଟାଏ କଥା, ମାତ୍ର ସେନାନୀଙ୍କି ଭିତିରିଆ ପରାମର୍ଶ ଦିଆଯାଇ ଥାଏ । ଯୁଦ୍ଧରେ ଏପରି ଦୋନାବୁଡ଼ିଆ ନୀତିକୁ କେହି ନାପସନ୍ଦ କରନ୍ତି ନାହିଁ । ସୈନ୍ୟମାନେ ସେ କୌଶଳ ଉପଲବ୍ଧି କରନ୍ତି– ଜାଣି ପାରନ୍ତି ଇଶାରାରେ ଓ କାର୍ଯ୍ୟ ଢ଼ଙ୍ଗରେ । କିନ୍ତୁ ଗାନ୍ଧୀଜୀଙ୍କର ଥିଲା ପ୍ରକାଶ୍ୟ ବିଦ୍ରୋହ । ସେ ଲୋକଙ୍କ ପାଖରୁ କିଛି ଛପାଇ ରଖୁ ନ ଥିଲେ ।

ଗୋଟିଏ ଘଟଣା ଲେଖୁଛି । ମୁଁ ଯାଇଥାଏ ଗାନ୍ଧୀଜୀଙ୍କ ଠାରୁ ପରାମର୍ଶ ଆଣିବା ନିମନ୍ତେ । ଜାପାନ ଆସି କଟକ ଜିଲାର କୂଜଙ୍ଗ ଉପକୂଳରେ ବଙ୍ଗୋପ ସାଗରରେ ବ୍ରିଟିଶ ବଣିକ ପୋତକୁ ବୁଡାଇ ଦେଲା । ଛିନ୍ନଛତର ହୋଇଗଲା ।

ବଣିକ ପୋତରେ ଥିବା ଜିନିଷ ସବୁ କୂଳରେ ଲାଗିଲା । ଲୋକେ ଆଣିଲେ; ବଜାରକୁ ବି ଆସିଗଲା । ଏତେ ଦୂରରୁ କେହି ନ ଜାଣି ପାରିଲେ କେମିତି ? କି ଖଞ୍ଜରେ କୌଶଳ ପ୍ରୟୋଗ କରି ଜାପାନୀ ବୁଡାଜାହାଜ ଆସି ଏତେ ବଡ କାଣ୍ଡ କରି ପାରିଲା । ଗରିଆଡେ ପଡ଼ିଲା ହୁଲସ୍ଥୁଲ । ଭୟ ଆତଙ୍କ ଖେଳିଗଲା । ଲୋକଙ୍କ ଭିତରେ ନୁହେଁ– ବ୍ରିଟିଶ ସରକାରୀ ମହଲରେ । ସମସ୍ତେ ବିଗ୍ଭରିଲେ, ଜାପାନ ଆସି ଯାଉଛି । ଓଡ଼ିଶା ଉପକୂଳରୁ ହିଁ ଆକ୍ରମଣ ହେବ । ଛାନିଆଁ ହୋଇ ଇଂରେଜମାନେ କଟକରୁ ସମ୍ବଲପୁରକୁ ସେକ୍ରେଟାରୀଏଟ୍ ଉଠାଇ ନେଲେ । ସରକାରଙ୍କର ଏଭଳି ଅସ୍ତବ୍ୟସ୍ତ ଦେଖି ଲୋକଙ୍କ ମନରେ ବି ଆତଙ୍କ ପଶିଲା । କେତେ ଲୋକ କଟକ ସହର ଛାଡ଼ି ଗାଁ ଗଣ୍ଡାକୁ ପଳାଇ ଗଲେ । ମୁସ୍କିଲ ଅବସ୍ଥା । ଆହୁରି ବିସ୍ମୟର କଥା ହୋଇଥାଏ । ଗଡଜାତ ରଜା ଗୁଡାକ ଇଂରେଜର ପୋଷା କୁକୁର ହୋଇ ଥାଆନ୍ତି । ସେମାନେ ବି ସାହସ ହାରି ବସିଲେ । ଇଂରେଜ ତ ଯିବ । ଆମକୁ କିଏ ସାହାଯ୍ୟ ଦେବ ? ତାଙ୍କ ଭିତରୁ କେତେକ ପାଗବାନ୍ଧି ବସିଗଲେ । ଜାପାନ ଆସିଲେ ଧଳା ପତାକା ଉଡାଇବେ ଓ ତା' ପାଖରେ ଆମ ସମର୍ପଣ କରିଯିବେ ।

ଆମର ସବୁ କଅଣ ହେବ ? କଂଗ୍ରେସ ଲୋକ କଅଣ କରିବେ ? ସେମାନେ ଶତ୍ରୁର ଏପରି ବିପଦ ବେଳେ ଜାପାନ ପକ୍ଷରେ ରହି ଇଂରେଜଙ୍କୁ ହଟାଇ ଦେବାର ଲକ୍ଷ୍ୟ ସାଧନ କରିବେ କି ? ନେତାଜୀ ସୁଭାଷ ତ କହୁଥିଲେ– 'ଇଂରେଜର ଶତ୍ରୁ ଆମର ବନ୍ଧୁ । ଇଂରେଜର ବନ୍ଧୁ ଆମର ଶତ୍ରୁ' । ସେ ନିଜେ ତ ଇଂରେଜ କବଳରୁ, ଭାରତରେ ବନ୍ଦୀ ଥିବା ବେଳେ ପଳାଇ ଯାଇଛନ୍ତି । ଆମକୁ କି ଦୋଷ ଲାଗିବ ଯଦି ଆମେ ସେହି ପନ୍ଥା ଗ୍ରହଣ କରୁ ! ଏହି ଗୋଳକ ଧନ୍ଦାରେ ଆମେ ଓଡ଼ିଶାର କଂଗ୍ରେସ ଲୋକ ପଡ଼ିଥାଉ । ସ୍ଥିର ହେଲା ଗାନ୍ଧୀଜୀଙ୍କ ଠାରୁ ପରାମର୍ଶ ନେଇବାକୁ ପଡ଼ିବ । ମୁଁ ସେତେବେଳକୁ ଇଉନାଇଟେଡ ପ୍ରେସର ଏଡ଼ିଟର ହୋଇ ଥାଏ । ମୋରି ବାସଭବନରେ ତେଲେଙ୍ଗା ବଜାରରେ ଅଫିସ କରିଥାଏ । ସ୍ଥିର ହେଲା ମୁଁ ଗଲେ କେହି ସନ୍ଦେହ କରିବେ ନାହିଁ । ମୁଁ ଯାଇ ଗାନ୍ଧୀଜୀଙ୍କ ସହ ଦେଖା କରି ବାର୍ତ୍ତା ଧରି ଆସିବି । ମୋର ଏ ହେବ ଗାନ୍ଧୀଜୀଙ୍କ ସହ ପ୍ରଥମ ରାଜନୀତିକ ଭେଟ । ମୁଁ ସମ୍ବଲପୁରରୁ ନାଗପୁର ଗଲି ଟ୍ରେନରେ ଓ ସେଠାରୁ ବସ ଯୋଗେ ଗଲି ସେବାଗ୍ରାମ । କାଳେ ଟ୍ରେନରେ

କେହି ସନ୍ଦେହରେ ଗିରଫ କରିନବ ବୋଲି । ଗାନ୍ଧୀଜୀଙ୍କ ସହ କଣ କେମିତି ଦେଖା ହେଲା ତାର ବିସ୍ତୃତ ବର୍ଣ୍ଣନା ରହିଛି ମୋର "ଅଗଷ୍ଟ ବିପ୍ଳବ" ବହିରେ ।

ଆମେ ଏଭଳି ଦୋ ଘାଇରେ ପଡ଼ିଛୁ । କଣ କରିବୁ ? ଗାନ୍ଧୀଜୀଙ୍କର ସ୍ପଷ୍ଟ ନିର୍ଦ୍ଦେଶ ହେଲା । ଅହିଂସକ ପ୍ରତିରୋଧ କରିବ । ଛାତି ଦେଖାଇ ଦେବ ଜାପାନୀ ଗୁଳିକୁ । ଆମ ତ୍ରିରଙ୍ଗା ପତାକା ଉଡାଇବ । କହିବ ଆମେ ବ୍ରିଟିଶକୁ ତଡ଼ିବା ଲାଗି ଲଢ଼ାଇ କରିଛୁ । କିନ୍ତୁ ତା ବଦଳରେ ତୁମକୁ ଆଲିଙ୍ଗନ କରିବାକୁ ନୁହେଁ । ତୁମେ ବି ଚାଲିଯାଅ । ଆମ ଦେଶକୁ ଆମେ ଚଳାଇବୁ; ଆମର ପତାକା ଉଡ଼ିବ । କସ୍ମିନ କାଳେ ଆତ୍ମ ସମର୍ପଣ କରିବ ନାହିଁ । ଫାସିଷ୍ଟ ଶକ୍ତି ଓ ସାମ୍ରାଜ୍ୟବାଦୀ ଶକ୍ତି ଆମର ସମାନ ଶତ୍ରୁ । ଯଦି କୌଣସି କଂଗ୍ରେସ ଲୋକ ଡରୁଆ ଭୀରୁ ଥିବ, ତାକୁ ମୋ ପାଖକୁ ପଠାଇ ଦେବ । ମୁଁ ସେବା ଗ୍ରାମରେ ଆଶ୍ରା ଦେଇ ରଖିବି ।

ଏଥିରେ ଗୁଳପୁଞ୍ଜୁଆ କଥା ନ ଥିଲା । ଏଭଳିକା ସେନାପତି ଅଧୀନରେ ସ୍ୱାଧୀନତା ଲଢ଼ାଇର ଅନ୍ୟ ଏକ ପର୍ଯ୍ୟାୟରେ ଆମେ ଯାଇ ପହଂଚିଲୁ ।



[ ୨୫ ]

## ବ୍ୟକ୍ତିଗତ ସତ୍ୟାଗ୍ରହର ତାତ୍ପର୍ଯ୍ୟ

ଗାନ୍ଧୀଜୀଙ୍କ ଆଗରେ ଥିଲା ମୁସ୍କିଲ ପରିସ୍ଥିତି । ସାମ୍ରାଜ୍ୟବାଦ ଓ ଫାସିଷ୍ଟ ଭିତରେ ଚାଲିଛି ମହାସମର । ଆମ ଦୃଷ୍ଟିରେ ସର୍ବେ ସମାନ । ଯେଉଁ ପକ୍ଷ ହାରୁ ବା ଜିତୁ ଆମର ଯାଏ କେତେ ଆସେ କେତେ । ଏତେବେଳେ ଆମେ ଜୋର ସଂଗ୍ରାମ ଆରମ୍ଭ କରିଦେଲେ ଆମର ସାମ୍ରାଜ୍ୟବାଦୀ ଶତ୍ରୁ ହରଡ ଘଣାରେ ପଡ଼ିଯିବ । ମାତ୍ର କଂଗ୍ରେସ ପୁଣି ଆନ୍ତର୍ଜାତିକ ଶାନ୍ତି ଓ ଫାସିଷ୍ଟବାଦର ଲୋପ ବି ଚାହେଁ । କେତେକଙ୍କ ମତ ହେଲା ଫାସିଷ୍ଟ ବାଦ ଧ୍ୱଂସ ପାଇଲେ ଆନ୍ତର୍ଜାତିକ ଶାନ୍ତି ପଥ ସୁଗମ ହୋଇଯିବ । ତେଣୁ କଂଗ୍ରେସ ଭିତରେ ଏକ ପ୍ରଭାବଶାଳୀ ନେତୃତ୍ୱ ପ୍ରତ୍ୟକ୍ଷ ସଂଗ୍ରାମର ବିଶେଷ ପକ୍ଷପାତୀ ନ ଥିଲେ । ଦେଶରେ ଆଉ ଏକ ମତ ଥିଲା ଏତିକି ବେଳେ ଦେଶରେ ପ୍ରବଳ ପ୍ରତ୍ୟକ୍ଷ ସଂଗ୍ରାମ ଚଳାଇବା ଉଚିତ ।

ଗାନ୍ଧୀଜୀ ତ ପୂର୍ଣ୍ଣ କ୍ଷମତା ପାଇଥିଲେ । ସେ ଏ ସବୁକୁ ପରୁଆ ନ କରି ସିଧା ସଳଖ ଲଢେଇର ଡାକରା ଦେଇଥିଲେ ତାଙ୍କ କଥାକୁ କେହି ଭାଙ୍ଗି ପାରି ନ ଥାନ୍ତେ । ମାତ୍ର ସେ ଲୋକଙ୍କ ନାଡ଼ି ଚିପି ଥିଲେ । ଆନ୍ତର୍ଜାତିକ ସ୍ଥିତିର ଗତି ଲକ୍ଷ୍ୟ କରୁଥିଲେ । ସତ୍ୟାଗ୍ରହ ନିୟମାନୁସାରେ ଶତ୍ରୁପକ୍ଷ ଅଡୁଆରେ ପଡ଼ିଥିଲା ବେଳେ ହଇରଣ କରିବା ଠିକ ନୁହେଁ । ଏଇଟା ବାସ୍ତବିକତା ହେଉ ନ ହେଉ, ସତ୍ୟାଗ୍ରହ ଶାସ୍ତ୍ର ଅନୁସାରେ ଗାନ୍ଧୀଜୀଙ୍କର ଦୃଢ଼ ବିଶ୍ୱାସ ଥିଲା ନିଜ ଶକ୍ତି ବଳରେ ସ୍ୱରାଜ୍ୟ ପ୍ରାପ୍ତି ହିଁ ଆମର କାମ୍ୟ ।

ଅବସ୍ଥାକୁ ଦେଖି ସେ ବିଗ୍ଭରିଲେ ବ୍ରିଟିଶ ସରକାରର ବିରୋଧ କରା ଯାଉଛି– ଆମକୁ ନ ପଗ୍ଭରି ଆମକୁ ଯୁଦ୍ଧ ଉଦ୍ୟମରେ ସାମିଲ କରିବା ହେତୁ । ଆମେ ଏହାର ପ୍ରତିବାଦ କରିଛୁ । କଂଗ୍ରେସ ମନ୍ତ୍ରୀ ମଣ୍ଡଳ ସବୁ ଇସ୍ତଫା ଦେଇଛନ୍ତି । ସକଳ ପ୍ରକାର ଅସହଯୋଗ ପନ୍ଥା ଧରିଛୁ । ସମ୍ମୁଖ ସଂଘର୍ଷ କରିବା ଲାଗି ଆମର ପ୍ରସ୍ତୁତି ନାହିଁ । ଯୁଦ୍ଧର ହାଉଆ ରହିଛି । ତହିଁରେ ଲୋକ ମନ ଆନ୍ଦୋଳିତ ହେଉଛି । ଯୁଦ୍ଧର ଜୟ ପରାଜୟକୁ ଲୋକେ ଉପଭୋଗ କରୁଛନ୍ତି । ଅବଶ୍ୟ ଆମେ ବ୍ରିଟିଶ ଅଧୀନରେ ଥିବାରୁ ବ୍ରିଟିଶ ପକ୍ଷ ଅର୍ଥାତ୍ ମିତ୍ର ପକ୍ଷର ପରାଜୟରେ ଆମ ଲୋକେ କିଛି ପରିମାଣରେ ଖୁସି ଥିଲା ପରି ମନେ ହେଉଛି । ତଦ୍ରୂପ ଅପର ପକ୍ଷର ପରାଜୟରେ ଗଣତନ୍ତ୍ର ରକ୍ଷା ଦୃଷ୍ଟିରୁ ଲୋକ ଖୁବ ଖୁସି ହୋଇଥିଲା ପରି ମନେ ହେଉ ନାହିଁ । ଏପରି ଅବସ୍ଥାରେ ଆମର ଲଢ଼ାଇର କ୍ଷେତ୍ର ସୀମିତ ହେବା ଉଚିତ୍ । ଆମର ଲଢ଼ାଇ ନୁହେଁ, ପ୍ରତିବାଦ ।

ତେଣୁ ଆମର ଧ୍ୱନି ହେଲା– "ଆମେ ବ୍ରିଟିଶ ଯୁଦ୍ଧରେ ଧନ ଜନ ସାହାଯ୍ୟ କରିବୁ ନାହିଁ ।"

ଏଥିଲାଗି ଗାନ୍ଧୀଜୀ କେତେକ ନିୟମ ବାନ୍ଧି ଦେଲେ । ଏଇଟା ସମୂହ ସତ୍ୟାଗ୍ରହ ନୁହେଁ, ବ୍ୟକ୍ତିଗତ ସତ୍ୟାଗ୍ରହ । ବ୍ୟକ୍ତି ବିଶେଷ "ଯୁଦ୍ଧକୁ ସାହାଯ୍ୟ କର ନାହିଁ" ବୋଲି ଦେଶବାସୀଙ୍କି କହିବେ । ଯେ କୌଣସି ଲୋକ ଇଚ୍ଛା କଲେ ଆଇନଭଙ୍ଗ କରି ପାରିବ ନାହିଁ । ସତ୍ୟାଗ୍ରହୀ କିଏ ହେବ ତାହା ଗାନ୍ଧୀଜୀ ସ୍ଥିର କରିବେ । ଗାନ୍ଧୀଜୀଙ୍କର କେତେକ ଗୁପ୍ତ ନିର୍ଦ୍ଦେଶ ମଧ୍ୟ ଏଥିଲାଗି ମିଳିଲା । କିଭଳି ବ୍ୟକ୍ତି ଓ କି ଯୋଗ୍ୟତା ଥିଲେ ସତ୍ୟାଗ୍ରହ କରି ପାରିବ ତହିଁରେ ଉଲ୍ଲେଖ ଥିଲା । ଗୁପ୍ତ ନିର୍ଦ୍ଦେଶ ଅର୍ଥ ପୁଲିସ ଯେପରି ନ ପାଏ । ସେଇଟା ପାଇଲେ ପୁଲିସ ପକ୍ଷ ଆଗରୁ ସଜବାଜ ହୋଇଯିବେ । ଗିରଫ ଆଦି କରି ଆମ ଯୋଜନାକୁ ବିଫଳ କରି ଦେବେ । ଏଥରକ ଲଢ଼ାଇ ଜେଲ ଭରିବା ନୁହେଁ– ଯୁଦ୍ଧ ସହ ଅସହଯୋଗ କରିବା ହେଉଛି ଉଦ୍ଦେଶ୍ୟ । ଏହା ଯେତେ ବେଶି ଲୋକଙ୍କ ଭିତରେ ପ୍ରଗ୍ଭରିତ ହୋଇ ପାରିବ, ସେତେ ଆମର ସଫଳତା । ତେଣୁ ଆପଣା ଛାଏଁ ଯାଇ ଜେଲ ଭରିବା ନୁହେଁ । ସେହି ହେତୁ କଂଗ୍ରେସ କମିଟି ଗୁଡ଼ିକ କେଉଁ ନୀତିରେ ସତ୍ୟାଗ୍ରହୀ ବାଛିବେ, ସେ ସଂପର୍କରେ ଗାନ୍ଧୀଜୀଙ୍କର କେତେକ ନିର୍ଦ୍ଦେଶ ଆସିଥାଏ ।

ବ୍ୟବସ୍ଥା ହେଲା– କଂଗ୍ରେସ କମିଟି ଗୁଡ଼ିକର ଅନ୍ୟ ରଚନାତ୍ମକ କାର୍ଯ୍ୟ କରିବାରେ କିଛି ବାଧା ନାହିଁ । ତାହା ଯେମିତି ଚାଲିଥିଲା, ସେମିତି ଚାଲିଥିବ । ମନ୍ତ୍ରୀ ମଣ୍ଡଳ ସିନା ଇସ୍ତଫା ଦେଲା । ଆସେମ୍ବ୍ଲି କିମ୍ବା ସ୍ୱାୟତ୍ତ ଶାସନରେ ରହିଥିବା ସଭ୍ୟମାନେ ଇସ୍ତଫା ଦେବେ ନାହିଁ । ଗାନ୍ଧୀଜୀ ଯେଉଁ ନୀତି ଧାର୍ଯ୍ୟ କରିଥିଲେ, ତଦନୁସାରେ କଂଗ୍ରେସ କମିଟି ଗୁଡ଼ିକ ତାଲିକା ତିଆର କରି ବିଶେଷ ଦୂତ ହାତରେ ଗାନ୍ଧୀଜୀଙ୍କ ପାଖକୁ ପଠାଇବେ । ଏହା ଡାକରେ ପଠାଇବା ନିମନ୍ତେ ବାରଣ ଥିଲା । କାରଣ ପୁଲିସ ଡ଼ାକ ଖୋଲେ । ଆଜି କାଲି ବି ଖୋଲା ଯାଉଛି ରାଜନୀତିକ ମାନଙ୍କର । ସ୍ୱାଧୀନ ଦେଶରେ ଏହା ଏକ ଦୋଷାବହ କାର୍ଯ୍ୟ । ତଥାପି ଚାଲିଛି । ଏବେ ତ ପୁଣି ସନ୍ଦେହ ଉପୁଜିଲେ ଅତି ତଳ ଅଫିସର ବି ବ୍ୟକ୍ତିଗତ ଚିଠି ଖୋଲି ପାରିବେ ବୋଲି ନୂଆ ଆଇନ ରାଜୀବ ସରକାର ଅଧୀନରେ ଆସିଛି । ଏହା ବ୍ୟକ୍ତିଗତ ସ୍ୱାଧୀନତା ଉପରେ ହସ୍ତକ୍ଷେପ । ସଂବିଧାନରେ ବ୍ୟକ୍ତି ସ୍ୱାଧୀନତାର ଯେଉଁ ସଂରକ୍ଷଣ କରା ଯାଇଛି, ତାହାର ଇଂଘନ କରୁଛି । ସେଥି ନିମନ୍ତେ ଜ୍ଞାନୀ ଜୈଲ ସିଂହ ରାଷ୍ଟ୍ରପତି ଥିବାବେଳେ ଏହାକୁ ମଞ୍ଜୁରୀ ଦେଲେ ନାହିଁ । ସେଥିଲାଗି କେତେ କନ୍ଦଳ ଲାଗିଲା ସମସ୍ତଙ୍କୁ ଜଣା । ପ୍ରଧାନ ମନ୍ତ୍ରୀ ନିଜର କ୍ଷମତା ପ୍ରୟୋଗ କରିବାକୁ ବସିଲେ– ବେଖାତିର କଲେ । ରାଷ୍ଟ୍ରପତିଙ୍କର ଆହୁରି ବ୍ୟାପକ କ୍ଷମତା ରହିଛି । କଥା ଏପରି ଗର୍ଣ୍ଣି ହୋଇଗଲା ଯେ ରାଷ୍ଟ୍ରପତି ପ୍ରଧାନ ମନ୍ତ୍ରୀଙ୍କି ବାହାର କରିଦେବେ କି ପ୍ରଧାନ ମନ୍ତ୍ରୀ ପାର୍ଲିମେଣ୍ଟରେ ରାଷ୍ଟ୍ରପତିଙ୍କି ଭର୍ତ୍ସନା ମୂଳକ ପ୍ରସ୍ତାବରେ ଅପମାନିତ କରିବେ– ଏହା ଅତି ତୀବ୍ର ବାଦ-ବିସମ୍ବାଦ ରୂପ ଧାରଣ କଲା । ଏଥି ଭିତରେ ଜୈଲ ସିଂହଙ୍କର କାର୍ଯ୍ୟକାଳ ପୂରିଗଲା । ସେ ଚାଲିଗଲେ କିନ୍ତୁ ପୋଷ୍ଟାଲ ବିଲରେ ମଞ୍ଜୁରୀ ଦେଲେ ନାହିଁ । ଓଲଟା ନୂତନ ରାଷ୍ଟ୍ରପତି ରାମସ୍ୱାମୀ ଭେଙ୍କଟରମନ୍‌ଙ୍କୁ ଏଥିରେ ମଞ୍ଜୁରୀ ନ ଦେବା ନିମନ୍ତେ କହି ଯାଇଛନ୍ତି । ବିଲ୍‌ଟି ସେମିତି ଝୁଲୁଛି ।

ବ୍ରିଟିଶ ସରକାର ଅମଳରେ ଏହାର କଣ ପ୍ରତିକ୍ରିୟା ସହଜେ ଅନୁମେୟ । ତେଣୁ ଗାନ୍ଧୀଜୀ ସତର୍କତା ଅବଲମ୍ବନ କରିଥିଲେ । ତାଙ୍କରି ନିର୍ଦ୍ଦେଶ ଅନୁସାରେ ଘରଚର ବୁରିଆଡୁ ସତ୍ୟାଗ୍ରହୀ ତାଲିକା ଗାନ୍ଧୀଜୀଙ୍କ ପାଖକୁ ପଠାଗଲା । ମୁଁ କଟକ ଜିଲ୍ଲା କଂଗ୍ରେସ କମିଟିର ସଂପାଦକ ଥାଏ । ଏଣେ ଇଉନାଇଟେଡ୍

ପ୍ରେସ ଏଜେନ୍‌ସି ଚଳାଉ ଥିବାରୁ ତାହା ଜରିଆରେ କିଛି ସଂବାଦ ମୋ ପାଖରେ ପହଞ୍ଚୁ ଥାଏ ।

ବ୍ୟକ୍ତିଗତ ଭବରେ ସତ୍ୟାଗ୍ରହ କରିବାର ଅର୍ଥ ହେଲା ଆମେ ବ୍ରିଟିଶ ସରକାରକୁ ବେଶି ଅଡୁଆରେ ପକାଇବା ନାହିଁ । ଆଇନ ଅମାନ୍ୟ କରିବା ନାହିଁ । ଯୁଦ୍ଧରେ ଅସହଯୋଗ ପ୍ରଚାର କରିବା । ସରକାର ଗିରଫ କଲେ ଚାଲିଯିବା । ଗିରଫ ନ କଲେ ସହର, ଗାଁ ଘରେ ଘରେ ବୁଲି ଏହି ପ୍ରଚାର ଜାରି ରଖିବା । ଏହା ହେଲା ମୋଟ ଉଦ୍ଦେଶ୍ୟ । ଏହା ଏକ ଅଭିନବ ସଂଗ୍ରାମ । ଏକ ପ୍ରକାର ନୈତିକ ଲଢାଇ । "ଷ୍ଟେଟସ୍‌ମାନ" ପରି ଇଂରେଜ ପରିଚାଳିତ କାଗଜମାନେ କୌଣସି ଠାରେ ଗିରଫ ସଂବାଦ ବାହାର କଲାବେଳେ ଲେଖୁଥିଲେ 'Crank's Corner'.

ଏହି ବ୍ୟକ୍ତିଗତ ସତ୍ୟାଗ୍ରହ ଲାଗି ଗାନ୍ଧୀ ବାଛିଲେ– ବିନୋବା ଭବେ ପ୍ରଥମ ସତ୍ୟାଗ୍ରହୀ ଓ ଜବାହାର ଲାଲ ନେହରୁ ଦ୍ୱିତୀୟ ସତ୍ୟାଗ୍ରହୀ ।



[ ୨୬ ]

# ପୁଣି ଜେଲ୍ ବାସ

ବ୍ୟକ୍ତିଗତ ସତ୍ୟାଗ୍ରହରେ ପ୍ରଥମ ସତ୍ୟାଗ୍ରହୀ ଭାବେ ବଛା ହେଲେ ବିନୋବା ଭାବେ । ଜବାହାର ଲାଲ ନେହରୁଙ୍କୁ ଦ୍ୱିତୀୟ କରି ବିନୋବାଙ୍କୁ ପ୍ରଥମ ବୋଲି ମହାତ୍ମା ଗାନ୍ଧୀ ଘୋଷଣା କରିବାରୁ ସାରା ଭାରତ ଚକିତ ହୋଇଗଲା । ଗାନ୍ଧୀ ପରିବାର ବାହାରେ ବିଶେଷ କେହି ତାଙ୍କ ନାମ ଶୁଣି ନ ଥିଲେ । ସେବାଗ୍ରାମ ଠାରୁ ଅଳ୍ପ ଦୂରରେ ତାଙ୍କର ପୋନାର ଆଶ୍ରମ ଥିଲା । ନୀରବରେ ସେ ଗାନ୍ଧୀ ଦର୍ଶନକୁ ପୋଷାକ ଓ ରୂପ ଦେବାର ସାଧନା କରୁଥିଲେ । ପଣ୍ଡିତ, ବିଦ୍ୱାନ, ବହୁ ଭାଷା ଜ୍ଞାନୀ, ବେଦ, ଉପନିଷେଦ ଓ ଗୀତାର ଟିକାକାର, ସତ୍ୟାନ୍ୱେଷୀ, ସାଧୁ ଓ ନିର୍ମଳ ବ୍ୟକ୍ତିତ୍ୱ । ପ୍ରାଚୀନ ସଂସ୍କୃତିର ସେ ଏକ ପ୍ରତିବିମ୍ବ ଥିଲେ କହିଲେ ଚଳେ । ମୁନୀ ଋଷୀଙ୍କର ସକଳ ଗୁଣ ତାଙ୍କ ଠାରେ ରହିଥିଲା । ତେଣୁ ତାଙ୍କୁ କହିଲେ ସନ୍ଥ ବିନୋବା । ସେ ନିଜକୁ ବାବା ବୋଲି ନାମ ଦେଇ-ଥିଲେ । ତାଙ୍କ ବାଣୀରେ ଗୋଟାଏ ଅଦ୍ଭୁତ ପ୍ରତିଭାର ପରିଚୟ ମିଳୁଥିଲା । ଗାନ୍ଧୀଜୀଙ୍କ ପରେ ଗାନ୍ଧୀବାଦ ଓ ଗାନ୍ଧୀ ପନ୍ଥାକୁ ସେ ଏକ ନୂତନ ରୂପ, ସଂଜ୍ଞା ଦେଇଥିଲେ । ଭୂଦାନ ଆନ୍ଦୋଳନ ଥିଲା ଏକ ଅପୂର୍ବ ଅର୍ଥନୀତିକ ଓ ସାମାଜିକ ବିପ୍ଳବର କଳ୍ପନା– ଅହିଂସା ରୀତିରେ ଭୂମିକ୍ରାନ୍ତି ଜନମାନସକୁ ଦୋହଲାଇ ଦେଲା । ନୂତନ ଜନ ବିଦ୍ରୋହ ଉଙ୍କୁରି ଉଠିଲା । ଏ ଭୂଦାନ ଆନ୍ଦୋଳନ ଏପରି ପ୍ରଭାବ ସୃଷ୍ଟି କଲା ଯେ, ଜୟପ୍ରକାଶ ନାରାୟଣଙ୍କ ପରି ଏକ ବିଜ୍ଞ ରାଜନୀତିଜ୍ଞ ପ୍ରତ୍ୟକ୍ଷ ରାଜନୀତିରୁ ବିଦାୟ ନେଇ ଜୀବନ ଦାନ କରିଦେଲେ । ଶେଷରେ ବିନୋବାଙ୍କ ଚିନ୍ତାଧାରା ଓ କାର୍ଯ୍ୟ ଏପରି ଢଙ୍ଗ ଧରିଲା ଯେ ଲୋକେ ତାଙ୍କୁ

'ସରକାରୀ ସନ୍ଥ'' ବୋଲି ନାମକରଣ କଲେ । ସୁତରାଂ ସେ ଥିଲେ ଗାନ୍ଧୀଜୀଙ୍କର ନୈତିକ ଉତ୍ତରାଧିକାରୀ । ତେଣୁ ସେ ହେଲେ ପ୍ରଥମ ସତ୍ୟାଗ୍ରହୀ ।

ଜବାହାରଲାଲ ଥିଲେ ରାଜନୀତିକ ଉତ୍ତରାଧିକାରୀ । ଗାନ୍ଧୀଜୀଙ୍କ ପରେ ସେ ହେଲେ ଦ୍ୱିତୀୟ ଭାରତୀୟ । ରାଜନୀତିରେ ତାଙ୍କର ଅଖଣ୍ଡ ପ୍ରଭାବ ବହୁକାଳ ରହିଲା । ଦେଶର ଶାସନର ଅଧିକାରୀ ହେଲେ ଓ ଲୋକଙ୍କ ହୃଦୟରେ ଏକ ବିଶେଷ ସ୍ଥାନ ଅଧିକାର କରିଥିଲେ । ଭାରତ ବର୍ଷରେ ଗଣତାନ୍ତ୍ରିକ ପଦ୍ଧତି ପ୍ରଚଳନରେ ତାଙ୍କର ଅବଦାନ ଅତୁଳନୀୟ । ସେ ଥିଲେ ଜଣେ ସ୍ୱାଭିମାନୀ ଏବଂ ଭାରତ ବର୍ଷର ସମ୍ମାନ ମର୍ଯ୍ୟାଦାକୁ ପୃଥିବୀ ପୃଷ୍ଠରେ ଅତି ଉଚ୍ଚ ସ୍ଥାନରେ ରଖି ଦେଇ ଗଲେ । କିନ୍ତୁ ଗାନ୍ଧୀଜୀଙ୍କ ରାଜନୀତିକ ଆଦର୍ଶ ଓ ଗାନ୍ଧୀଜୀଙ୍କ ଦର୍ଶନକୁ ଜବାହାରଲାଲ ଓ ବିନୋବା କେତେଦୂର ସଫଳ କରିଛନ୍ତି ତାହା ଏକ ବିଚାର୍ଯ୍ୟ ବିଷୟ ହୋଇ ରହିଲା ।

ବିନୋବା ଗିରଫ ହେବା ପରେ ଜବାହାରଲାଲ ସତ୍ୟାଗ୍ରହ କଲେ । ତାଙ୍କୁ ସଶ୍ରମ କାରାଦଣ୍ଡ ମିଳିଲା । ସେ ମକଦ୍ଦମା ଲଢ଼ିଲେ ନାହିଁ, ମାତ୍ର କୋର୍ଟରେ ଏକ ବିବୃତି ଦେଲେ । ଉପର କଂଗ୍ରେସରୁ ନିର୍ଦ୍ଦେଶ ଆସିଲା— ଏହି ବିବୃତିକି ନିଜ ନିଜ ଭାଷାରେ ଅନୁବାଦ କରି ବିତରଣ କରିବା ନିମନ୍ତେ । ବ୍ରିଟିଶ ସରକାର ବିବୃତିଟିକୁ ବେଆଇନ ଘୋଷଣା କରିଦେଇ ଥିଲା । ତେଣୁ ଛାପିବାର ବାଟ ନ ଥିଲା । ମତେ ଗୋଟିଏ ବାଟ ଦିଶିଲା । ପ୍ରକାଶ୍ୟ ବାଟ ନୁହେଁ, ପୁଣି ସେହି ଲୁଚ୍ଛପା ପନ୍ଥା ।

ସେବକାଳକୁ ଜିଲ୍ଲାବୋର୍ଡ ଗୁଡ଼ିକ ରହିଥାଏ । ବହୁ ବର୍ଷ ପରେ ସେଗୁଡ଼ିକ ଉଠାଇ ଦିଆଗଲା । କଟକ ସଦର ଲୋକାଲ ବୋର୍ଡ କଂଗ୍ରେସ ଅଧୀନରେ ଥିଲା । ଅର୍ଥାତ୍ କଂଗ୍ରେସ ଲୋକ ତହିଁର କର୍ମକର୍ତ୍ତା ହୋଇଥିଲେ । ସେ ଅଫିସରେ ସାଇକ୍ଲୋଷ୍ଟାଇଲ ମେସିନ୍ ଥିଲା । ମୁଁ ବିବୃତିଟି ଅନୁବାଦ କଲି ଏବଂ ମୋର ସହକାରୀ ଗୋବିନ୍ଦ ଚନ୍ଦ୍ର ମହାନ୍ତି ତାକୁ ଛପାଇ ଆଣିଲେ ଲୋକାଲ ବୋର୍ଡ ଅଫିସରେ । କପି ଗୁଡ଼ିକ ଆସି ଜିଲ୍ଲା କଂଗ୍ରେସ କମିଟି ଅଫିସରେ ରହିଲା । ସୁବିଧା ଦେଖି ବଣ୍ଟନର ବ୍ୟବସ୍ଥା କରାଯିବ । ମୁଁ ଥାଏ ସେକ୍ରେଟରୀ । ଗୋବିନ୍ଦ ଚନ୍ଦ୍ର ମହାନ୍ତି

ଥାଆନ୍ତି ଆସିଷ୍ଟାଣ୍ଟ ସେକ୍ରେଟରୀ । ଜିଲ୍ଲା କଂଗ୍ରେସ ଅଫିସ ସ୍ୱରାଜ୍ୟ ଆଶ୍ରମର ତଳ ମହଲାର ଗୋଟିଏ ଘରେ ଥାଏ । ତହିଁର ଏକ ଚାବି ମୋ ପାଖରେ ଥାଏ ଅନ୍ୟଟି ଗୋବିନ୍ଦଙ୍କ ପାଖରେ ।

ଦିନେ ହଠାତ୍ ସନ୍ଧ୍ୟାରେ ଲୋକ ଯାଇ ମୋ ପାଖରେ ପହଂଚିଲେ । ପୁଲିସ ଆସିଛନ୍ତି । ତଲାସ କରିବାର ଓ୍ୟାରଣ୍ଟ ଆଣିଛନ୍ତି । ମତେ ଖୋଜୁଛନ୍ତି ଓ ଘର ଖୋଲିବା ଚାହାଁନ୍ତି । ମୁଁ ସାଙ୍ଗେ ସାଙ୍ଗେ ଗାଧୋଇ ପଡ଼ି ସ୍ୱରାଜ ଆଶ୍ରମକୁ ଧାଇଁଲି । ସେତେବେଳେ ସକାଳେ ସନ୍ଧ୍ୟାରେ ଦୁଇବେଳା ମୁଁ ଗାଧୋଉ ଥିଲି । ସନ୍ଧ୍ୟା ଗାଧୁଆ ପରେ କିଛି ବେଳ ଟିକିଏ ପୂଜା ପୂଜିରେ ବସୁଥିଲି । ସେଦିନ ଗାଧୋଇ ପଡ଼ି ସିଧା ଗଲି । ମୋର ଗୋଟାଏ କାହିଁକି ଆଶଙ୍କା ହେଲା ଯେ ମୁଁ ବୋଧ ହୁଏ ଗିରଫ ହେବି । ମୋ ନାମ ବ୍ୟକ୍ତିଗତ ସତ୍ୟାଗ୍ରହୀ ତାଲିକାରେ ନ ଥିଲା । ମୁଁ ଇ ତ ତାଲିକା କରିଥିଲି । କଂଗ୍ରେସ କର୍ମକର୍ତ୍ତା କେବେ ଯିବେ ସେ ବିଷୟ ଗାନ୍ଧୀଜୀ ପରେ ନିର୍ଦ୍ଦେଶ ଦେବେ । ସ୍ୱରାଜ୍ୟ ଆଶ୍ରମରେ ପହଂଚି ଦେଖେ ତ ଇନ୍‌ସ୍ପେକ୍ଟର ଗୌର ଚନ୍ଦ୍ର ମହାନ୍ତି କେତେକ ଅଫିସର ଓ କନେଷ୍ଟବଲଙ୍କୁ ଧରି ଛିଡ଼ା ହୋଇଛନ୍ତି । ସେମାନେ ବୋଧହୁଏ କେଉଁ ଠଉରିଆ ଠାରୁ ଖବର ପାଇଥିଲେ । କଂଗ୍ରେସ ଅଫିସ ତଲାସ କରିବେ ବୋଲି ମତେ ଓ୍ୱାରଣ୍ଟ ଦେଖାଇବାରୁ ମୁଁ ଗୋବିନ୍ଦଙ୍କୁ କହିଲି ତାଲା ଖୋଲି ଦବାକୁ । ଅଫିସ ଖୋଲା ହେଲା । ମୁଁ ଯାଇ ଯେଉଁ ସପ ଉପରେ ବସେ, ସେଇଠି ବସି ପଡ଼ିଲି । ସପ ତଳେ ଗାନ୍ଧୀଜୀଙ୍କ ଗୁପ୍ତ ନିର୍ଦ୍ଦେଶ ଟାଇପ ହୋଇ ରହି ଥାଏ । ତା ଉପରେ ଗୋଟିଏ ଛୋଟ ଡେସ୍କ ପକାଇ ମୁଁ ଲେଖାଲେଖି କରେ । ସାଇକ୍ଲୋଷ୍ଟାଇଲ କପି ଗୁଡ଼ିକ ସବୁ ଥୁଆ ହୋଇଥିଲା । ସେ ଗୁଡ଼ିକ ପାଇ ଭରି ଖୁସି ହୋଇଗଲେ । ମାତ୍ର ସାଙ୍ଗେ ସାଙ୍ଗେ ଅନ୍ୟ କାଗଜ ପତ୍ର ଖେଳାଇବାକୁ ଲାଗିଲେ । ମୋର ଡର ଯେ ଗୁପ୍ତ ନିର୍ଦ୍ଦେଶ କାଳେ ପାଇଯିବେ ।

ଗୌର ଚନ୍ଦ୍ର ମହାନ୍ତି ଥିଲେ ନବକୃଷ୍ଣ ଚୌଧୁରୀଙ୍କ ମାମୁଁ ପୁଅ ଭାଇ । ମୁଁ ଆଗରୁ ଚିହ୍ନି ଥାଏ । ମୋର କେମିତି ଗୋଟାଏ ଧାରଣା ଥିଲା ସେ ଆମ ଆଗରେ କିଛି କପଟ ରଖିବେ ନାହିଁ । କଣ ଖୋଜୁଛ ବୋଲି ପଚାରନ୍ତେ, ସେ କହିଲେ ଅନୁବାଦ କପିଟା ମିଳିଗଲେ ଆମେ ଆଉ କିଛି ଦେଖିବୁ ନାହିଁ ।

ମୁଁ ଅନୁବାଦ କରିଥିଲି ଏବଂ କପିଟି ସେହିଠାରେ ଥିଲା । ମୁଁ ସେଇଟା ତାଙ୍କ ହାତକୁ ବଢ଼ାଇ ଦେଲି । ତାକୁ ପାଇ ସାଙ୍ଗେ ସାଙ୍ଗେ ମୋ ନାମରେ ଓ ଗୋବିନ୍ଦଙ୍କ ନାମରେ ୱାର୍ଣ୍ଟ ହୋଇଗଲା । ମୁଁ ଅନୁବାଦ କରିଥିଲି ଏକ ବେଆଇନ ବିବୃତିକି– ଏହା ହେଲା ମୋର ଅପରାଧ । ଗୋବିନ୍ଦ ଘରେ ଖୋଲିଥିବାରୁ ତାଙ୍କ ମାର୍ଫତରେ (Possession) ରହିଥିବା ଦୋଷ ତାଙ୍କୁ ଲାଗିଲା । ଗୋବିନ୍ଦ ଚନ୍ଦ୍ର ମହାନ୍ତି ପରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଲେ ଓ ଓଡ଼ିଶାର ସେ ଜଣେ ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା । ଆମ ଦି ଜଣଙ୍କୁ ଗିରଫ କରାଗଲା । କଚେରୀରେ ବିଚାର ହେଲା । ସଜା ମିଳିଲା ଏକ ବର୍ଷ ସଶ୍ରମ କାରାବାସ, ୫୦୦ ଟଙ୍କା ଜୋରିମାନା– ନ ଦେଲେ ଆଉ ଅଧିକା ଚାରି ମାସ ଭୋଗିବାକୁ ପଡ଼ିବ । ଆମକୁ 'ବି' କ୍ଲାସ ମିଳିଲା । ସେଥିରେ କଣ ସୁବିଧା ହେଲା ପରେ ଲେଖିବି । ଏହା ହେଲା ମୋର ୪ର୍ଥ ଥର ଲାଗି ଜେଲ ଦଣ୍ଡ ।

ମୁଁ ଇଉନାଇଟେଡ ପ୍ରେସର ସଂପାଦକ ଥିଲି । ବିଧିବଦ୍ଧ ଅଫିସ ଓ ଷ୍ଟାଫ୍ ଥାଆନ୍ତି । ଆଶ୍ୱାସନାର କଥା ହେଲା ଯେ ମୋର ବନ୍ଧୁ "ଅମୃତ ବଜାର" ପତ୍ରିକାର ସଂବାଦ ଦାତା ମୋହିତ କୁମାର ମୈତ୍ର ଅଫିସ ଚଳିବାର ସବୁ ବ୍ୟବସ୍ଥା କଲେ ଏବଂ ଇଉନାଇଟେଡ ପ୍ରେସ କର୍ମକର୍ତ୍ତାଙ୍କୁ ବୁଝାଇ ଦେଲେ । ମୁଁ ଫେରିଲେ ଯେମିତି ଅଫିସ ଫେରି ପାଇବି, ସେମିତିକା ବ୍ୟବସ୍ଥା ହୋଇଗଲା ।

卐

[ ୨୭ ]

# ଜେଲ ଯାତ୍ରାରେ ପୁଲିସର ହାତ

ମୋର ଏଭଳି ଭାବରେ ଗିରଫରୁ ସ୍ପଷ୍ଟ ପ୍ରମାଣିତ ହେଲା ଯେ ପୁଲିସ ନିଜର ଭାଇ ବନ୍ଧୁ ହେଲେ ବି ତାଙ୍କୁ ବିଶ୍ୱାସ କରିବା ବିପଜ୍ଜନକ । ସ୍ୱରାଜ୍ୟ ଆନ୍ଦୋଳନକୁ ଦମନ କରିବାର କାର୍ଯ୍ୟ ପୁଲିସର । ବ୍ରିଟିଶ ସରକାର ତାଙ୍କୁ ଏଥିଲାଗି ଲଗାଇ ଥାଏ । ଏଥିରେ ବିସ୍ମିତ ହେବାର ନାହିଁ । ମାତ୍ର ସ୍ୱାଧୀନତା ଆନ୍ଦୋଳନ ବେଳେ ଦେଖା ଯାଇଛି ପୁଲିସଙ୍କ ଭିତରେ ନିଶ୍ଚିତ ଭାବରେ ଜାତୀୟ ଆନ୍ଦୋଳନକୁ ସମର୍ଥନ ଦେବା ଲୋକ କେତେକ ବରାବର ରହିଥିଲେ । ତଳ ସ୍ତରର ଲୋକେ ଯେ ମାରପିଟ୍ କରନ୍ତି, ସେମାନେ ତ ସର୍ବଦା ଅତି ସହାନୁଭୂତିଶୀଳ; କର୍ତ୍ତବ୍ୟ ପାଳନ କରନ୍ତି । ସେଇଥି ଲାଗି ସରକାର ବିବୃତିରେ ଯେ ବାହାରେ ·Mild Lathi-Charge ଅର୍ଥ ମୃଦୁ ଲାଠିମାଡ ସେଥିରେ ବହୁ ସତ୍ୟତା ରହିଛି । ଲାଠି ଯେ ଆଦେଶ ଦିଆଯାଏ ସେଥିରେ ତ ମୃଦୁ କଠୋର କିଛି ନ ଥାଏ । କିନ୍ତୁ ଜାତୀୟ ଆନ୍ଦୋଳନ ବେଳେ ସାଧାରଣତଃ ଲକ୍ଷ୍ୟ କରା ଯାଇଛି— ପୁଲିସ ଅର୍ଡର ପାଇଲା ମାତ୍ରେ ଲାଠି ଘୁରାନ୍ତି— ମାଡ ଦେବା ଅପେକ୍ଷା ଲାଠିରେ ଘଉଡାଇ ଦେବାର ଚେଷ୍ଟା କରନ୍ତି । କଦବା କେମିତି କାହାରି ଠାରେ ଜୋରରେ ବାଜି ଯାଏ । ଯେଉଁଠି ପ୍ରତିରୋଧ ହୁଏ, ଟେକା ପଥର ପଡେ, ସେଠି ହୁଏତ ରୀତିମତ ସଂଘର୍ଷ । ସତ୍ୟାଗ୍ରହୀମାନେ ପ୍ରତିରୋଧ କରନ୍ତି ନାହିଁ; ତାହା ତାଙ୍କର ନୀତି ନୁହେଁ । ତାର ଏକ ଲୁକ୍କାୟିତ ପ୍ରଭାବ ପୁଲିସ ଉପରେ ପଡେ । ସାରା ଆନ୍ଦୋଳନ ଭିତରେ ଓଡ଼ିଶାରେ ଲାଠି ମାଡରେ ମୃତ ବା ଗୁରୁତର ଆଘାତ ପ୍ରାପ୍ତ ହେବା ବିବରଣ ଖୁବ ବେଶି ନ ଥିଲା । ଯେଉଁଠି ଇଂରେଜ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ବା ତାଙ୍କ ବୋଲକରା

ବଡ ଅଫିସର ଥାଆନ୍ତି, ସେମାନେ ନାନା ଉପଦ୍ରବ ସହ ଜଡ଼ିତ । କଟକ ସହରରେ ସ୍ୱରାଜ୍ୟ ଆଶ୍ରମ ପୁଲିସ ଦଖଲରେ ଥାଏ; ତାକୁ ଉଦ୍ଧାର କରିବା ନିମନ୍ତେ ସତ୍ୟାଗ୍ରହୀ ବାହିନୀ ବାରମ୍ବାର ଆଶ୍ରମ ଆକ୍ରମଣ କଲେ । ସେଥିରେ ସୁପରିଣ୍ଟେଣ୍ଡେଣ୍ଟ ଲେନ୍ ସାହେବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ନିର୍ମମ ପ୍ରହାର ହୋଇଥିଲା । ସେ ନିଜେ ବ୍ୟାଟନ ଧରି ପିଟିଲେ । କେତେକଙ୍କ ମୁଣ୍ଡ ଫାଟିଲା– ମାଡରେ ଦେହ ଫୁଲିଗଲା । ଏଇଟା ଯେ ପୂରା ଶାସ୍ତି ହେଲା ତାହା ନୁହେଁ । ଆଘାତପ୍ରାପ୍ତ ଅବସ୍ଥାରେ ଗିରଫ କରାଯାଏ । ବେଶି ମାଡ ଖାଇବାଟା ବିଶେଷ ଅପରାଧ ବୋଲି ଧରାଯାଏ ଏବଂ ମାଜିଷ୍ଟ୍ରେଟମାନେ ସେହି ଅନୁସାରେ କଡା ସଜା ଦିଅନ୍ତି ।

ଆଉ ଦଳେ ଜାତୀୟ ଭାବାପନ୍ନ ପୁଲିସ ଅଫିସର ଥାଆନ୍ତି । ସେମାନେ ଗୋପନରେ ସବୁ ପ୍ରକାର ସାହାଯ୍ୟ କରିବାକୁ ପ୍ରସ୍ତୁତ । ୧୯୪୨ ଅଗଷ୍ଟ ବିପ୍ଳବ ବେଳେ ଦେଖା ଯାଇଛି ବଡ ବଡ ପୁଲିସ ଅଫିସର ଅଣ୍ଡର ଗ୍ରାଉଣ୍ଡରେ ରହିଥିବା ନେତାମାନଙ୍କୁ ଆଶ୍ରୟ ଦିଅନ୍ତି– ବଡ଼ ବଡ ମିଲିଟରୀ ଅଫିସରଙ୍କ ଗୃହରେ ବି ଅନେକେ ଆଶ୍ରା ପାଇଛନ୍ତି । କେତେକ ଆଇ.ସି.ଏସ୍. ଅଫିସରଙ୍କ ମଧ୍ୟ ଭରସା ରହିଥିଲା । ୧୯୪୨ରେ ଗୋଟାଏ ଉଦ୍ୟମ ହୋଇଥିଲା ଭାରତୀୟ ଆଇ.ସି.ଏସ୍. ଅଫିସରଙ୍କୁ ଇସ୍ତଫା ଦେବା ଲାଗି । ବିହାରର ରାମ ନନ୍ଦନ ମିଶ୍ର ଲୁଚିକରି ଆସି ମୋତେ ଗୋପନୀୟ ସ୍ଥାନରେ ଯେତେବେଳେ ଭେଟିଲେ, ଏପରି ଏକ ଉଦ୍ୟମ ହେଉଛି ବୋଲି ଜଣାଇ ଥିଲେ । ସେ ଥିଲେ ଖୁବ ସାହାସୀ । ସେତେବେଳେ ଏଲ.ପି. ସିଂହ କଟକର ଜିଲା ମାଜିଷ୍ଟ୍ରେଟ । ସେ ପରେ ବହୁ ଉପରକୁ ଉଠିଲେ । ଭାରତ ସରକାରର ହୋମ ସେକ୍ରେଟରୀ ଓ ବହୁକାଳ ଗଭର୍ଣ୍ଣର ରହିବା ପରେ ଏବେ ଅବସର ଜୀବନ ଯାପନ କରୁଛନ୍ତି । ସେ ହେଉଛନ୍ତି ରାମ ନନ୍ଦନଙ୍କ ନିଜ ଜିଲାର ଲୋକ । ରାମ ନନ୍ଦନ ଧାଇଁଲେ ସାହସ କରି ତାଙ୍କ ପାଖକୁ । ତାଙ୍କ ସହିତ ଆଲୋଚନା କରୁଛନ୍ତି ଏହି ସମୟରେ ସି.ଆଇ.ଡ଼ି. ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ରେନରଙ୍କ ପାଖରୁ ତାଙ୍କ ପାଖକୁ ଟେଲିଫୋନ ଆସିଲା । ରାମ ନନ୍ଦନ ମିଶ୍ର ତୁମ ସେଠି ଅଛି କି ? ଏଲ.ପି. ସିଂହ ତୁଆତେ ଜବାବରେ କହିଲେ– ମୁଁ ତ ଠିକ ତୁମକୁ ଜଣାଇବାକୁ ଯାଉଥିଲି । ସେ ଥିଲା; ଏଇ ପଳାଇ ଗଲା । ଏଲ.ପି. ସିଂହଙ୍କ ପାଖରୁ ଆସୁ ଆସୁ ପୁଲିସ ରାମ ନନ୍ଦନଙ୍କୁ ଗିରଫ କରି ନେଲେ । ମାତ୍ର ଏଲ.ପି. ସିଂହ

ରମ ନନ୍ଦନଙ୍କୁ ସେଠି ଅଟକାଇ ଗିରଫ କଲେ ନାହିଁ । ତାଙ୍କ କଥା ଶୁଣିଲେ । ଅବଶ୍ୟ ଇସ୍ତଫା ଦେବା ଲାଗି ସେ ସମ୍ମତ ହୋଇ ନ ଥିଲେ । ସେଇଟା ଅଲଗା କଥା । ମାତ୍ର ସେ ଯେ ଜଣେ ଜାତିପ୍ରେମୀ, ଏଥିରେ ତ ସନ୍ଦେହ ନାହିଁ ।

ଏହି ଭଳି ବହୁତ ଛୋଟ ଛୋଟ ଦୃଷ୍ଟାନ୍ତ ଅଛି । ଆଇନ ଅମାନ୍ୟ ଆନ୍ଦୋଳନ ବେଳେ ପୁଲିସର ପ୍ରଧାନ ଚଡ଼ଉ ହୁଏ ଲିଥୋ ମେସିନ ଆଦି ଉପରେ । ଛାପାଖାନା ଆଦିରେ ତ ଛାପା ହୋଇ ପାରୁ ନ ଥାଏ । ଅର୍ଡିନାନ୍‌ସ କରି ବାରଣ ହୋଇଥାଏ । କେହି ଲଂଘନ କଲେ ଛାପାଖାନାରେ ସରକାର ତାଲା ପକାଇ ଦିଏ । ସେମିତି ଗିରଫ ହେବା ଆଉ ଗୋଟିଏ କଥା । ଅଗ୍ରନକ ଘରୁ ଗିରଫ କରା ଯାଉ ନ ଥିଲା । ସଭା ବା ପିକେଟିଂ ଆଦି ଭିନ୍ନ କଥା । ମାତ୍ର ଘରୁ ଗିରଫ କରିବାକୁ ହେଲେ ବିଧିବଦ୍ଧ ଓ୍ୱାରେଣ୍ଟ ବାହାରୁ ଥିଲା । ପୁଲିସ ଯାଇ ଘରୁ ଗିରଫ କରି ଆଣନ୍ତି । ଆମ ଓଡ଼ିଶା ପୁଲିସଙ୍କ ଭିତରେ ଲକ୍ଷ୍ମଣ ମିଶ୍ର ଜଣେ ପୁଲିସ ଅଫିସର । ଏବେ ବି ବଂଚିଛନ୍ତି । ସବ୍ ଇନ୍‌ସ୍ପେକ୍ଟର ଠୁ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ହୋଇ ଅବସର ନେଇ ରହିଛନ୍ତି ୧୯୫୯ ମସିହାରୁ । ରାୟ ସାହେବ ଉପାଧି ପ୍ରାପ୍ତ । ସେ କାହାରି ଗିରଫ ହେବାର ସଂବାଦ ଆଗରୁ ଗୋପନରେ ଜଣାଇ ଦେଉଥିଲେ । ତାହା ହେଲେ ସେମାନେ ପ୍ରସ୍ତୁତ ହୋଇ ପାରୁ ଥିଲେ । ସେ ଏକ ମଜାର କଥା କହନ୍ତି । ହରେକୃଷ୍ଣ ମହତାବଙ୍କୁ ଇନଫର୍ମର ଭାବରେ ୫୦ ଟଙ୍କା ପାରିତୋଷିକ ଦେଉଥିଲେ । ଲିଥୋ ମେସିନ ମିଳିଲେ ଇନଫର୍ମରକୁ ୫୦ ଟଙ୍କା ମିଳୁଥିଲା । ସେତେବେଳେ ୫୦ ଟଙ୍କା ମାନେ ବହୁତ ବେଶି । ଲକ୍ଷ୍ମଣ ମିଶ୍ର ମହତାବଙ୍କୁ ଖବର ଦେଲେ ମୁଁ ଅମୁକ ଯାଗା ସର୍ଚ୍ଚ କରିବାକୁ ଆସିବି । ତୁମେ ସେଠି ଗୋଟାଏ ଭଙ୍ଗା ଲିଥୋ ମେସିନ ରଖାଇ ଦେଇଥିବ । ଭଲ ମେସିନ୍ ଉଠାଇଁ ନିଆ ହେଲା । ସରକାରଙ୍କ ନିର୍ଦ୍ଦେଶ ପାଳନ ହେଲା । ଲିଥୋ ମେସିନ ମିଳିଲା କିନ୍ତୁ ଭଙ୍ଗା । ଲକ୍ଷ୍ମଣ ମିଶ୍ର ସରକାରୀ ଗୁପ୍ତ ରିପୋର୍ଟରେ ମହତାବଙ୍କୁ ଇନଫର୍ମର ବୋଲି ଦର୍ଶାଇ ୫୦ ଟଙ୍କା ତାଙ୍କୁ ଦେଇଥିଲେ । ଏମିତି ବହୁ ଲୋକଙ୍କୁ ଗିରଫଦାର ଓ୍ୱାରେଣ୍ଟ ବାହାରୁଛି ବୋଲି ଖବର ଦେଇ ବିଦା କରି ଦିଅନ୍ତି । ସେ ନ ଥାନ୍ତି; ଓ୍ୱାରେଣ୍ଟ ବେକାର ହୋଇଯାଏ ।

କିନ୍ତୁ ଅନ୍ୟ ପକ୍ଷରେ ବୋଧହୁଏ ବେଶି ଭାଗ ପୁଲିସ ଅଫିସର ଥାଆନ୍ତି ଯେଉଁମାନେ ବ୍ରିଟିଶ ସରକାରର ନିକମ୍ମଛା ଅଫିସର ହୋଇ ଜାତୀୟ

ଆନ୍ଦୋଳନକୁ ଦବାଇବାରେ ବାହାଦୁରୀ ଦେଖାନ୍ତି । ଗୌର ଚନ୍ଦ୍ର ମହାନ୍ତି ନବକୃଷ୍ଣ ଚୌଧୁରୀଙ୍କର ମାମୁଁ ପୁଅ ଭଇ ହେଲେ ସୁଦ୍ଧା ଥିଲେ ବ୍ରିଟିଶ ସରକାରର ସଚ୍ଚା ଗୋଲାମ । ତାଙ୍କୁ ଦେଖି ମୋର ଭ୍ରମ ଧାରଣା ଦୂର ହୋଇଗଲା । ସେ ବି ରାୟ ସାହେବ ହେଲେ; ଏସ୍. ପି. ପଦବୀକୁ ଉନ୍ନୀତ ହୋଇଥିଲେ । ତାଙ୍କର କାରସାଦୀରୁ ଆମେ ଦି ଜଣ ସଜା ଭୋଗିଲୁ । ଆମର ସତ୍ୟାଗ୍ରହ କରିବାର ନ ଥିଲା କିମ୍ବା ଗାନ୍ଧୀଜୀଙ୍କ ପାଖକୁ ଆମ ନାମ ତାଲିକା ଯାଇ ନ ଥିଲା । ପୁଲିସ ଆସିଥିଲେ ତଲାସ କରି ବେଆଇନ ପ୍ରଗ୍ରର ପତ୍ର ଜବତ୍ କରିବା ନିମନ୍ତେ । ତାହା ସେମାନେ ପାଇଲେ; ଆମେ ସେଥିରେ ତାଙ୍କୁ ସହଯୋଗ କଲୁ ଓ ବିଶ୍ୱାସ କଲୁ । ଏହା ହେଲା ଆମର ଦୋଷ । ସେ ସରକାର ପାଖରେ ଭଲେଇ ହେବା ନିମନ୍ତେ ଏମିତି କଲେ । କେସ୍ ନିମନ୍ତେ କାଗଜ ତିଆରି ଲାଗି ତାଙ୍କ ତଳ ଅଫିସରକୁ କହିବାରୁ ସେ କହିଲେ– "ସାର୍, ଯେଉଁଥି ପାଇଁ ଆସିଥିଲେ, ତାହା ମିଳି ସାରିଲାଣି ।" ସେ କ୍ରୋଧରେ ଲାଲ୍ ଆଖି ଦେଖାଇ ତାଙ୍କୁ ଭର୍ତ୍ସନା କରି କହିଲେ– "Book them."

ମୋର ଏଥର ଜେଲ ବି ପୁଣି ଜବାହାର ଲାଲଙ୍କ ସହିତ ସଂପର୍କିତ ।

卐

[ ୨୮ ]

# ବ୍ରହ୍ମପୁର ଜେଲ

କଚେରୀରେ ରାୟ ଘୋଷଣା ହେବା ପରେ ଆମକୁ ବ୍ରହ୍ମପୁର ଜେଲକୁ ପଠାଇ ଦିଆଗଲା । ବିହାର ଓଡ଼ିଶାରେ ଥିଲା ବେଳେ ହାଜାରୀବାଗ ଜେଲ ପରି ଓଡ଼ିଶା ଭିତରେ ଉଚ୍ଚ ଶ୍ରେଣୀର ବନ୍ଦୀଙ୍କ ଲାଗି ବ୍ରହ୍ମପୁର ଜେଲ ସ୍ଥିର କରାଗଲା । ସମୁଦ୍ର ନିକଟ ହୋଇ ଥିବାରୁ ଜଳବାୟୁ ବି ଭଲ ।

ବ୍ରହ୍ମପୁର ଜେଲ ବଢ଼ି ଏବେ ଗୋଟିଏ ବିରାଟ କେନ୍ଦ୍ର ଜେଲ ହୋଇ ଗଲଣି । ୧୯୪୨ ଅଗଷ୍ଟ ଆନ୍ଦୋଳନ ବେଳକୁ ଶତ ସଂଖ୍ୟାରେ ସିକ୍ୟୁରିଟି ବନ୍ଦୀଙ୍କୁ ଅଟକ କରା ଯାଇଥିଲା । ଏହି ଠାରେ ପ୍ରାୟ ସମସ୍ତଙ୍କ ପାଇଁ ରହିବାର ବ୍ୟବସ୍ଥା ହୋଇଥିଲା । କିନ୍ତୁ ଆମେ ୧୯୪୦ରେ ଗଲା ବେଳକୁ ଏହା ଥିଲା ଛୋଟ ଜେଲ । କିଛି ଅଂଶରେ ଅନ୍ୟ ବନ୍ଦୀ ଓ ରାଜନୀତିକ 'ସି' କ୍ଲାସ ବନ୍ଦୀ ବି ରହୁଥିଲେ । ଏତେବେଳକୁ ବନ୍ଦୀଙ୍କର ରହିବା ଓ ଖାଇବା ଇତ୍ୟାଦିରେ କିଛି ପରିବର୍ତ୍ତନ ଘଟି ଥିଲା । ମଝିରେ କିଛିକାଳ କଂଗ୍ରେସ ମନ୍ତ୍ରୀମଣ୍ଡଳ ରହିଥିଲା । ସେତିକି ବେଳେ ଖାଦ୍ୟ ଲାଗି ଯେଉଁ ପରିମାଣ ଅର୍ଥ ଖଞ୍ଜା ହୋଇଥିଲା ତାକୁ ଟିକିଏ ବଢ଼ାଇ ଦେଲେ । 'ସି' କ୍ଲାସ ବନ୍ଦୀଙ୍କର ପୋଷାକ ଭିତରେ ଅଧିକା ଖଣ୍ଡେ ଘୋଡ଼ାଇବା ଚଦର ମିଳିଲା । 'ବି' କ୍ଲାସ ବାଲାଙ୍କ ଲାଗି ଢୋଲା ପାଇଜାମା ଓ କାମିଜ । 'ଏ' କ୍ଲାସ ବାଲା ନିଜ ଲୁଗା ପିନ୍ଧି ପାରିବେ । ଏ ଦୁଇ କ୍ଲାସ ଲାଗି ଖଟ ଓ ମଶାରୀ ବି ଖଞ୍ଜା ଗଲା । 'ସି' କ୍ଲାସର ଆହୁରି ଏକ ପରିବର୍ତ୍ତନ ହେଲା ଖାଇବା ବାସନରେ । ଲୁହା ବାଟି ପରିବର୍ତ୍ତେ ଆଲୁମିନିୟମ ଥାଳି ଓ ଗ୍ଲାସ ମିଳିଲା । ତିନି ମାସ ବଦଳରେ

ପ୍ରତି ମାସରେ ମୁଲାକାତ ଓ ଚିଠିର ଆଦାନ ପ୍ରଦାନ କରାଯାଇ ପାରିଲା । 'ବି' କ୍ଲାସ ବାଲା ପ୍ରତି ପନ୍ଦର ଦିନରେ ଥରେ ଓ 'ଏ' କ୍ଲାସ ବାଲାଙ୍କୁ ପ୍ରତି ସପ୍ତାହରେ ଥରେ ମୁଲାକାତି ଓ ଚିଠି ସୁବିଧା ଦିଆଗଲା । ବନ୍ଦ ବିଷୟରେ କିନ୍ତୁ ସଭିଙ୍କି ସମାନ । ପ୍ରାୟ ସନ୍ଧ୍ୟା ପାଞ୍ଚଟା ବେଳୁ ଖାଇବାକୁ ଦେଇ ସକାଳ ଛଅଟା ବେଳେ ଖୋଲା ହୁଏ । ସହଜେ ତ ବାହାର ଜଗତରୁ ବିଚ୍ଛିନ୍ନ ହୋଇ ଜେଲ ଭିତରେ ଅଟକ । ସେଥିରେ ପୁଣି ବାର ଘଣ୍ଟା ଗୋଟିଏ ରୁମ୍‌ରେ ବହୁ ଲୋକ ବନ୍ଦ । ସବୁଦିନେ ଏକା ମୁହଁ ଏକା ଲୋକ । ମୁଲାକାତ ଦିନ ଛଡା ଆଉ ଅନ୍ୟ ଲୋକ ମୁହଁ ଦେଖିବାର ସୁଯୋଗ ମିଳେ ନା । ଏକ ଢଙ୍ଗରେ ଏକା ଘରେ ଏକ ମଣିଷ ମିଶି ବରବର କାରବାର ହେଲେ କେମିତି ବିରକ୍ତିକର ପରିସ୍ଥିତି ହୋଇପାରେ ସହଜେ ଅନୁମାନ କରାଯାଇ ପାରେ । ମୁଲାକାତ ଦିନ ବନ୍ଦୀଙ୍କ ମନରେ କି ଆନନ୍ଦ ଓ ତାହା କିପରି ମୁହଁରେ ଏକ ସନ୍ତୋଷର ଅଭିବ୍ୟକ୍ତି ନ ଦେଖିଲେ ବିଶ୍ୱାସ କରି ହେବ ନାହିଁ । ଏ ସଂପର୍କରେ ଏକ ବ୍ୟକ୍ତିଗତ କଥା ଏହା ଲେଖିଲା ବେଳକୁ ମୋର ମନେ ପଡ଼ି ଯାଉଛି । ୧୯୩୨—୩୩ରେ କଟକ ଜେଲରେ ଥିବା ବେଳେ । ମୋର ମାଉସୀ, ଭଉଣୀ ଓ ଅନ୍ୟମାନେ ମତେ କଟକ ଜେଲରେ ସାକ୍ଷାତ୍ କରିବାକୁ ଆସିଥିଲେ । ମୁଁ ସେତେବେଳକୁ 'ସି' କ୍ଲାସ ବନ୍ଦୀ । ସେମାନେ ମୋ ସହିତ କଥା ହେଉଛନ୍ତି; ଜେଲ କର୍ତ୍ତୃପକ୍ଷ ବନ୍ଦ କରିବାକୁ କହିଲେ । ଖାଇବା ବେଳ ହୋଇ ଗଲାଣି; ତାପରେ ବନ୍ଦ । ଏହି କଥା ଶୁଣି ମୋ ମାଉସୀ କହିଲା— ଏତେ ଜଲ୍‌ଦି କଣ ଖାଇବା ! କଣ ଖାଉଛୁ ବୋଲି ପଗ୍ଚରିଲା । ମୁଁ କହିଲି ସକାଳ ବେଳା ଭାତ ଓ ସଞ୍ଜବେଳେ ରୁଟି ଖାଉ । ମାଉସୀ ସେଇଠି କାନ୍ଦି ପକାଇଲା । ତତେ ଜଳଖିଆ ଦେଇ ବାର ଘଣ୍ଟା ଗଡିଟା ଉପାସ ରଖି ଦିଅନ୍ତି ! ସେତେବେଳେ ଆମ ଓଡ଼ିଶାରେ ରୁଟି ଖିଆଟାକୁ ଜଳଖିଆ ବୋଲି ଧରୁଥିଲେ । ଭାତ ନ ଖାଇଲେ ସତେ କି ପେଟ ପୂରେ ନାହିଁ । ଜେଲ କଷ୍ଟଟାକୁ ଆମେ ଜାଣି ପାରୁନା । ଆମେ ତ ଜେଲ ବରଣ କରି ଯାଇଥାଉ । ମାତ୍ର ନିଜର ଆତ୍ମୀୟ ଓ ଅନ୍ୟମାନେ କିଭଳି ସାର ପ୍ରକ୍ରିୟା ଦେଖନ୍ତି ତାହାର ଏହା ଏକ ଉଦାହରଣ ।

ଯାହା ହେଉ ବ୍ରହ୍ମପୁର ଜେଲରେ ଆମେ 'ଏ' ଓ 'ବି' କ୍ଲାସ ବନ୍ଦୀ ଅପେକ୍ଷାକୃତ ସୁବିଧା ଅବସ୍ଥାରେ ରହିଲୁ । 'ଏ' କ୍ଲାସ ବନ୍ଦୀ ଥିଲେ ଦୁଇ ଜଣ । ହରେକୃଷ୍ଣ ମହତାବ ଓ କଣ୍ଢାପାରିର ଜଗନ୍ନାଥ ଦାସ । ସେ ଥିଲେ ବଡ

ଜମିଦାର । ବିହାର ଓଡ଼ିଶା କାଉନ୍‌ସିଲ ମେମ୍ବର ଥିଲେ । ବହୁ ପଦସ୍ଥ ସ୍ଥାନ ପାଇ ଥିଲେ । ପରେ ରାଜ୍ୟ ସଭାର ସଦସ୍ୟ ମଧ୍ୟ ହୋଇଥିଲେ ।

ଆମେ ଆଉ ପ୍ରାୟ କୋଡ଼ିଏ ଜଣ ହେବ 'ବି' କ୍ଲାସ ବନ୍ଦୀ ଆଉ ଏକ ବଡ଼ ହଲରେ ଏକାଠି ରହୁଥିଲୁ । ଓଡ଼ିଶାର ସବୁ ମଙ୍ଗି ଲୋକ ରହୁଥିଲେ ବୋଲି କହିବାଟା ବାହୁଲ୍ୟ ହୋଇ ପାରେ । ଏଠି ଆମ ସାଙ୍ଗରେ ଥିଲେ ନବକୃଷ୍ଣ ଚୌଧୁରୀ, ସଦାଶିବ ତ୍ରିପାଠୀ, ରାଧା ମୋହନ ସାହୁ, ମାଷ୍ଟର ରାମ ଲିଙ୍ଗମ୍, ରାଧାକୃଷ୍ଣ ବିଶ୍ୱାସରାୟ, ମୋହନ ଦାଶ, ଗୋବିନ୍ଦ ଚନ୍ଦ୍ର ପ୍ରଧାନ, ପିଆରୀ ଶଙ୍କର ରାୟ, ଗୌର ଚନ୍ଦ୍ର ଦାସ, ଜଗନ୍ନାଥ ମିଶ୍ର (ପୁରୀ), ଲୋକନାଥ ମିଶ୍ର (କଟକ), ପ୍ରାଣନାଥ ପଟନାୟକ, ମୁଁ ଓ ଗୋବିନ୍ଦ । ପ୍ରାୟ ବର୍ଷକରୁ ଅଧିକ ସମୟ ଏକାଠି ରହିଲୁ । ତଥାପି ଭୁଲିଗଲି କେମିତି ଓ କାହିଁକି ? ଦୁଃଖ ମନରେ ହେଉଛି । ବ୍ରହ୍ମପୁର ଜେଲର ସାଥି ଯାହାଙ୍କ ନାମ ବାଦ୍ ଯାଇଛି, ଯଦି ଏହା ପଢ଼ନ୍ତି, ମତେ ଲେଖି ପାରିଲେ ମୋର ଅଜ୍ଞତା ଦୋଷ କଟିବ । ସେ ଜେଲ ସାଥିଙ୍କ ଭିତରୁ କେତେକ ମରି ଗଲେଣି । ତହିଁରୁ ଦୁଇଜଣ ମୁଖ୍ୟମନ୍ତ୍ରୀ– ନବକୃଷ୍ଣ ଚୌଧୁରୀ ଓ ସଦାଶିବ ତ୍ରିପାଠୀ । ସଦାଶିବ ତ୍ରିପାଠୀ ଓ ରାଧା ମୋହନ ସାହୁ ଦୁହେଁ ଶିକ୍ଷକ ଥିଲେ । ୧୯୩୬ ମସିହାରେ ସାଧାରଣ ନିର୍ବାଚନ ଲାଗି ପ୍ରାର୍ଥୀ ପାଇବା ଏକ ମୁସ୍କିଲ କାର୍ଯ୍ୟ ଥିଲା । ବିଶେଷତଃ ଜମିଦାରୀ ପ୍ରଭାବିତ ଅଞ୍ଚଳରେ । ଏପରିକି ଖଲିକୋଟ ମହାରାଜା ବିରୁଦ୍ଧରେ ସ୍ୱାଧୀନ ପ୍ରାର୍ଥୀ ରୂପେ ଲଢି ପରେ କଂଗ୍ରେସରେ ଯୋଗ ଦେଲେ ଜିତିବାର ସମ୍ଭାବନା ଉଜ୍ଜ୍ୱଳ ହେବ ବୋଲି ବିଶ୍ୱନାଥ ଦାସ ପ୍ରଥମେ ଭାବୁଥିଲେ । ସେ ଅବଶ୍ୟ କଂଗ୍ରେସ ପ୍ରାର୍ଥୀ ହୋଇ ଜିତିଲେ ଏବଂ ଓଡ଼ିଶାର ପ୍ରଥମ କଂଗ୍ରେସ ପ୍ରଧାନ ମନ୍ତ୍ରୀ ହୋଇ ଥିଲେ । କୋରାପୁଟରେ ଅବସ୍ଥା ଆହୁରି ଅନ୍ଧକାରମୟ । ସେ ଅନ୍ଧକାର ମଧ୍ୟରେ ଏକମାତ୍ର ଦିହୁଡ଼ି ଥିଲେ ରାଧାକୃଷ୍ଣ ବିଶ୍ୱାସରାୟ । କଂଗ୍ରେସ ନାଁ ଧରିଲେ ଲୋକେ ଭୟ କରୁଥିଲେ । ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ଧନ୍ୟ କହିବା । ସେ ସାହସ କରି ଏହା ଭିତରେ ପଶିଲେ ଏବଂ ନବରଙ୍ଗପୁର ଟ୍ରେନିଂ ସ୍କୁଲରୁ ସଦାଶିବ ତ୍ରିପାଠୀ ଓ ଜୟପୁରରୁ ରାଧାମୋହନ ସାହୁଙ୍କୁ ପ୍ରବର୍ତ୍ତାଇ କଂଗ୍ରେସ ଟିକଟ ନବା ଲାଗି ସମ୍ମତ କରାଇ ଥିଲେ । ଏମାନେ କୋରାପୁଟ ଜିଲ୍ଲାର ପ୍ରଧାନ କଂଗ୍ରେସ ସ୍ତମ୍ଭ ହୋଇ ବହୁକାଳ ରହିଲେ । ଏମ.ଏଲ.ଏ. ହୋଇ ଥିଲେ । ବିଶ୍ୱାସ ରାୟ ମନ୍ତ୍ରୀ ଓ ଓଡ଼ିଶା କଂଗ୍ରେସ ସଭାପତି ହୋଇଥିଲେ । ସଦାଶିବ ତ୍ରିପାଠୀ

ମୁଖ୍ୟମନ୍ତ୍ରୀ ହୋଇ ଥିଲେ । ଆମ ଜେଲ ସାଥିଙ୍କ ଭିତରୁ ଆଉ ଜଣେ ଆମକୁ ଛିଡିରିଆ ଚିଡା କାଟିଲେ । ଆମେ ସମସ୍ତେ ମିଳି ମିଶି ବେଶ୍ ଖୁସି ବାସିରେ ଥାଉ । ରୁଷ ଜର୍ମାନୀ ଯୁଦ୍ଧ ପ୍ରବଳ ହୋଇ ଥାଏ । କିଛି କାମ ତ ନ ଥାଏ; ଘଣ୍ଟା ଘଣ୍ଟା ଧରି ଆନ୍ତର୍ଜାତିକ ଯୁଦ୍ଧ ପରିସ୍ଥିତି ବିଷୟରେ ଘମାଘୋଟ ଚର୍ଚ୍ଚା ଚାଲେ । ନୂତନ ରଣାଙ୍ଗ ବାହାରିଲେ ସେ ବିଷୟରେ ଟିକିନିଖି ଆଲୋଚନା କରା-ଯାଏ । ଆମ ମାନଙ୍କ ମନ ପୂରାପୂରି ଉର୍ଦ୍ଧ୍ୱ ରାଜନୀତି ଚର୍ଚ୍ଚାରେ ବୁଡ଼ି ରହିଥିଲା । ଏହି ଠାରେ ମୋହନ ଦାସ ଓ ଗୋବିନ୍ଦ କମ୍ୟୁନିଷ୍ଟ ହୋଇ ଗଲେ । କିନ୍ତୁ ଭିତରେ ଭିତରେ ପଣ୍ଡିତ ନୀଳକଣ୍ଠ ଓ ଗୋଦାବରୀଶଙ୍କ ଉଦ୍ୟମ ଫଳରେ ପାରଳାଖେମଣ୍ଡି ମହାରାଜାଙ୍କ ନେତୃତ୍ୱରେ ଯେଉଁ ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲା, ତାହା ଆମ ଭିତରେ ଜାଲ ପକାଇ ସାରିଛି ବୋଲି ଆମକୁ ଜଣା ନ ଥିଲା । ହଠାତ୍ ପିଆରୀ ଶଙ୍କର ରାୟଙ୍କ ଖଲାସ ହୋଇଗଲା । ଆମେ ତାଟକା ହେଲୁ । ସେ ଆଗରୁ ବ୍ୟବସ୍ଥା କରି ସାରିଥିଲେ । ନୀଳକଣ୍ଠ ଯେଉଁ କଂଗ୍ରେସ ଏମ.ଏଲ.ଏ.ଙ୍କୁ ଖସାଇଲେ ସେଥିରୁ ଜଣେ ହେଲେ ପିଆରୀ । ତାଙ୍କୁ ପାର୍ଲିଆମେଣ୍ଟାରୀ ସେକ୍ରେଟରୀ ରୂପେ ନିଯୁକ୍ତି ମିଳିଥିଲା ।

卐

[ ୨୯ ]

# ବ୍ରହ୍ମପୁର ଜେଲ୍‌ର ଅନ୍ୟ କଥା

ବ୍ରହ୍ମପୁର ଜେଲରେ ପୂରା ଶାନ୍ତି ଥିଲା । ଆଗରୁ କିଛି କଏଦୀ ରହି ଥିଲେ । କିନ୍ତୁ ଜେଲ ତ; ଯାହା ଥିଲେ ଗୋଟା ପଟିଆ ହୋଇ ଏବଂ ତାଙ୍କୁ ବେଶ୍ ଆଦରରେ ରଖା ହୋଇ ଥାଏ । ଆମେ ରହିଥିବା ବେଳେ ରାୟଗଡାରେ ଗୋଟାଏ ବଡ ଧରଣର କନ୍ଧ-ସଉରା ବିବାଦ ଉଠିଥିଲା । ଖ୍ରୀଷ୍ଟାନ୍ ହୋଇଥିବା ପାଣମାନେ ବି ଭାରି ଦୁର୍ଦ୍ଦାନ୍ତ ଥିଲେ । କନ୍ଧ ଗଣ୍ଡଗୋଳରେ ବହୁ ଲୋକସାନ ହୋଇଥିଲା— ଧନ ଜନ ସମେତ । ଦମନ କରିବା ଲାଗି ଗୋଟାଏ ଚିନ୍ତା ଦଳ ପଶି ଯାଇଥିଲା । ତେଣୁ ଓ ଘରଦ୍ୱାରୀ ସମସ୍ତଙ୍କି ବାନ୍ଧି ଆଣିଥିଲେ । କୌଣସି କାରଣରୁ ସିନା କ୍ରୋଧରେ ମାତିଯାଇ ବାଡ଼ିଆ ବାଡେଇ ହେଲେ । ନଚେତ୍ ଏମାନେ ଥିଲେ ଅତି ସରଳ, ସାଧୁ ଓ ସରକାରଙ୍କ ଭୟରେ ଦବି ରହିଥିବା ଲୋକେ । ସଭ୍ୟତା ଆଲୋକର ବହୁ ଦୂରରେ, ନିବିଡ ଜଙ୍ଗଲରେ ବାସ । ରାସ୍ତା ଘାଟ ନାହିଁ କି ମିଶନାରୀଙ୍କର କିଛି ଉଦ୍ୟମ ଛଡା, ସ୍କୁଲ ବା ଅନ୍ୟ ପାଠ୍ୟ ବ୍ୟବସ୍ଥା କିଛି ନ ଥିଲା । ଜଙ୍ଗଲ, ଶିକାର ଓ ସାମାନ୍ୟ ଫସଲ ଯାହା ଉପୁଜାନ୍ତି, ସେଥିରେ ଚଳନ୍ତି । ତହିଁରେ ସେମାନଙ୍କର ତୃପ୍ତି । ବେଶି ଆଶା ରଖି ନ ଥାନ୍ତି କିମ୍ବା ବେଶି ଆଶା ମନରେ ଉଦ୍ରେକ ହେଉ ନ ଥାଏ । ତାଙ୍କ ଦୁନିଆ ତାଙ୍କୁ ଭଲ । ବାହାରକୁ କେବେ ଆସି ନ ଥିଲେ ଏବଂ ତାଙ୍କ ସଂସାର ଛଡା ଆଉ କିଛି ବାହାର ଦୁନିଆ କଥା ତାଙ୍କର ସଂପୂର୍ଣ୍ଣ ଅଗୋଚର । ଅତି ନୀରୀହ, ମାତ୍ର ବଳବନ୍ତ । ରାୟଗଡାର କନ୍ଧ ଓ କେତେକ ଅଞ୍ଚଳର ପାଣଙ୍କୁ ଦେଖିଲେ ଏକ ବିରାଟ ପୁରୁଷକାୟର ପରିଚୟ ମିଳେ ।

ଆମେ ଯେ ଏତେ ଲୋକ ଏକାଠି 'ବି' କ୍ଲାସରେ ଏକାସାଙ୍ଗରେ ଥାଉ, ଆମର ଅଲଗା ରୋଷେଇ ବ୍ୟବସ୍ଥା ଥାଏ । ସାଧାରଣ ଜେଲ ରୋଷେଇରୁ ବୋଧହୁଏ ଭାତ, ଡାଲି ଆସୁଥିଲା । କିଛି ତରକାରୀ ଆଦି କରିବାର ସୁଯୋଗ ଆମକୁ ମିଳିଥିଲା । ଆମ ଭିତରେ ଜଣେ ବଡ ସୁପକାର ଥିଲେ ଗୋବିନ୍ଦ ପ୍ରଧାନ । ପୃଥୁଳ ବପୁ, ଶାନ୍ତ ଶିଷ୍ଟ ମଧୁର ପୁରୁଷ, ବଡ଼ ପାଟିରେ କଥା ବି କହନ୍ତି ନାହିଁ, ସମସ୍ତଙ୍କ ସହ ହସ ଖୁସି । ତାଙ୍କୁ ଦେଖିଲେ ସେ ଏତେ ବଡ ହିଂସ୍ର କମ୍ୟୁନିଷ୍ଟ ନେତା ବୋଲି କେହି କଳ୍ପନାରେ ସ୍ଥାନ ଆଣି ପାରିବ ନାହିଁ । କୃଷକ ଆନ୍ଦୋଳନର ସେ ଥିଲେ ପ୍ରମୁଖ ନେତା । ତାଙ୍କରି ନେତୃତ୍ୱରେ ଆସ୍କା ତଥା ଗଞ୍ଜାମର କୃଷକ ଆନ୍ଦୋଳନ ଓଡ଼ିଶା ପ୍ରସିଦ୍ଧ । ତୋକରଡା ଗୁଳିକାଣ୍ଡ ଅନେକେ ଭୁଲି ଯିବେଣି । ସେଥି ସଂକ୍ରାନ୍ତିୟ ସବୁ ଆନ୍ଦୋଳନ ମୂଳରେ ଥିଲା ଗୋବିନ୍ଦ ପ୍ରଧାନଙ୍କ ତ୍ୟାଗ ଓ ନିର୍ଭିକ ନେତୃତ୍ୱ । ତାଙ୍କର ଏଭଳି ରୋଷେଇରେ ନିପୁଣତା ରହିଥିବା ଆମେ ଜେଲରେ ଜାଣିଲୁ । ବ୍ରହ୍ମପୁର ଜେଲରେ ସେ ଯେଉଁ "ଓ୍ୱାଙ୍କୋଇଲୁ ମୁଦା" କରି ଆମ ସମସ୍ତିଙ୍କି ଖାଇବାକୁ ଦେଉଥିଲେ, ତାହା ଏବେ ବି ସ୍ମରଣ କଲେ ପାଟିରୁ ନାଳ ବୋହି ଆସୁଛି ।

କେବଳ ରୋଷେଇ ନୁହେଁ, ଆମ ଓ୍ୟାର୍ଡର ଅନ୍ୟାନ୍ୟ କାର୍ଯ୍ୟ କରିବା ଲାଗି ୨।୩ ଜଣ ସାଧାରଣ କଏଦୀ ଦିଆ ଯାଇଥିଲେ । ସେଥିରୁ ଜଣଙ୍କ କଥା ନ ଲେଖି ରହି ପାରୁ ନାହିଁ । ସେ ତ ଅନ୍ୟ ମାନଙ୍କ ପରି ଜେଲ ସାଥି । ତେଣୁ ଅପ୍ରାସଙ୍ଗିକ ହେବ ନାହିଁ । ନାମ ହେଉଛି ପୋଡନ– ଗୟଗଡାର କନ୍ଧ । ଯୁବା ଟୋକାଟିଏ– ବୟସ ୨୦।୨୧ ହେବ କି ନାହିଁ । ବାହା ହୋଇଥାଏ । ବୋଧହୁଏ ଛୋଟ ପିଲଟିଏ ଥାଏ । ସେ ଘରୁ ଆସିଥିଲା କ୍ଷେତକୁ । ପୋଡ଼ ( ମଇଁଷି ) ବାଡ଼େଇବା ଲାଗି କିମ୍ବା ଅନ୍ୟ କିଛି କରିବା ନିମନ୍ତେ ମୋର ଠିକ ମନେ ନାହିଁ । ବେଶି କଥା କହେ ନାହିଁ । ଯାହା କାମ ଦିଆଯାଏ ଆନନ୍ଦରେ କରେ । ତାଙ୍କ ମୁହଁରୁ କଥା ବାହାର କରିବା କଷ୍ଟ । ତୁମେ ବିଶ୍ୱାସ ଭାଜନ ହେଲେ ମନ କଥା କହନ୍ତି । ପୋଡନ ସହ ମୋର ଟିକିଏ ଘନିଷ୍ଠତା ଜମିଲା । ଆମକୁ ଦେହରେ ଲଗେଇବା ନିମନ୍ତେ ପନ୍ଦର ଦିନକୁ ଖଣ୍ଡେ ଲକ୍ସ ସାବୁନ ମିଳୁଥିଲା । ମୁଁ ସାବୁନ ଲଗାଏ ନାହିଁ । ତାକୁ ଦୁଇଖଣ୍ଡ ଯାକ ଦେଇ ଦିଏ । ପହିଲେ ସେ ଭାରି ନାମଙ୍କ

ହେଉଥିଲା । ସାବୁନ ବ୍ୟବହାର ତାକୁ ଜଣା ନ ଥିଲା । ସବୁ କାମଦାମ ଖଇଆପିଆ ସରିଲେ ସେ ଆମର ସେଠି ଥିବା ଗୋଟିଏ ପାଇପରେ ଗାଧାଏ । ମୁଁ ପ୍ରଥମ ଥର ଛିଡା ହୋଇ ତାକୁ ବତାଇ ଦେଲି । ପ୍ରଚଣ୍ଡ କଳା ଦେହ ଧଳା ଫେଣରେ ଲୁଚିଯିବା ଦେଖି ସେ ବିସ୍ମିତ ହୋଇଗଲା । ପୁଣି ଦେହରୁ ଏକ ପ୍ରକାର ବାସନା ବାହାରିଲା, ଯାହା ସେ କେବେ ଅନୁଭବ କରି ନ ଥିଲା । ନାଚି ଗଲା । ଏମିତି ସାବୁନ ପ୍ୟାରା ହୋଇଗଲା ଯେ, ମୋର ଦୁଇଖଣ୍ଡ ସାରି ଅନ୍ୟମାନଙ୍କୁ ମାଗେ । ଦିନକୁ ତିନି ଥର ସାବୁନ ଗାଧୁଆ ଗାଧାଏ । ତାକୁ ଦେଖି ଲୋକ ମନରେ ଦବି ହୋଇ ରହିଥିବା ଲାଳସାର କିଭଳି ପ୍ରକଟ ହୁଏ, ତାହାର ଦୃଷ୍ଟାନ୍ତ ମିଳେ । ରୁଷରେ ସୋଭିଏଟ କମ୍ୟୁନିଷ୍ଟ ପାର୍ଟି କ୍ଷମତାକୁ ଆସିଲା ପରେ ସାଧାରଣ ଲୋକଙ୍କୁ ଯେତେ-ବେଳେ କସ୍‌ମେଟିକ୍‌ସ ବ୍ୟବହାର କରିବାର ସୁଯୋଗ ମିଳିଲା. ସେତେବେଳେ ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ଯାହା ଆଗରୁ ଉତ୍ପାଦନ ହେଉଥିଲା, ତାର ଯେ ଅତି ଅଳ୍ପ ଦିନ ଭିତରେ ଅକୁଲାଣ ଘଟିଲା, ସେଥିରେ ବିସ୍ମିତ ହେବାର କଛି ନାହିଁ । ଉତ୍ପାଦନ ଉପରେ ଜୋର ଦେଇ ଥିବାରୁ ଏପରି ବ୍ୟବହାର୍ଯ୍ୟ ଜିନିଷ ଉପରେ ପ୍ରତିବନ୍ଧ ରଖିବା ନିମନ୍ତେ ସେମାନେ ବାଧ୍ୟ ହୋଇଥିଲେ । ମଣିଷ ସବୁଠି ସମାନ । ସମାନ ସୁବିଧା ସୁଯୋଗ ପାଇଲେ ତାର ପ୍ରକୃତ ସ୍ୱରୂପ ଜଣାପଡେ ।

ଯୋଡନ ମୋର ନିକଟବର୍ତ୍ତୀ ହେବାର ଆଉ ଏକ କାରଣ ହେଲା, ମୁଁ ବ୍ରହ୍ମପୁର ଜେଲର ପଛପାଖ ବାରଣ୍ଡାରେ ସକାଳ ଓଳି ସାଗଟା ବସି ଜହାହାରଲାଲ ନେହରୁଙ୍କ ଆତ୍ମ ଜୀବନୀର ଓଡ଼ିଆ ଅନୁବାଦ କରୁଥାଏ । ଅନୁବାଦ କରିବାର କାରଣ ହେଲା ୧୯୩୪ରେ ସେ ବହି ପ୍ରଥମେ ଆସିବା ବେଳକୁ ମୁଁ ଚିନ୍ତାମଣି ଆଚାର୍ଯ୍ୟଙ୍କ ଘରେ ଯାଇ ସେ କଚେରୀବି ଗଲା ଭିତରେ ଚୁପ କରି ପଢ଼ି ଥିଲି । ମନ୍ତ୍ର ମୁଗ୍ଧ ହୋଇଗଲି । ଏକ ଅଦ୍ଭୁତ ଛାପ ମୋ ଉପରେ ପଡ଼ିଥିଲା । ଇଉରୋପୀୟ ଘଟଣାବଳୀ ଓ ସୋସଲିଜିମ୍, କମ୍ୟୁନିଜିମ୍‌ର ଆଲୋଚନା ନୂତନ ଢଙ୍ଗରେ ବୁଝି ପାରିଲି । ସେହି କାଳରୁ ଭାବୁଥିଲି ଏହାର କେମିତି ଓଡ଼ିଆ ହୁଅନ୍ତା ନାହିଁ । ବ୍ରହ୍ମପୁର ଜେଲରେ ସେ ସୁଯୋଗ ନେଲି । ଟେବଲ ନଥାଏ । କାଛ କଣକୁ ଗୋଟିଏ ଛୋଟ ଟୁଲ ଉପରେ ଲେଖେ ଏବଂ ମିଳିଥିବା ଗାମୁଛା ତଳେ ପକାଇ ବସେ । ସେ ଟୁଲ ଉପରେ ମୋ ପାଖରେ ଥିବା ଛୋଟିଆ ଦର୍ପଣଟି ମଧ୍ୟ ରଖି ଥାଏ । ଥରେ ଯୋଡନ ବଣ୍ଡା ପହଁରି ଅସି ମୋ ପାଖକୁ ଆସୁଥିଲା । ଦେଖି ଦେଲା

ଆରସିରେ ମୁହଁ । ହନୁ ନାଚିଲା ପରି କୁଦି ନାଚିବାକୁ ଆରମ୍ଭ କଲା । ଆଉ ମୋ ପାଖକୁ ଆସିବ କଅଣ ? ମୁଁ ବି ଲେଖା ଲେଖି ବନ୍ଦ କରି ତାକୁ ଚାହିଁ ରହିଲି । ତାକୁ ଶାନ୍ତ କରି ଧୀର ମଧୁର ସ୍ୱରରେ ପଚାରିଲି, କିରେ ! କଥା କଣ ? ସେ ବସିଲା ଏବଂ କହିଲା– ବାବୁ, ମୋ ମୁହଁ ମୁଁ ନିଜେ କେବେ ଦେଖିବାକୁ ପାଇ ନ ଥିଲି । ତେଣୁ ଆନନ୍ଦରେ ବିଭୋର ହୋଇଗଲି । ସାଙ୍ଗେ ସାଙ୍ଗେ ପୁଣି ଛୋଟ ପିଲା କାନ୍ଦିଲା ପରି ଭେଁ ଭେଁ ହୋଇ କାନ୍ଦିଲା ଏବଂ କହିଲା "ମୋ ସ୍ତ୍ରୀ ତ କେଉଁ ଦିନୁ ଏ ମୁହଁ ଦେଖି ପାରି ନାହିଁ, ମୁଁ କ୍ଷେତକୁ ଆସିଥିଲି, ସେ ବାଟ ଜଗିଥିବ– ମୁଁ ବାହୁଡ଼ି ଯାଇଥିଲେ ଏକାଠି କାଞ୍ଜି ଖାଇ ଥାଆନ୍ତୁ । ଏମାନେ ମତେ କ୍ଷେତରୁ ଧରି ଆଣିଲେ । ମୁଁ କାହାରି କିଛି କରିନାହିଁ କି କ୍ଷେତ ପାଖକୁ ଆଉ କେହି ଜଣେ ହେଲେ ଆସି ନ ଥିଲେ । 'ଶଳାକୁ ବାନ୍ଧ' ବୋଲି କହି ହାତକଡ଼ି ଲଗାଇଲେ । ଆହା ! ବିଚାରି କିଛି ଖବର ପାଇ ନ ଥିବ; ସେମିତି ଚାହିଁଥିବ ।" କି ମମତାର ପ୍ରାଣ !

ମୁଁ ଚେଷ୍ଟା କରିଥିଲି ଜେଲରୁ ଚିଠି ଦେବା ନିମନ୍ତେ । ପୋଡ଼ନ ତା ସ୍ତ୍ରୀର ନାମ କହି ପାରିଲା ନାହିଁ କିମ୍ବା ଗ୍ରାମ ଡାକଘରର ନାମ ତାକୁ ଜଣା ନ ଥିଲା ।

୮

[ ୩୦ ]

## ସାଙ୍ଗ ସାଥି ମେଳରେ

ବ୍ରହ୍ମପୁରରେ କେମିତି ଯେ ଏକ ବର୍ଷ ପୂର୍ଣ୍ଣ ହୋଇଗଲା, ମୋଟରୁ ଜାଣି ହେଲା ନାହିଁ । ଗୋଟିଏ ବଡ଼ ଡର୍ମିଟରୀରେ ଥିବା ପରି ଆମେ ସମସ୍ତେ ରହିଥିଲୁ । ସମସ୍ତେ ସମାନ ସୁବିଧା; ଛୋଟ ବଡ ବିଗ୍ଭର ନାହିଁ କିମ୍ବା କିଏ କେତେ ବେଶି ଜେଲ ପାଇଛି ତାହାକୁ ଜେଲ କର୍ତ୍ତୃପକ୍ଷ ବିଗ୍ଭରକୁ ନେବାର କୌଣସି ଆବଶ୍ୟକତା ନ ଥିଲା । ସମସ୍ତେ 'ବି' କ୍ଲାସ ବନ୍ଦୀ– କଂଗ୍ରେସ ମନ୍ତ୍ରୀମଣ୍ଡଳ ବେଳେ ଜେଲ ସଂସ୍କାର ନାମରେ ଯେଉଁ ସବୁ ନୂତନ ବ୍ୟବସ୍ଥା ଖଞ୍ଜି ଦେଇ ଯାଇଥିଲେ, ସେହି ଅନୁସାରେ ତାଙ୍କର ପ୍ରାପ୍ୟ ତାଙ୍କୁ ମିଳୁଥିଲା । ସମସ୍ତଙ୍କ ଲାଗି ଖଣ୍ଡିଏ ଖଟ, ମଶାରୀ, ସତରଞ୍ଜ, ଚଦର, ତକିଆ, ଘୋଡେଇ ହେବା ନିମନ୍ତେ ଗୋଟିଏ କମ୍ବଳ, ଆଲମିନିୟମ ଥାଳି, ବାଟି ଓ ଗୋଟିଏ ଗ୍ଲାସ । ଭଣା ବେଶି ହେବାର ସୁଯୋଗ ନାହିଁ । ଜେଲ କର୍ତ୍ତୃପକ୍ଷ ଅନ୍ୟ କ୍ଷେତ୍ରରେ ଯେ ବାଟ ମାରଣା କରନ୍ତି, ଏଠି ତାହା କରିବାକୁ ସାହସ କରୁ ନ ଥିଲେ । ଜେଲର ନାୟାର ଦିନକୁ ଦୁଇଥର ଆସି ଦୁଃଖ ସୁଖ ବୁଝି ଯାଉଥିଲେ । ତାଙ୍କ ମନରେ ଭୟ ଏମାନଙ୍କ ଭିତରୁ କାଲି ସକାଳେ କିଏ କାଳେ ମନ୍ତ୍ରୀ ହୋଇଯିବ ।

ଏହା ଲେଖିଲା ବେଳକୁ ଆଉ ଏକ ମଜାକଥା ସ୍ମରଣକୁ ଆସି ଯାଉଛି । କଟକ ଲେକାଲବୋର୍ଡରେ ଏକ ଗୋଦରା ମୁସଲମାନ ଚୌକିଦାର ଥାଏ । କଚେରୀ ରାସ୍ତାରେ ଏହି ଅଫିସ ଥିଲା । ବହୁଲୋକ ଯିବା ଆସିବା କରୁଥିଲେ । ବାରଣ୍ଡାରେ ଦୁଆରମୁହଁ ପାଖରେ ବସିଥାଏ ଆମର ଏ ଚୌକିଦାର ବନ୍ଧୁ ସଡକକୁ

ମୁହଁକରି । ମୁଁ ଜେତେ ଥର ଲକ୍ଷ୍ୟ କରିଛି— କୌଣସି ଖଦଡ଼ିଆ ସେବାଟେ ଗଲେ ସେ ତତ୍‌କ୍ଷଣାତ୍ ଛିଡ଼ା ହୋଇ ସଲମ ଟାଏ ପକାଏ । ମତେ ବି ସେମିତି କରେ । ମୁଁ ଥରେ କୌତୂହଳୀ ହୋଇ ପଗ୍ଭରିଲି— ତୁମେ ଏମିତି କାହିଁକି ସମସ୍ତଙ୍କି ଦଣ୍ଡବତ କର । ସେ କହିଲା— ନାହିଁ ଆଜ୍ଞା, କେବଳ ଖଦଡ଼ ପୋଷାକକୁ କରେ । ଆପଣ ବୁଝୁ ନାହାନ୍ତି- ଏଠିକି ବଗବର କଂଗ୍ରେସବାଲା ଚେୟାରମାନ୍, ଭାଇସ୍-ଚେୟାରମାନ୍ ହୋଇ ଆସୁଛନ୍ତି । କାଲି ସକାଳେ ଯାଉଥିବା ଖଦଡ଼ିଆଙ୍କ ଭିତରୁ କେହି ଯେ ନ ଆସିବ, ତାର ପତିଆର କଅଣ ! ସେଥିଲାଗି ଆଗରୁ ତାଙ୍କୁ ମୋ କଥା ମନେ ରଖିବା ନିମନ୍ତେ ଜଣାଇ ଦେଉଛି । ଶୁଣି ମୁଁ ହସିଲି ଏବଂ ଏକଥା ବହୁ ବନ୍ଧୁଙ୍କୁ କହିଛି । ତେଣୁ ନାୟାରଙ୍କ ମନରେ ଆମ ଜେଲ ସାଥିଙ୍କ ପ୍ରତି ସେପରି ଭବନା ହେବାରେ ଆଶ୍ଚର୍ଯ୍ୟ କିଛି ନାହିଁ ।

ଆମେ ସବୁ ଥାଉଁ । ସବୁ ତ ରାଜନୀତିକ ଲୋକ । ଦୁନିଆର ସବୁ ସମସ୍ୟା ଆଲୋଚିତ ହୁଏ । ବେଳେ ବେଳେ ମହତାବ ଓ ଜଗନ୍ନାଥ ଦାସ ଆସିଗଲେ ତାହା ଆହୁରି ଜମେ । ଢେଙ୍କାନାଳରୁ ଡେଙ୍କିଶାଳ ପର୍ଯ୍ୟନ୍ତ । ଗାନ୍ଧୀ ଜବାହାରଲାଲ ଚର୍ଚ୍ଚାଟା ବେଶି ଜମେ । ମହତାବ ଆଡ଼ି 'ଏ' କ୍ଲାସ ବନ୍ଦୀ ହୋଇ ଥିବାରୁ ସେ ଆମ ଖାଉତକୁ ଆସି ପାଉନ୍ତି; ମାତ୍ର ଆମର ତେଣିକି ଯିବାର ସୁଯୋଗ ନ ଥାଏ ।

ଆମେ ବିଭିନ୍ନ କିସମ ଓ ରୁଚିର ଲୋକ ଥାଉ । କିଏ ଧର୍ମ ପୁସ୍ତକ ଆଦି ଧରି ବସନ୍ତି, ଧ୍ୟାନ ବି କରନ୍ତି, କେହି ଗ୍ରୁପ ବାନ୍ଧି ପ୍ରତିଦିନ ଗୋଟିଏ ସମସ୍ୟା ବିଷୟରେ ଚର୍ଚ୍ଚା କରନ୍ତି ଏକ କ୍ଲବ ପରି । ଆଉ କେତେକ କୌଣସି କାମରେ ଯୋଗ ନ ଦେଇ ଏମିତି ଅଳସୁଆମି କରି କାଳ କାଟି ଦିଅନ୍ତି । ସନ୍ଧ୍ୟାରେ ତାଲାବନ୍ଦ ହୋଇଗଲା ପରେ କେତେକ ତାସ ଖେଳରେ ବସି ଯାଆନ୍ତି । ମୁଁ ଏହି ଠାରେ ବ୍ରିଜ ଖେଳ ଶିଖିଥିଲି । ମାଷ୍ଟର ରାମ ଲିଙ୍ଗମ୍ ଏଥିରେ ଥିଲେ ଧୁରନ୍ଧର । ସେ ସର୍ବଦା ନିମ୍ନପତ୍ର ଗ୍ରେବାଉ ଥାଆନ୍ତି । ଖେଳର ସୂତ୍ର ସବୁ ବଡ ବଡିଆ କରି ବତାଇ ଦିଅନ୍ତି । 'ବହୁତ ଜନ ଯହିଁ ମିଳି, ଅବଶ୍ୟ ଉପୁଜଇ କଳି ।' କଳିଆ, ମନ ଫଟାଫଟି ଗାଳି ଗୁଲଜ ନ ହୁଏ ଏପରି ନୁହେଁ । ମାତ୍ର ସେଇଟା କିଛି ଗୁରୁତର ନୁହେଁ । ଖୁବ ହେଲେ ଦିନେ ଦି' ଦିନ । ଏକା ଘରେ ରହଣି,

ଭୋଜନ, ତାଲବନ୍ଦ ଓ ଶୟନ । ଗଗ ଶେଷ ରହି ପାରନ୍ତା କେମିତି ! ବେଶ୍ ଆନନ୍ଦ ଓ ଉଲ୍ଲାସର ବାୟୁମଣ୍ଡଳ ରହିଥାଏ । ଯେଉଁମାନଙ୍କର ଜେଲ ଆସିଥିବା ହେତୁ ସଂପତ୍ତି ବାଡ଼ି ଉଜୁଡ଼ି ପଡୁଥାଏ– କେହି ଦେଖାଶୁଣା କରିବାକୁ ନ ଥାଏ– ସେମାନଙ୍କ ମନ ବେଳେ ବେଳେ ଦୁକୁ ଦୁକୁ ହୋଇ ଯାଉଥିଲେ ବି ସାଙ୍ଗ ମେଳରେ ସେ ସବୁ ପାଶୋରୀ ପକାନ୍ତି ।

ମୁଁ ଆଗରୁ ପାଟନା କ୍ୟାମ୍ପ ଜେଲରେ ଓ ଅନ୍ୟତ୍ର ବହୁ ପୁସ୍ତକ ରୁଷ ଓ କମ୍ୟୁନିଜମ୍, ସୋସଲଜିମ୍ ବିଷୟରେ ପାଠ କରିଥିଲି । ଗାନ୍ଧୀ ପୁସ୍ତକ ବି ଯାହା ଯେତେବେଳେ ହସ୍ତଗତ ହୋଇଛି ଛାଡ଼ି ନ ଥିଲି । କମ୍ୟୁନିଷ୍ଟ ମ୍ୟାନିଫେଷ୍ଟୋ ବହୁବାର ପଢିଛି । ଆମେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଠନ କଲୁ ପରେ ଭଗବତୀ ପାଣିଗ୍ରାହୀ ମେନିଫେଷ୍ଟୋକୁ ଓଡ଼ିଆରେ ଅନୁବାଦ କରିଥିଲେ ଏବଂ ପ୍ରକାଶିତ ହୋଇଥିଲା । କିନ୍ତୁ ମୂଳଗ୍ରନ୍ଥ ମାର୍କସ୍‌ଙ୍କ 'କ୍ୟାପିଟାଲ' ପଢିବାର ସୁଯୋଗ ହୋଇ ନ ଥିଲା । ଏହି ଜେଲରେ ମୁଁ ଓ ଗୋବିନ୍ଦ ସାଙ୍ଗ ହୋଇ ତାକୁ ଶେଷ କଲୁ । ଏହି ଠାରେ ସମୟ ବାହାର କରି ଏକାନ୍ତରେ ବସି ଧୈର୍ଯ୍ୟ ସହକାରେ ପଣ୍ଡିତ ଜବାହାରଲାଲଙ୍କ ରଚିତ Autobiographyର ଓଡ଼ିଆ ଅନୁବାଦ ଶେଷ କରିଥିଲି । ତାହା ଦୁଇଟି ଭାଗରେ "ମୋ ନିଜ କାହାଣୀ" ନାମରେ ପ୍ରକାଶିତ ହୋଇଛି । ମୋଟାମୋଟି କହିଲେ ଏକ ବୁଦ୍ଧିଜୀବୀ ମେଳରେ ଯାହା ଘଟିବା କଥା ବ୍ରହ୍ମପୁର ଜେଲରେ ସେହି ପରି ବାୟୁମଣ୍ଡଳ ରହିଥିଲା ।

ମୋର ପ୍ରକୃତରେ ଷୋଳମାସ ରହିବାର କଥା; ମାତ୍ର ବର୍ଷେ ନ ପୂରୁଣୁ ରେମିସନ୍ ବାଦ ଯାଇ ମୁଁ ମୁକ୍ତ ହୋଇଗଲି । ସକ୍ଷମ କଏଦୀଙ୍କି ପ୍ରତି ମାସରେ କେତେ ଦିନ ଭୋଗ ଦଣ୍ଡରୁ ଛାଡ ଦିଆଯାଏ । ମତେ ସେମିତି ମିଳିଥିଲା । ମାତ୍ର ମୁଁ ଆଗରୁ ଖଲାସ ହେବାରୁ କେହି କେହି ମତେ ସମାଲୋଚନା କରିଥିଲେ । ଗାନ୍ଧୀଜୀଙ୍କ ନୀତି ଅନୁସାରେ ଜୋରିମାନା ଦେବାର କଥା ନୁହେଁ । ମୁଁ ବି ଜୋରିମାନା ଦେଇ ନ ଥିଲି କିମ୍ବା ଦେବାଲାଗି କାହାରିକି କହି ନ ଥିଲି । ମୋର ବନ୍ଧୁ ମୋହିତ ମୈତ୍ର ୫୦୦ ଟଙ୍କା ଜୋରିମାନା ମୋ ଅଜାଣତରେ ଦାଖଲ କରିଦେଲେ । ମୁଁ ଅଗ୍ରନକ ମୁକ୍ତିଲାଭ କଲି ।

ମୋହିତ ବାବୁ ଇଉନାଇଟେଡ୍ ପ୍ରେସ ଅଫିସକୁ ସମ୍ଭାଳି ଥିଲେ ମୋ ଜେଲ ଯିବା ବେଳେ । ସେ ଅଧୀର ହେଉଥିଲେ କେତେ ଶୀଘ୍ର ସେଥିରୁ ମୁକ୍ତ ହେବେ ଏବଂ ମତେ ତାର ଦାୟିତ୍ୱ ସମର୍ପି ଦେବେ । ମୋର ଜେଲ ଯିବା ପରେ ଆପେ ଆପେ ତାହା ମୋ ହାତରୁ ଗ୍ଲି ଯାଇ ଥାଆନ୍ତା । ମାତ୍ର ମୁଁ ବିଶ୍ୱନାଥ ଦାସଙ୍କ ମନ୍ତ୍ରୀ ମଣ୍ଡଳ ସମୟରେ ସରକାରୀ ଗ୍ରାଣ୍ଟ କରାଇ ଓଡ଼ିଶାରେ ନୂଆ କରି ଅଫିସ ସ୍ଥାପନା କରିଥିଲି । ନଚେତ୍ ପୂର୍ବରୁ କେବଳ ଆସୋସିଏଟେଡ ପ୍ରେସ ଥିଲା ଏବଂ ସରକାରୀ ଗ୍ରାଣ୍ଟ ତାକୁ ମିଳୁଥିଲା । ଏହି କାରଣରୁ ଇଉନାଇଟେଡ୍ ପ୍ରେସ ବାଲାଙ୍କର ମୋ ପ୍ରତି ଟିକିଏ ବିଗ୍ଭର ଥିଲା । ମୋହିତ ମୈତ୍ର ସେମାନଙ୍କ ପାଖରେ ସୁପରିଚିତ । ସେ ତାଙ୍କ ଉପରେ ପ୍ରଭବ ପକାଇ ଅଫିସ ଷ୍ଟାଫ୍ ଆଦି ଯେମିତି ଥିଲା; ସେମିତି ରଖାଇ ପାରିଲେ । ମୁଁ ଆସିଲା ପରେ ମତେ ଆଉ ଚିନ୍ତା କରିବାକୁ ପଡ଼ି ନ ଥିଲା । ମୋହିତ ମୈତ୍ର ଥିଲେ ମୋର ପରମ ବନ୍ଧୁ । ସାଂବାଦିକ ଥିଲାବେଳେ ତାଙ୍କ ସହ ପରିଚୟ ଓ ପରେ ଅତି ଆତ୍ମୀୟତା । ଅମୃତ ବଜାର ପତ୍ରିକାର ବିଶେଷ ସଂବାଦଦାତା ରୂପେ ସେ ଓଡ଼ିଶାର ରାଜନୀତିକ ଓ ଅନ୍ୟ ସମସ୍ୟା ପ୍ରଥମ କରି ବାହାରେ ପରିଚିତ କରାଇଥିଲେ । ଖୁବ ଅମାୟିକ ଓ ବିଶ୍ୱସ୍ତ ବନ୍ଧୁ । ଓଡ଼ିଶାରୁ ସେ ଗଲେ ଏଲାହାବାଦ ଅମୃତ ବଜାର ପତ୍ରିକାର ଏକ ସଂସ୍କରଣ ବାହାର କରିବା ନିମନ୍ତେ । ସେଠୁ ଆସିଲେ କଲିକତା ପତ୍ରିକା ଅଫିସକୁ । ତାହା ଛାଡ଼ି ସଂପାଦକ ହେଲେ ଶରତ୍ ବୋଷଙ୍କ କାଗଜ 'Independent' ର । କିଛି କାଳ ପରେ C.P.I. (M)ର ସମର୍ଥକ ହେଲେ ଓ ଲୋକସଭାକୁ ଏକ ଉପ ନିର୍ବାଚନରେ ନିର୍ବାଚିତ ହୋଇ ଥିଲେ । ମାତ୍ର କ୍ୟାନସର ରୋଗରେ ପିଡ଼ିତ ହୋଇ ମୃତ୍ୟୁ ଘଟିଲା । ତାଙ୍କ ସ୍ତ୍ରୀଙ୍କି ମୁଁ ୧୯୮୧ରେ ଯାଇ ଭେଟି ଥିଲି । ଆଉ କିଛି ଜାଣେନା । ମୋହିତ ବାବୁଙ୍କ ପରି ଦରଦୀ ବନ୍ଧୁ ଆଉ ମିଳିବେ ନାହିଁ ।



[ ୩୧ ]

# ସୀମିତ ସତ୍ୟାଗ୍ରହର ସୀମିତ ଫଳ

ଗଣ ସତ୍ୟାଗ୍ରହ ଓ ଆଇନ ଅମାନ୍ୟରେ ଯେପରି ଦେଶ ସାରା ଚହଳ ପଡ଼େ, ବ୍ୟକ୍ତିଗତ ସତ୍ୟାଗ୍ରହରେ ତାହା ହେବାର ନ ଥିଲା । ହେଲା ନାହିଁ । ଜଣେ ଜଣେ ବ୍ୟକ୍ତିଗତ ଭାବରେ ଯୁଦ୍ଧ ବିରୋଧୀ ଧ୍ୱନି ଦେଇ ବୁଲିଲେ । ବଡ ବଡ ନେତା କଲେ ଜନ ସମାଗମ ହେଉଥିଲା ଏବଂ ପୁଲିସ ତତ୍ପର ହୋଇ ଉଠୁଥିଲା । ନେତାଙ୍କୁ ଗିରଫ କରି ନେଉଥିଲେ । କାରାଦଣ୍ଡ ମିଳୁଥିଲା । ମୋର ମନେ ହୁଏ ନା କୌଣସି ବ୍ୟକ୍ତିଗତ ସତ୍ୟାଗ୍ରହୀଙ୍କୁ ସିକ୍ୟୁରିଟି ଆଇନ ଅନୁସାରେ ଅଟକ ରଖା ଯାଇଥିଲା । ଜବାହାରଲାଲ ନେହରୁଙ୍କୁ ବି ସଶ୍ରମ କାରାଦଣ୍ଡ ମିଳିଥିଲା ।

ଏଣେ ଯୁଦ୍ଧ ଘମାଘୋଟ । ଆମ ଭିତରେ ଗୋଟାଏ ନୀତିଗତ ପ୍ରଶ୍ନ ବିଶେଷ ଆଲୋଚନାର ବସ୍ତୁ ହୋଇ ପଡ଼ିଥିଲା । ଗାନ୍ଧୀଜୀ ୧୯୩୪ରେ ସତ୍ୟାଗ୍ରହ ସ୍ଥଗିତ ରଖି ଦେଲେ । ସେହି କେବଳ ସତ୍ୟାଗ୍ରହୀ ରହିଥିଲେ । ଆଉ କେହି ସତ୍ୟାଗ୍ରହ କରି ପାରିଲେ ନାହିଁ କିମ୍ବା ସତ୍ୟାଗ୍ରହୀ ହୋଇ ରହି ନ ଥିଲେ । ୧୯୪୦।୪୧ରେ ଏ ଯେଉଁ ବ୍ୟକ୍ତିଗତ ସତ୍ୟାଗ୍ରହ ଏହା ଏକ ପ୍ରକାର ତାରି ପୁନରାବୃତ୍ତି ହେଲା । ସେ ବାଛିଲେ; କିଏ ସତ୍ୟାଗ୍ରହ କରିବ । ଏହାର ପ୍ରତିକ୍ରିୟାଟା ଲୋକଙ୍କ ଉପରେ ବିଶେଷ କିଛି ପ୍ରଭାବ ପକାଇଲା ନାହିଁ । ପ୍ରକାରାନ୍ତରେ ଗୋଟାଏ ନିବେଦନ ପରି ହେଲା । ଲୋକଙ୍କ ଭିତରେ ପ୍ରତିକ୍ରିୟା ସୃଷ୍ଟି ନ ହେଲେ ସରକାର କାହିଁକି ପରୁଆ କରନ୍ତା ! ଶେଷକୁ ଏପରି ଅବସ୍ଥା ହେଲା ଯେ, ଯୁଦ୍ଧ ବିରୋଧୀ ଧ୍ୱନି ଦେଇ ସତ୍ୟାଗ୍ରହୀ ବୁଲିଲେ— ସରକାର ତାଙ୍କୁ ଗିରଫ କଲେ ନାହିଁ । ପ୍ରଥମ

ଦ୍ୱିତୀୟ ଦଫାରେ ଟିକିଏ ପଦସ୍ଥ ଲୋକଙ୍କୁ ସତ୍ୟାଗ୍ରହ କରିବାକୁ କୁହା ଯିବାରୁ, ସେମାନେ ସତ୍ୟାଗ୍ରହ ଆରମ୍ଭ କରିବା ସାଙ୍ଗେ ସାଙ୍ଗେ ସରକାର ତାଙ୍କୁ ଶାସ୍ତିଦେଇ ଜେଲ ଖାନାରେ ଭର୍ତ୍ତି କରି ଦେଲେ । ତା ପରେ ଆନ୍ଦୋଳନଟି ଆପଣାଛାଏଁ ମଉଳି ଗଲା । ବେଶି ଲୋକ ବି ବାହାରିଲେ ନାହିଁ ଏପରି ବୁଲି ବୁଲି ପ୍ରଚାର କରିବା ନିମନ୍ତେ । ଗାନ୍ଧୀଜୀ ବାହାରେ ରହି ଥାଆନ୍ତି ।

ଆମ ମାନଙ୍କ ଭିତରେ ସେଥିଲାଗି ଖୁବ ନୀତିଗତ ଆଲୋଚନା ଚାଲି ଥାଏ । ଏପରି ସତ୍ୟାଗ୍ରହର କଣ ଫାଇଦା । ଗାନ୍ଧୀଜୀ ବ୍ରିଟିଶ ସରକାର ଉପରେ ନୈତିକ ପ୍ରଭାବ ପକାଇବା ନିମନ୍ତେ ଏହା କରାଇ ଥାଆନ୍ତି । ମାତ୍ର ସାମାଜ୍ୟବାଦୀ ଶକ୍ତି ଉପରେ ପୁଣି ନୈତିକ ପ୍ରଭାବ କଣ ? ପୁଣି କୁହାଗଲା ସାମ୍ରାଜ୍ୟବାଦୀ ଶକ୍ତି ଯୁଦ୍ଧ ବିଭୀଷିକା ଭିତରେ ପଡ଼ିଥିବା ବେଳେ ଆମେ ତାଙ୍କୁ ହଇରାଣରେ ଅକଡ଼ିଆ ଅବସ୍ଥାରେ ପକାଇ ଦାବୀ ହାସଲ କରିବା ସତ୍ୟାଗ୍ରହ ନିୟମର ବିରୋଧୀ । ଆହୁରି ମଧ୍ୟ ଯୁକ୍ତି ଉଠୁଥିଲା ଆମେ ଯଦି ବ୍ରିଟିଶ ସରକାରକୁ ଏତେବେଳେ କଲବଲ କରି ଦୁର୍ବଳ କରିଦେବା ତେବେ ଫାସିଷ୍ଟ ଶକ୍ତିର ଶକ୍ତି ବୃଦ୍ଧି ପାଇବ । ମିତ୍ର ଶକ୍ତି ଦୁର୍ବଳ ହୋଇଯିବ । ଏହା ବର୍ତ୍ତମାନ ପରିସ୍ଥିତିରେ ଶ୍ରେୟ ନୁହେଁ । କମ୍ୟୁନିଷ୍ଟମାନେ ବି ସେତେବେଳେ ଗାନ୍ଧୀଜୀଙ୍କର ଏହି ସୀମିତ ସତ୍ୟାଗ୍ରହର ବିରୋଧ କଲେ । ସୋଭିଏଟ୍ ରୁଷ ଜର୍ମାନୀ ସାଙ୍ଗରେ ଅନାକ୍ରମଣ ଚୁକ୍ତିରେ ଆବଦ୍ଧ ଥାଏ । ତେଣୁ ଇଂରେଜ ସାମ୍ରାଜ୍ୟ ପ୍ରତି ତାଙ୍କର କିଛି ପ୍ରୀତିଭାବ ରହି ନ ଥାଏ । ଏଣେ ପଣ୍ଡିତ ନେହରୁ, ମୌଲନା ଆଜାଦ ପ୍ରଭୃତି ତୁଙ୍ଗ ନେତାମାନେ ଏଥିରେ ଖୁବ୍ ବେଶି ଆଗ୍ରହୀ ନ ଥାନ୍ତି । ଏପରି ଏକ ଧାରଣା ଦୂର କରିବା ନିମନ୍ତେ ହିଁ ଗାନ୍ଧୀଜୀ, ଜବାହାରଲାଲଙ୍କୁ ଦ୍ୱିତୀୟ ସତ୍ୟାଗ୍ରହୀ ରୂପେ ବାଛି ଜେଲରେ ପୂରାଇ ଦେଲେ । ଅବଶ୍ୟ କମ୍ୟୁନିଷ୍ଟମାନେ ଆଉ ଅଳ୍ପ ଦିନ ପରେ ତାଙ୍କ ମନୋଭାବ ବଦଳାଇଲେ ।

ଜର୍ମାନୀ ରୁଷକୁ ଆକ୍ରମଣ କରିବାରୁ ସାରା ରାଜନୀତିକ ଚିତ୍ର ବଦଳି ଗଲା । ରୁଷ କମ୍ୟୁନିଷ୍ଟଙ୍କ ନିର୍ଦ୍ଦେଶମତେ ଭାରତର କମ୍ୟୁନିଷ୍ଟମାନେ ଚଳୁଥିଲେ । ଆଜି କାଲି ଲେଖା ଯାଉଛି କି ନା ମତେ ଠିକ୍ ଜଣା ନାହିଁ । ମାତ୍ର କମ୍ୟୁନିଷ୍ଟ ପାର୍ଟିର ଲେଖା ପ୍ୟାଡ୍‌ମାନଙ୍କରେ ଓ ଅଫିସ ସାମନାରେ ଯେଉଁ ବୋର୍ଡ ଥାଏ,

ଯେଉଁଥିରେ ବଡ ବଡ ଓ ସ୍ପଷ୍ଟଭାବରେ ଲେଖା ଥାଏ, ସେମାନେ ଆନ୍ତର୍ଜାତିକ କମ୍ୟୁନିଷ୍ଟ ପାର୍ଟିର ଭାରତୀୟ ଶାଖାର ଓଡ଼ିଶା ଶାଖା ବୋଲି । ସେମାନଙ୍କର ପୂର୍ଣ୍ଣ ଆନୁଗତ୍ୟ ତାଙ୍କଠି । ଏବେ କମ୍ୟୁନିଷ୍ଟ ବହୁ ଭାଗରେ ବିଭକ୍ତ ହୋଇ ଗଲେଣି । ସି.ପି.ଆଇ. (ଏମ୍) ସଭିଙ୍କ ଭିତରେ ପ୍ରଭାବଶାଳୀ– ସେମାନେ କେତେକ ପରିମାଣରେ ନିଜର ସ୍ୱାଧୀନ ଚରିତ୍ର ସିଦ୍ଧ କରିଥିବାରୁ ତାଙ୍କ ପ୍ରତି ଆକର୍ଷଣ ବଢୁଛି । ସି.ପି.ଆଇ. ବଡ ଦୁର୍ବଳ ଅବସ୍ଥାରେ ଗତି କରୁଛି । ସେ ଯାହା ହେଉ ବ୍ୟକ୍ତିଗତ ସତ୍ୟାଗ୍ରହର ସେମାନେ ବିରୋଧ କରୁଥିଲେ ଓ ଗଣ ସତ୍ୟାଗ୍ରହ ଦାବୀ କରୁଥିଲେ । କିନ୍ତୁ ଏଥି ଭିତରେ ଜର୍ମାନୀ ରୁଷ ଆକ୍ରମଣ କରିବାରୁ ପରିସ୍ଥିତି ବଦଳି ଗଲା । ତାଙ୍କ ଦୃଷ୍ଟିରୁ ସାମ୍ରାଜ୍ୟବାଦୀ ଯୁଦ୍ଧ ଜନ ଯୁଦ୍ଧରେ ପରିଣତ ହୋଇଗଲା । ସେମାନେ ପ୍ରକାଶ୍ୟରେ ବ୍ରିଟିଶ ସାମ୍ରାଜ୍ୟବାଦକୁ ସମର୍ଥନ କଲେ । ଗାନ୍ଧୀଜୀ ଏପରି ଏକ ଦିଗ ପ୍ରତି ସଂପୂର୍ଣ୍ଣ ଉଦାସୀନ ହୋଇ କାର୍ଯ୍ୟପନ୍ଥା ଧରି ନ ଥାନ୍ତେ ।

ଏପରି ବିଚାରଭ୍ରମ ଭିତରେ ବ୍ୟକ୍ତିଗତ ସତ୍ୟାଗ୍ରହ ଯେ ବିଶେଷ ଫଳପ୍ରଦ ହେଲା ନାହିଁ ସେଥିରେ ବିସ୍ମିତ ନ ହେବାର କଥା ।

ଗାନ୍ଧୀଜୀ ବାସ୍ତବିକ ସତ୍ୟାଗ୍ରହୀଙ୍କୁ ଓ କଂଗ୍ରେସ ଲୋକଙ୍କୁ ଏକ ପରୀକ୍ଷା କରୁଥିଲେ । ଏ ସତ୍ୟାଗ୍ରହ ଏକ ବଡ ସତ୍ୟାଗ୍ରହର ଅୟମାରମ୍ଭ । ଆମର ସଂଗ୍ରାମ ଜାରି ରହିଛି । ଆହୁରି ପ୍ରଖର ଗତିରେ ହେବ, ଏକଥା ଦେଶବାସୀଙ୍କ ହୃଦୟରେ ପୂରାଇଲେ । ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଅଗ୍ନିବାଣ ଲେଖାରେ ପ୍ରକାଶ କଲେ । ଲୋକଙ୍କ ମନ ଉତ୍କ୍ଷିପ୍ତ ହୋଇ ଉଠିଲା । ଦେଶସାରା ଗ୍ରଅଲ୍ୟ ଉତ୍ତେଜନା ଜାଗ୍ରତ ହୋଇଗଲା । ୧୯୪୨ ଅଗଷ୍ଟ ୮ ତାରିଖରେ "କର ବା ମର" ପ୍ରସ୍ତାବ ପାଶ୍ ହେବା ପୂର୍ବରୁ କଂଗ୍ରେସ ଦୁଇମାସ ଆଗରୁ ଓ୍ୱାର୍ଦ୍ଧା ଠାରେ ଏକ ପ୍ରସ୍ତାବ ପାସ୍ କରି ବ୍ରିଟିଶ ସାମ୍ରାଜ୍ୟବାଦକୁ ଚେତାବନୀ ଶୁଣାଇ ଦେଇଥିଲା । ସବୁଠି ଗାନ୍ଧୀଜୀଙ୍କର ବଡ କୌଶଳ ହେଲା ମିତ୍ରପକ୍ଷ ଅର୍ଥାତ୍ ଆମେରିକା ଓ ଚୀନ୍‌ର ସହାନୁଭୂତି ଲାଭ କରିବା । ଭାରତରେ ତୁରନ୍ତ ସ୍ୱାଧୀନତା ଦାବୀ ସପକ୍ଷରେ ଆମେରିକାର ପ୍ରେସିଡେଣ୍ଟ ରୁଜଭେଲଟ ଏବଂ ଚୀନର ଚିଆଙ୍ଗ କାଇଶେକ୍ ବକ୍ତବ୍ୟ ଦେଲେ । ଦେଶରେ ଓ ବାହାରେ କମ୍ୟୁନିଷ୍ଟ ଛଡ଼ା ଅନ୍ୟ ଜନମତ ସୃଷ୍ଟି ହୋଇଗଲା– ସାମ୍ରାଜ୍ୟବାଦ ବିରୁଦ୍ଧରେ ପ୍ରବଳ ଜନ ସଂଗ୍ରାମ ନିମନ୍ତେ ଦେଶ ତିଆର ହୋଇଗଲା । ଏହି ଯେଉଁ ସଂଗ୍ରାମ ହେଲା ତାହା ଭାରତର ଶେଷ ସ୍ୱାଧୀନତା ସଂଗ୍ରାମ । ଆମର ସବୁ ପୁଣି ଜେଲ ଯିବା ପାଳି ଆସିଗଲା ।

卐

[ ୩୨ ]

# ଶେଷ ସଂଗ୍ରାମର ଧାର୍

୧୯୪୨ କର ବା ମର ସଂଗ୍ରାମ ଯୋଗୁଁ ଦେଶ ସ୍ୱାଧୀନ ହେଲା । ମାତ୍ର ଏ ସଂଗ୍ରାମ ଲାଗି କିଏ ଡାକରା ଦେଇଥିଲା, ତାହାର ନିର୍ଦ୍ଦିଷ୍ଟ ଜବାବ ଶେଷ ପର୍ଯ୍ୟନ୍ତ ବ୍ରିଟିଶ ସରକାର ଦେଇପାରି ନ ଥିଲା । ଅଗଷ୍ଟ ୮ ତାରିଖ "ଭାରତ ଛାଡ଼" ପ୍ରସ୍ତାବରେ କେଉଁଠି ସଂଗ୍ରାମର ନିଷ୍ପତ୍ତି ବିଷୟ ଉଲ୍ଲେଖ ନ ଥିଲା । ଅବଶ୍ୟ ବ୍ରିଟିଶର ପରାଧୀନତା ଆଉ ସହ୍ୟ କରାଯିବ ନାହିଁ ଏବଂ ଇଂରେଜଙ୍କୁ ଭାରତ ଛାଡ଼ିବାକୁ ପଡ଼ିବ, ଏହା ଅତି ସ୍ପଷ୍ଟ ଭାବରେ ଲିଖିତ ହୋଇ ଥିଲା । ଦେଶରେ ସଂଗ୍ରାମ ଅଭିମୁଖୀ ମନୋଭାବ ସୃଷ୍ଟି ହୋଇ ସାରିଥିଲା । ଆନ୍ତର୍ଜାତିକ କ୍ଷେତ୍ରରେ ଯେମିତି ମିତ୍ର ପକ୍ଷ ଓ ଶତ୍ରୁ ପକ୍ଷ ଅଡବାଡ ହୋଇ ଯାଇଥିଲେ; ସେମିତି ଏକ ପଟରେ ଇଂରେଜ ଓ ଅନ୍ୟ ପଟରେ ଭାରତବାସୀ କଂଗ୍ରେସ ସତେକି ମୁହାଁ ମୁହିଁ ହେବା-ପରି ଅବସ୍ଥାକୁ ଆସି ଯାଇଥିଲା । ସାରା ଦେଶବାସୀ ଯେମିତି ଗାନ୍ଧୀଜୀଙ୍କ ମୁହଁକୁ ଅନାଇ ରହିଲେ । ଏ.ଆଇ.ସି.ସି. ମଧ୍ୟ ପ୍ରାୟ ସର୍ବସମ୍ମତି କ୍ରମେ ପ୍ରସ୍ତାବଟି ପାସ୍ କରିଦେଲା; କେବଳ ମୁଷ୍ଟିମେୟ କମ୍ୟୁନିଷ୍ଟ ବିରୁଦ୍ଧରେ ହାତ ଉଠାଇ ଥିଲେ । କଂଗ୍ରେସ ନେତୃବୃନ୍ଦଙ୍କ ଭିତରେ ମଧ୍ୟ ଆଉ ମତଭେଦ ନଥିଲା । ସମସ୍ତେ ମହାତ୍ମା ଗାନ୍ଧୀଙ୍କୁ ସର୍ବ ସମ୍ମତି କ୍ରମେ ନେତା ବାଛିଲେ ।

ଅଗଷ୍ଟ ୮ ପ୍ରସ୍ତାବ ଯେପରି ଭବିଷ୍ୟ ଭାରତର ଏକ ଚିତ୍ରର ସୂଚନା ଦେଇଥିଲା, ସେମିତି ମହାତ୍ମା ଗାନ୍ଧୀ ଅତି ଦୃଢ଼ ସ୍ୱରରେ ବ୍ରିଟିଶ ସରକାରକୁ ଚ୍ୟାଲେଞ୍ଜ ଦେଲେ । ପ୍ରସ୍ତାବରେ ବ୍ରିଟିଶ ଭାରତ ଛାଡ଼ କଥା କହିବା ସାଙ୍ଗେ ସାଙ୍ଗେ

ଭାରତବାସୀଙ୍କ ମନରେ ଭବିଷ୍ୟତ ଲାଗି କୌଣସି ଶଙ୍କା ବା ସନ୍ଦେହ ରହି ନ ଥିଲା । କୁହା ଗଲା ଯେଉଁ ପୂର୍ଣ୍ଣ ସ୍ୱରାଜ୍ୟ ହେବ, ତାହାର କ୍ଷମତା ଆସିବ ଏ ଦେଶର ଅସଲ କ୍ଷମତା ଆସିବ କାରଖାନାରେ କାର୍ଯ୍ୟ କରୁଥିବା ମଜଦୁର ଓ କ୍ଷେତରେ କାମ କରୁଥିବା ଚାଷି ମୂଲିଆଙ୍କ ହାତକୁ । ଯେମିତି ସ୍ଲୋଗାନ ଦିଆଯାଏ "ଖଟନେ ବାଲା ଖାଏଗା, ଔର ପିଛେ ଯୋ ଲୁଚ୍ ହୋ ।" ଗାନ୍ଧୀଜୀ ତାଙ୍କ ଭାଷଣରେ କହିଲେ– ଇଂରେଜ ତୁମେ ଚାଲି ଯାଅ । ଏବେ ଯାଅ, ଆଉ ମୁହୂର୍ତ୍ତେ ତୁମକୁ ସହ୍ୟ କରାଯାଇ ପାରେନା । ଶ୍ୱେର ଡ଼କାୟତଙ୍କ ହାତରେ ପଡ଼ିଛେ ପଡ଼ୁ; ଆଉ କିଛି ନ କଲେ ଜିନ୍ନାଙ୍କ ହାତରେ ପଛକେ ସମର୍ପି ଦିଅ । ସେ ତ ଭାରତୀୟ । ମାତ୍ର ତୁମେ ଆଉ କାଳ ବିଳମ୍ବ ନ କରି ବିଦାୟ ନିଅ ।" ଆନ୍ତର୍ଜାତିକ ସମ୍ପ୍ରଦାୟ ଆମେରିକା, ଚୀନ ଆଦି ମିତ୍ର ପକ୍ଷଙ୍କୁ ନିବେଦନ କଲେ ଇଂରେଜ ସାମ୍ରାଜ୍ୟବାଦ ଏକ ବୋଝ ହୋଇ ରହିଛି । ଦେଶର କୋଟି କୋଟି ଅପାର ସାମ୍ରାଜ୍ୟ ବିରୋଧୀ ଶକ୍ତିଙ୍କ ଗଳାରୋଧ କରି ବସିଛି । ସେମାନଙ୍କର ମୁକ୍ତିରେ ଏକ ଅପାରମେୟ ଲୋକଶକ୍ତି ସ୍ୱାଧୀନତା ଓ ଗଣତନ୍ତ୍ର ରକ୍ଷା ଲାଗି ଜୀବନ ଉତ୍ସର୍ଗ କରିଦବ । ଗାନ୍ଧୀଜୀଙ୍କ ମୁହଁରୁ ଏପରି ଢଙ୍ଗର ଭାଷଣ କେବେ ଶୁଣାଯାଇ ନ ଥିଲା । ମୌଲାନା ଆଜାଦ ଥିଲେ କଂଗ୍ରେସର ସଭାପତି । ପଣ୍ଡିତ ଜବାହାରଲାଲ ଓ ସର୍ଦ୍ଦାର ପଟେଲ ପ୍ରସ୍ତାବକୁ ନିଜର ସମର୍ଥନ ଜଣାଇଲେ ।

ମୁଁ ସେହି ଐତିହାସିକ ବୈଠକରେ ଉପସ୍ଥିତ ଥିଲି । ଗୋଟାଏ କିଛି ଘଟି ଯିବାର ସମ୍ଭାବନାରେ ସମସ୍ତେ ଥାଆନ୍ତି । କିନ୍ତୁ କଅଣ କେମିତି ହେବ କାହାରିକୁ ଜଣା ନ ଥାଏ । ଗାନ୍ଧୀଜୀ, ଯଦି ସଂଗ୍ରାମ କରିବାକୁ ପଡେ, ତାହା କି ରୂପ ନେବ ତାହାର କୌଣସି ଇଙ୍ଗିତ ଦେଇ ନ ଥାନ୍ତି । ବରଂ ସେ କହିଲେ– ସତ୍ୟାଗ୍ରହୀ ଅପର ପକ୍ଷକୁ ଶେଷ ସୁଯୋଗ ବରାବର ଦେଇଥାଏ । ମୁଁ ଏଠାରୁ ଯାଇ ଭାଇସ୍ରୟଙ୍କୁ ଲେଖିବି; ଦରକାର ହେଲେ ଭେଟିବି । ଆମର ଦୃଢ଼ମତ ତାଙ୍କୁ ଜଣାଇ ପୁଡ଼ିଆ ପତ୍ର ବାନ୍ଧି ବିଦାୟ ହେବା ନିମନ୍ତେ ଗୁହାରି କରିବି । ଗାନ୍ଧୀଜୀଙ୍କର ଏ ବାଣୀ ଆମ ସମସ୍ତିଙ୍କି ଓ ଦେଶବାସୀଙ୍କି ବଡ ଉତ୍କଣ୍ଠାରେ ରଖିଦେଲା । ବହୁତ ରାତିରେ ଆମେ ସବୁ ମିଟିଂରୁ ଫେରିଲୁ । ଯେଝା ଜାଗାକୁ ଗଲୁ ।

ରତି ଅଧରୁ ବ୍ରିଟିଶ ସରକାର ଆକ୍ରମଣ ଆରମ୍ଭ କରିଦେଲା । ଗାନ୍ଧୀଜୀ ଓ କଂଗ୍ରେସ କାର୍ଯ୍ୟକାରୀ ସମିତି ସଦସ୍ୟ ଯେଉଁମାନେ ମିଟିଂରେ ଯୋଗ ଦେଇ-ଥିଲେ ଓ ବମ୍ବେ ଛାଡ଼ି ନ ଥିଲେ, ସମସ୍ତଙ୍କି ଗିରଫ କରି ନେଲେ । ବମ୍ବେ ପରି ଭାରତର ଅନ୍ୟ ସବୁ ପ୍ରଦେଶରେ ଯେନେ ଜଣା ଶୁଣା କଂଗ୍ରେସ ଲୋକ ଥିଲେ, ସମସ୍ତଙ୍କି ଗିରଫ କରାଗଲା । ଏଥିରେ ଏମିତି ଅନେକ ଲୋକଙ୍କୁ ନେଲେ, ଯେ ବ୍ୟକ୍ତିଗତ ଭାବରେ କେବେ ହେଲେ ଜେଲ ଯାଇ ନ ଥାନ୍ତେ । କଂଗ୍ରେସର ଲୋକ ହେଲେ ବୋଲି ସମସ୍ତେ ଯେ ଜେଲ ଯିବାଲାଗି ତିଆର, ଏମିତି କିଛି କଥା ନୁହେଁ । କିନ୍ତୁ ବ୍ରିଟିଶ ସରକାର ତହଳ ବିକଳ ହୋଇ ଶେଷ ସଂଗ୍ରାମକୁ ନିଃଶେଷ କରିବା ମତଲବରେ ଧୁଆ ମୂଳା ଅଧୁଆ ମୂଳା ସମସ୍ତଙ୍କି ନେଇ ଗାରଦ ଭିତରେ ପୁରାଇ ଦେଲା । ଗାନ୍ଧୀଜୀଙ୍କି ନେଇ ଆଗା ଖାଁ ପ୍ରାସାଦରେ ରଖିଲେ ଏବଂ ବମ୍ବେରୁ ଗିରଫ ହୋଇଥିବା ଅନ୍ୟ ନେତାମାନଙ୍କୁ ଅହମଦ ନଗର ଦୁର୍ଗ ଭିତରେ ବନ୍ଦୀ କରିଦେଲେ । ଏଗୁଡ଼ିକ ଏପରି ଅଘ୍ନନକ ଓ ଚତୁରତା ସହକାରେ କରାଗଲା ଯେ ଲୋକେ ସଂପୂର୍ଣ୍ଣ ଅନ୍ଧାରରେ ରହିଗଲେ । ପ୍ରାଦେଶିକ ସ୍ତରରେ ସେମିତି ଗିରଫ-ଦାରୀ ହେଲା ଏବଂ ଅଗଷ୍ଟ ନ' ତାରିଖରେ ସ୍ଥିରିଆଡେ ବିଭିନ୍ନ ଲୋକଙ୍କ ନାଆଁରେ ଓ୍ୱାରଣ୍ଟ ଜାରି ହୋଇଗଲା । ସେଥିରୁ ଜଣା ପଡ଼ିଲା ଅଗଷ୍ଟ ଆଠରେ ପ୍ରସ୍ତାବ ପାସ୍ ହେବା ଆଗରୁ ସରକାର ତାର ଦମନାସ୍ତ୍ର ପକାଇ ରଖିଥିଲା । ଅନ୍ୟମାନଙ୍କ ସହ ମୋ ନାମରେ ବି ଓ୍ୱାରଣ୍ଟ ସେହି ଦିନ ବାହାରିଲା । ମାତ୍ର ମୁଁ ତିନି ତାରିଖରୁ ବମ୍ବେ ଯାତ୍ରା କରିଥିଲି ଏ.ଆଇ.ସି.ସି. ମିଟିଂରେ ଯୋଗ ଦେବା ନିମନ୍ତେ ।

ବ୍ରିଟିଶ ସରକାରକୁ ଜବାବ ଦେବାକୁ କଂଗ୍ରେସ ଲୋକ ବାହାରେ ନ ଥିଲେ । କଂଗ୍ରେସ କମିଟି ଗୁଡ଼ିକ ବେଆଇନ ଘୋଷଣା କରି ଦିଆଗଲା । ଏସବୁ ଗିରଫର ପ୍ରତିକ୍ରିୟା ସ୍ୱରୂପ ଦେଶବାସୀ ମାତି ଉଠିଲେ । କେହି କହିବାକୁ ନାହିଁ; ନେତୃତ୍ୱ ଦେବାକୁ ନାହିଁ । କେହି କାହାରିକୁ ଅପେକ୍ଷା କରିବାକୁ ନ ଥିଲା । ଯାହା ମନକୁ ଯେପରି ପାଇଲା, ସେ ସେପରି ପ୍ରହାର କଲା । ୨।୩ ଦିନ ଖଣ୍ଡପ୍ରଳୟ ସାରା ଦେଶରେ ସୃଷ୍ଟି ହୋଇଗଲା । କେତେ ହିଂସାକାଣ୍ଡ ଓ ଗୁଳି ତାର ସୀମା ରହିଲା ନାହିଁ । ବ୍ରିଟିଶ ସରକାର ତଟସ୍ଥ । ବିଲାତ ପାର୍ଲିମେଣ୍ଟକୁ ମିଥ୍ୟା କୁହା ଗଲା ଯେ ଗାନ୍ଧୀ ଏହା ନିର୍ଦ୍ଦେଶ ଦେଇଥିଲେ । ମାତ୍ର ପ୍ରମାଣ କଣ ? ଦାବୀ ହେଲା ଏହାର ସତ୍ୟତା ପ୍ରମାଣ କରିବା ନିମନ୍ତେ । କିଛି ନ ପାଇ ଆନ୍ଧ୍ର ପ୍ରଦେଶ

କଂଗ୍ରେସ କର୍ମୀଙ୍କୁ ଏକ ସମାଚାର ଦେଖାଇଲେ । ମତେ ଯେତେବେଳେ ଅଣ୍ଡର ଗ୍ରାଉଣ୍ଡରୁ ଗିରଫ କରି ଆଣିଲେ, ତାଙ୍କୁ ସେଣ୍ଟ୍ରାଲ ଇଣ୍ଟେଲିଜେନ୍ସ ଅଫିସର ଜଣେ ଆସି ମତେ ଏକ ଟୁଲ ଉପରେ ସିଧା କରି ବସାଇଲେ । ହଲିବାକୁ କି ହାତ ହଲାଇବାକୁ ଦେଉ ନ ଥିଲେ । ବୁଢେଇ ତୁଢେଇ ସେଇ ଘଣ୍ଟ । ଓଡ଼ିଶାରେ ଯାହା ସବୁ ହେଲା– ଆପଣ ଗାନ୍ଧୀଜୀଙ୍କ ଠାରୁ ଏପରି ନିର୍ଦ୍ଦେଶ ପାଇଥିଲେ କି ! ଶେଷ ପର୍ଯ୍ୟନ୍ତ କିଛି ସୁରାକ ମିଳି ନ ଥିଲା ।

ମୁଁ ପୂର୍ବ ନିର୍ଦ୍ଧାରିତ ସିଦ୍ଧାନ୍ତ ଅନୁସାରେ କଟକରୁ ଖସି ଆସିଲି ଓଡ଼ିଶାରେ ଗୁପ୍ତ ସଂଗଠନ ତିଆରି କରି ଅଗଷ୍ଟ ବିପ୍ଳବକୁ ସଫଳ କରିବା ନିମନ୍ତେ । ମୁଁ ନିଜକୁ ଅଗଷ୍ଟ ନ' ତାରିଖରୁ ବନ୍ଦୀ ଭାବରେ ଜିମ୍ବାର କରି ନେଲି ।

卐

# ଅଣ୍ଡର ଗ୍ରାଉଣ୍ଡ ବୋଲି କହୁଥିବ କାହିଁକି ?

ଅଣ୍ଡର ଗ୍ରାଉଣ୍ଡ ନାମଟି କେମିତି ଆମ ପଛରେ ଲାଗିଗଲା; ଜଣା ନାହିଁ । ଆମେ ଧରି ନେଲୁ, ଅଗଷ୍ଟ ୮ ତାରିଖରେ ସେହିଁ ବମ୍ବେରେ ଥାଇ ବିଗ୍ଭର ପଡ଼ିଲା, ଯେ ଗାନ୍ଧୀଜୀ ସିନା ଭାଇସରୟଙ୍କୁ ଭେଟିବେ ବୋଲି କହିଲେ, ମାତ୍ର ଖବର ମିଳିଥିଲା ବ୍ରିଟିଶ ସରକାର ସେ ସୁବିଧା ଦେବ ନାହିଁ । ଆଗରୁ ଗିରଫ କରି ନବ । ଏଇଟା ଶେଷ ସଂଗ୍ରାମ । ଏହାକୁ ଯଦି ପୂର୍ବ ଆନ୍ଦୋଳନ ପରି ଦବାଇ ଦିଆଯାଏ, ତେବେ ଆମର ସବୁ ଆଶା ଭରସା ଚୂର୍ଣ୍ଣ ହୋଇଯିବ । ଗାନ୍ଧୀଜୀଙ୍କର ଶେଷ ଆହ୍ୱାନ – ବ୍ରିଟିଶ ସରକାରକୁ ଶେଷ କରି ଦେବାକୁ ହେବ । ନେତାମାନେ ଗିରଫ ହୋଇଯିବେ । ତା ପରେ କ'ଣ ହେବ ! ଏକଥା ମଧ୍ୟ ସମସ୍ତେ ସ୍ୱୀକାର କଲେ କେତେକ ବଡ ବଡ ନେତା ଗିରଫ ନ ହେଲେ ଲୋକଙ୍କ ଭିତରେ ଭିନ୍ନ ପ୍ରତିକ୍ରିୟା ସୃଷ୍ଟି ହୋଇ ପାରେ । କିନ୍ତୁ ଭାରତ ସାରା ଗୋଟାଏ କିଛି ସଂଗଠିତ ଶକ୍ତି ସ୍ୱତନ୍ତ୍ର ଭାବରେ ରହି ଆନ୍ଦୋଳନକୁ ଯେ କୌଣସି ମତେ ଚାଲୁ ରଖିବାକୁ ପଡ଼ିବ । ଏହାକୁ ଗୁପ୍ତ ମନ୍ତ୍ରଣା କୁହାଯାଇ ପାରେ; ଗୁପ୍ତ ଆନ୍ଦୋଳନ ବୋଲି କାହିଁକି କୁହାଯିବ । ଏହିପରି ଏକ ଜବାବ ମୁଁ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ରେନର ସାହେବଙ୍କୁ ଦେଇଥିଲି । ସେ ଯେତେବେଳେ ସଶସ୍ତ୍ର ପୁଲିସ ଆଣି ମତେ ଘେରିଯାଇ ଗିରଫ କଲେ– ଏଇ ପ୍ରଶ୍ନ ପଗ୍ଭରି ଥିଲେ । କହିଲେ ମହାତ୍ମା ଗାନ୍ଧୀ Secrecy ଅର୍ଥାତ୍ ଗୁପ୍ତ କାର୍ଯ୍ୟର ବିରୋଧୀ ଥିଲେ । ଯାହା ହେବ ପ୍ରକାଶ୍ୟ ବିଦ୍ରୋହ । ଆପଣ ଜଣେ ଏ.ଆଇ.ସି.ସି. ସଭ୍ୟ । ଏଠି ଗାନ୍ଧୀଙ୍କ ନିର୍ଦ୍ଦେଶ ଅମାନ୍ୟ କରି ଯେ ଗୋପନୀୟ ଭାବେ କାର୍ଯ୍ୟ କରୁଥିଲେ କିପରି ? ମୁଁ ତାଙ୍କୁ ଜବାବରେ କହିଥିଲି–

ଏହାକୁ ଅଣ୍ଡର ଗ୍ରାଉଣ୍ଡ ବା ଲୁଚି ଛପି କାମ କରା ଯାଉଛି ବୋଲି କାହିଁକି କୁହାଯିବ ? କଂଗ୍ରେସ ଅଫିସ ସରକାର ଦଖଲ କରିଛି । ବେଆଇନ ଘୋଷିତ ହୋଇଛି– ପୁଲିସ ତାଲା ପକାଇ ଜଗି ରହୁଛନ୍ତି । ସେଠିକି ଯାଉଥିଲେ ମୁଁ ଗିରଫ ହୋଇ ଥାଆନ୍ତି । କାମ ବନ୍ଦ ହୋଇ ଯାଆନ୍ତା । ମୁଁ ବୁଦ୍ଧି କରି ସେତକ କରି ନାହିଁ । ଆଉ ଗୋଟିଏ ଜାଗାରେ ଅଫିସ ଖୋଲି କାର୍ଯ୍ୟ କରୁଛି । ଘରର ଗୁରିଆଡେ ଖୋଲା । ଲୋକ ଆସୁଛନ୍ତି, ଯାଉଛନ୍ତି । ଏଠି ଏପରି ସବୁ କାମ ହେଉଛି ବୋଲି କେହି ଜାଣି ପାରି ନ ଥିଲେ ତାହାର କାରଣ ହେଉଛି ପୁଲିସଙ୍କୁ ସୁବିଧା ଦେବା ନିମନ୍ତେ ଆମେ ଆଗରେ ସାଇନ୍‌ବୋର୍ଡ ଦେଇ ନ ଥିଲୁ । ମାତ୍ର ସବୁ କାମ କରୁ-ଥିଲୁ । ଏହା ଗୋପନୀୟ ସଂଗଠନ ବୋଲି ଆମେ ମାନିବୁ ନାହିଁ । ଏପରି ଉତ୍ତରରେ ରେନର୍ ସାହେବ ଖପା ହୋଇ ଉଠିଲେ ଓ ମୋ ଠାରେ ହାତକଡ଼ି ଲାଗିଗଲା ।

ଲୋକେ ଯେମିତି ସ୍ୱତଃସ୍ଫୂର୍ତ୍ତ ହୋଇ ବ୍ରିଟିଶ ଶାସନ କଳ ଉପରେ ଆକ୍ରମଣ ଚଳାଇଲେ, ସେମିତି କେତେକ କଂଗ୍ରେସ ଲୋକ ଆପଣାଛାଏଁ ସ୍ଥିର କରି ନେଲେ ଯେ, ସେମାନେ ପୁଲିସ ହାତରେ ଧରା ନ ଦେଇ ଭାରତର ବିଭିନ୍ନ ଅଞ୍ଚଳରେ ଏକ ସମାନ୍ତରାଳ ସରକାର ଗଢ଼ିବେ ଏବଂ ବୈପ୍ଳବିକ ଆନ୍ଦୋଳନକୁ ଶକ୍ତି ଦେବେ । ସଭିଙ୍କର ଏକ ବିଗ୍ୱର । ଗାନ୍ଧୀଜୀଙ୍କର ଶେଷ ବାର୍ତ୍ତା ହେଲା– ସରକାରକୁ ଅଚଳ କରିଦିଅ । ସ୍ୱାଧୀନତା ଘୋଷଣା କର । ନେତା କେହି ନାହିଁ କିମ୍ବା ନିର୍ଦ୍ଦେଶ ଦେବାକୁ କେହି ନାହିଁ । ତୁମେ ତୁମର ନେତା । କର ନଚେତ୍ ମର । ଏଭଳି ନିର୍ଦ୍ଦେଶ ପାଇଲା ପରେ ଆଉ କାହାରି ମନରେ କୌଣସି ଶଙ୍କା ରହିଲା ନାହିଁ । ସମସ୍ତେ ଗ୍ୱଲିଲେ ନିଜ ନିଜ ବାଟରେ । ଯେଉଁମାନେ ଗିରଫ ନ ହୋଇ ବିପ୍ଳବ ଗ୍ୱଲୁ ରଖିଥିଲେ, ତାଙ୍କ ଭିତରେ ଥିଲେ– ରାମ ମନୋହର ଲୋହିଆ, ଆର୍. ଆର୍. ଦିବାକର, ଅଚ୍ୟୁତ ପଟବର୍ଦ୍ଧନ, ଅରୁଣା ଆସଫ ଅଲ୍ଲୀ, ସୁଚେତା କ୍ରିପାଲାନୀ, ଅନ୍ନଦା ପ୍ରସାଦ ଚୌଧୁରୀ, ରାମ ନନ୍ଦନ ମିଶ୍ର ଓ ଉଷା ମେହଟା । ମୁଁ ମଧ୍ୟ ଓଡ଼ିଶାରେ ସେହି କାମ କରୁଥିଲି । ବମ୍ବେରୁ କିଭଳି ପୁଲିସ ଆଖିରେ ଧୂଳି ଦେଇ ମୁଁ ଆସି କଟକ ସହରରେ ମୋର ଅଫିସ ଖୋଲି କାମଦାମ ଆରମ୍ଭ କଲି, ତାର ସବିଶେଷ ବର୍ଣ୍ଣନା ମୋର ପୂର୍ବ ପୁସ୍ତକ "ଅଗଷ୍ଟ ବିପ୍ଳବ"ରେ ବର୍ଣ୍ଣିତ ହୋଇଛି । ଯେଉଁମାନଙ୍କ ନାମ ଲେଖିଛି; ସେଥିରେ ସମସ୍ତେ କିଛି ସୋସାଲିଷ୍ଟ

ନ ଥିଲେ । ଅଧିକାଂଶ ଥିଲେ ସମ୍ପୂର୍ଣ୍ଣ ଗାନ୍ଧୀବାଦୀ । ବିପ୍ଳବ ବିଷୟରେ ସମସ୍ତେ ଏକମତ । ଗାନ୍ଧୀଜୀଙ୍କ ଅତି ବୁଦ୍ଧିଜୀବୀ ସେକ୍ରେଟରୀ କିଶୋରୀ ଲାଲ ମଶ୍ରୁଓ୍ୱାଲା 'ହରିଜନ' ପତ୍ରିକାରେ ସ୍ପଷ୍ଟ ଲେଖିଦେଲେ ଯେ ବ୍ୟକ୍ତିଗତ ହତ୍ୟା କରାଯିବ ନାହିଁ, ମାତ୍ର ସାମୁହିକ ଜନ ବିପ୍ଳବରେ କେଉଁଠି ହତ୍ୟା ହୋଇଗଲେ କିମ୍ବା ସଂପତ୍ତି ବାଡ଼ି ଜାଳିପୋଡ଼ି ଦିଆଗଲେ ତାକୁ ସଂଗଠିତ ହିଂସା (organised violence) ବୋଲି କୁହାଯାଇ ପାରେନା । ଏହା ଛଡ଼ା ଆମେ ସଂଗ୍ରାମୀମାନେ ଭୁଲିଗଲୁ କିଏ କଅଣ ? ସମସ୍ତେ ଗାନ୍ଧୀଜୀଙ୍କର "କର ବା ମର" ବିପ୍ଳବର ପଥିକ । ନିଜର ବ୍ୟକ୍ତିତ୍ୱକୁ ପାଶୋରି ପକାଇ ଥିଲେ । ସମସ୍ତେ ନିଜ ନିଜ ବାଟରେ କାର୍ଯ୍ୟ କରି ଗଲେ; ପରେ ସଂଯୋଗ ହୋଇ ଯାଇଥିଲୁ ।

ଆର୍. ଆର୍. ଦିବାକର ଏବେ ବି ବଂଚିଛନ୍ତି । ବୋଧହୁଏ ୯୫ରୁ ବେଶି ହେଲା ବୟସ । ସେ ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନର ସଭାପତି ଅଛନ୍ତି । ଏବେ ବି ଗାନ୍ଧୀ ଦର୍ଶନ ସମ୍ବନ୍ଧରେ ଲେଖୁଛନ୍ତି ପ୍ରବନ୍ଧ । ସଭା ସମିତିରେ ଯୋଗ ଦେଉଛନ୍ତି । ସେହି ପରି ସୁଚେତା କ୍ରିପାଲନୀ । ସେ ପରେ ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ ହୋଇ ଥିଲେ । ଉଷା ମେହଟା ଜଣେ ନୀରବ ଗାନ୍ଧୀଧର୍ମୀ ଥିଲେ । ସେ ଆଜାଦ ରେଡ଼ିଓ ସ୍ଥାପନା କରିଥିଲେ । ଡକ୍ଟର ଲୋହିଆଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହା ଚାଲୁଥିଲା । ଏକା ଓ୍ୱେଭଲେଙ୍ଗ୍‌ଥ୍‌ରେ ଏହା ପରିଚାଳନା କରଯାଉ ଥିବାରୁ ବ୍ରିଟିଶ ରେଡ଼ିଓରେ ଗୋଳମାଳ ଲାଗୁଥିଲା । ଶ୍ରୀମତୀ ଉଷା ମେହେଟା ଏବେ ବି ଜୀବିତ ଅଛନ୍ତି ଏବଂ ବମ୍ବେର ବିରାଟ ମନିବେନ୍ ଭବନର ସେ ପରିଚାଳନା ଦାୟିତ୍ୱରେ ଅଛନ୍ତି । ଏହା ବମ୍ବେରେ ଥିଲା ଗାନ୍ଧୀଜୀଙ୍କର ରହଣୀ ସ୍ଥଳ ଏବଂ ଏବେ ଏକ ବିରାଟ ରଚନାତ୍ମକ କର୍ମଶାଳା ହୋଇ ରହିଛି । ଜୟପ୍ରକାଶ ନାରାୟଣ ତ ହାଜାରିବାଗ ଜେଲରୁ ପଳାଇ ଆସି ଏ ସଂଗଠନକୁ ଆହୁରି ତୀକ୍ଷ୍ଣ କରି-ଦେଲେ । ସେ ଓ ଡକ୍ଟର ଲୋହିଆ ନେପାଳରୁ ନେପଥ୍ୟ ବିପ୍ଳବ ଆରମ୍ଭ କରି ଦେଇଥିଲେ । ଅରୁଣା ଆସଫ ଅଲୀ ଓ ଅଚ୍ୟୁତ ପଟବର୍ଦ୍ଧନ ବିଭିନ୍ନ କେନ୍ଦ୍ର ସହ ଯୋଗାଯୋଗ ରଖୁଥିଲେ । କଲିକତା କେନ୍ଦ୍ର ଦାୟିତ୍ୱରେ ରହିଥିଲେ ଅନ୍ନଦା ପ୍ରସାଦ ଚୌଧୁରୀ । ଜଣେ ସଚ୍ଚା ଗାନ୍ଧୀବାଦୀ ଏବଂ କଲିକତାର ଅଭୟ ଆଶ୍ରମ ଖଦୀ ଭଣ୍ଡାର ଗୃହରେ ଥାଆନ୍ତି । ଅରୁଣା ଆସଫ ଅଲୀଙ୍କର ପ୍ରତ୍ୟକ୍ଷ ଯୋଗାଯୋଗ

ଏଥିରେ ଥାଏ । ଏହି କେନ୍ଦ୍ର ଜରିଆରେ ହିଁ ଆମେ ଅରୁଣା ଆସଫ ଅଲୀଙ୍କ ସହ ସଂପର୍କ ରଖୁଥାଉ ।

ଆମର କେହି ଯିବାର ଥିଲେ ସେ ହାତରେ ଏକ ଖଦଡ ସୂତାହାର ନେଇଯିବ ତହିଁରେ ୩ ଯାଗାରେ ସ୍ୟାହିର ଦାଗ ଥିବ । ସେ କଲେଜ ସ୍କୋୟାରରେ ଅଭୟ ଆଶ୍ରମ ଖଦୀ ଦୋକାନରେ ଲୁଗା କିଣିବା ନାମରେ ଏହି ସୂତା ହାରଟିର ସ୍ୟାହି ଦାଗକୁ ଦେଖାଇବ । ସେମାନେ ବୁଝିବେ ଏ ବିପ୍ଲବୀ ସଂଗଠନର ଲୋକ । ଲୋକ ପ୍ରସ୍ତୁତ ଥାଆନ୍ତି । ସେମାନେ ଚୁପ୍‌କିନା ଯାଙ୍କୁ ଡାକି ନେଇ ଯିବେ । ପୁଲିସର ସନ୍ଦେହ କରିବାର ଅବକାଶ ନ ଥାଏ । କେନ୍ଦ୍ର ଅଫିସକୁ ନେଇ ଯାଇ ନାମ ଓ ସଂକେତ ଦେଖାଇଲେ, ଯାହା ମନ୍ତ୍ରଣା ଦେବା କଥା ତାହା ମିଳି ଯାଏ । ଆମ ପକ୍ଷରେ କଲିକତା କେନ୍ଦ୍ର ଥିଲା ସୁବିଧାଜନକ । ତାରି ଜରିଆରେ ଆମେ ଭାରତର ଗୁପ୍ତ ବୈପ୍ଳବିକ ସଂଗଠନ ସହ ସଂପୃକ୍ତ ହୋଇ ପାରିଥିଲୁ ।

卐

[ ୩୪ ]

# ଓଡ଼ିଶାରେ ସଂଗଠନର ଢାଞ୍ଚା

ଅଣ୍ଡର ଗ୍ରାଉଣ୍ଡ ସଂଗଠନର କିଛି ଧାରଣା ମୋର ନ ଥାଏ କି କାହାରିକୁ ପଚାରି ବୁଝିବାର ସୁଯୋଗ ବି ନ ଥାଏ । ଅନ୍ୟ ଦେଶର ବୈପ୍ଳବିକ ଇତିହାସ ଓ ବଙ୍ଗଳାରେ ଚାଲିଥିବା ଆତଙ୍କବାଦୀ ସଂଗଠନରୁ ଗୁପ୍ତ ସଂଗଠନ କିପରି କରାଯାଏ, ସେ ସମ୍ବନ୍ଧରେ କିଂଚିତ ଧାରଣା ଯାହା ଥାଏ । ମାତ୍ର ଗାନ୍ଧୀଜୀ ଯେ କହିଦେଲେ ତୁମେ ତୁମର ନେତା ଏହା ଏକ ପରମ ଆତ୍ମବିଶ୍ୱାସ ଜାତ କରିଥିଲା । ଦ୍ୱିତୀୟରେ କର, ନଚେତ୍ ମର ଏହା ଥିଲା ଆଉ ଏକ ମନର ଉତ୍ତେଜନା । ମରିବା ଲାଗି ମନକୁ ସ୍ଥିର କରି ନେଲେ, ଯେ କୌଣସି ପଦକ୍ଷେପ ନେବା ବେଳେ ଆଉ ଭାବିବାର କିଛି ନାହିଁ । ଉପରୁ କିଛି ନିର୍ଦ୍ଦେଶ ନ ଥାଏ କିମ୍ବା ସଂଗଠନର ଡାଞ୍ଚା ସମ୍ବନ୍ଧରେ କିଛି ନିର୍ଦ୍ଦେଶ ଦେଇ ନ ଥାନ୍ତି । ଆମେ ସବୁ ବମ୍ବେରେ କେତେ ଜଣ ବସି ଯେ ମନ୍ତ୍ରଣା କଲୁ, ସେତେବେଳେ ଫୁରସତ୍ ନ ଥିଲା, ବିଶଦ ଭାବରେ ଚିକିନିଖି ଆଲୋଚନା ଲାଗି । କେବଳ କେତେଜଣଙ୍କୁ କୁହାଗଲା ତୁମେ ନିଜ ନିଜ ପ୍ରଦେଶରେ ଗିରଫ ନ ହୋଇ ବିପ୍ଳବର ସଂଗଠନ କରିବାର ଚେଷ୍ଟା କରିବ । ପାଖରେ ନ ଥାଏ ଧନ ବା ରହିବାର ବ୍ୟବସ୍ଥା । କିନ୍ତୁ ନିଶ୍ଚୟ କିଛି କରିବି— ଏ ଦୃଢ଼ ସଂକଳ୍ପ ଘେନି କଟକରେ ଆସି ପହଂଚିଲି ।

ପ୍ରଥମେ ୩ଟି ଦିନ ରହିଗଲି ଆମ ଗାଁର ଉଦୟନାଥ ରଥଙ୍କ ରଜାବଗିଚା ଘରେ । ସେତେବେଳକୁ ରଜାବଗିଚା ଗଛ ବଣରେ ଭରା— ଚାରିଆଡେ ଜଙ୍ଗଲ । ଦିନ ବେଳା ବି ସେ ବାଟେ ଲୋକ ଯିବାକୁ ଭୟ କରୁଥିଲେ । ତିନି ଦିନ ରହିବା

ପରେ ମୁଁ ମୋର ଜଣେ ମାଉସୀ ପୁଅ ବସାକୁ ଗ୍ଲଲିଗଲି । ତାଙ୍କ ଘରକୁ କେତେକ ଲୋକଙ୍କୁ ଡକାଇଲି । ସେଥିରୁ ଜଣେ ଥିଲେ ଅନୀଲ କୁମାର ଘୋଷ । ଆଉ କାହାକୁ ଖବର ଦେବାକୁ ହେବ, ତାଙ୍କୁ କହିଲି । କେବଳ ବିଶ୍ୱାସୀ ଲୋକଙ୍କ ସହ ପରାମର୍ଶ ନ କଲେ ସବୁ ଭୁଷୁଡ଼ି ପଡ଼ିବ । ମୋ ସଙ୍ଗରେ ମାଳତୀ ଦେବୀ ଆସିଥିଲେ । ସେ ଗିରଫ ହୋଇଗଲେ; ତେଣୁ ପୁଲିସ ମନରେ ହୁଏତ ସନ୍ଦେହ ଥାଇପାରେ ଯେ ମୁଁ ବି ଆସିଯାଇ ଥିବି । ରହି ପାରିବାର ଗୋଟାଏ ସୁବିଧା ହେଲା । କିଛି ଅଣ୍ଡର ଗ୍ରାଉଣ୍ଡ ସଂଗଠନ ହେବ, ଏପରି ଧାରଣା ପୁଲିସ ବା ଆଉ କାହାରି ମନରେ ପଶି ନ ଥିଲା । ମୁଁ ଆଉ କିଛି ଆଲୋଚନା କରି ନ ଥିଲି । କେବଳ ଏକ ନିରାପଦ ସ୍ଥାନ ଦରକାର ରହିବା ଲାଗି ।

ହିନ୍ଦୀ ରାଷ୍ଟ୍ରଭାଷା ଅଫିସ ଗୋଟିଏ ସ୍ଥାନ ଥାଏ ଯେଉଁଠି ଏସବୁ କଥା ବିଗ୍ଲର ହୋଇ ପାରେ । ସେଇଠି ପ୍ରକୃତରେ ବନମାଳୀ ମିଶ୍ର ପ୍ରଭୃତିଙ୍କ ସଙ୍ଗେ ବିଗ୍ଲର ବେଳେ ରାଧାନାଥ ପଣ୍ଡିତ ପହଂଚି ଥିଲେ । ସେ ମୋର ପାଠପଢ଼ା ସାଥି । ଭାରି ସାହସୀ– କନ୍‌ଭେଣ୍ଟ ସ୍କୁଲରେ ଗ୍ଲକିରୀ କରୁ ଥାଆନ୍ତି ଏବଂ ବହୁ ଉଚ୍ଚ ଅଫିସରଙ୍କ ଘରେ ଟିଉସନ କରନ୍ତି । ସେ ଆଗୁଆ ଅଲିସା ବଜାର ଗଳିରେ ନନ୍ଦି ସାହୁଙ୍କର ଗୋଟିଏ ଘରେ ମୋର ରହିବାର ସ୍ଥିର କରି ଦେଲେ । ସେଥିରେ ସହାୟକ ହେଲେ ମଥୁରାନନ୍ଦ ସାହୁ ଓ ବିଶ୍ୱନାଥ ପଣ୍ଡିତ । ରାଧାନାଥ ବାବୁଙ୍କର ବିଶ୍ୱନାଥ ହେଲେ ସାନ ଭାଇ; ତାଙ୍କର ମଥୁରାନନ୍ଦଙ୍କ ସହ ଅଗାଧ ବନ୍ଧୁତ୍ୱ ଥାଏ । ପ୍ରଥମେ ସାଇ ମଝିରେ ତାଙ୍କର ଗୋଟିଏ ଭଡାଘର ଖାଲି ହୋଇଥାଏ । ମୁଁ ଅନ୍ଧାରୁଆ ରାତିରେ ସାଇକଲ ପଛରେ ବସିଲି ଏବଂ ରାଧାନାଥ ମତେ ନେଇଗଲେ ସେଇଠିକି । ଅଲିସା ବଜାର ହିଁ ଆମର ପ୍ରଧାନ ରହଣି ସ୍ଥଳ ହେଲା । ସାଇ ମଝିରେ ଥିବା ବାସସ୍ଥାନ ନିରାପଦ ହେବ ନାହିଁ ଭାବି ପୁଣି ସେ ଗଳି କଡରେ ଥିବା ଘରକୁ ନିଆଗଲା । ଏଠି ମଜାର କଥା ହେଉଛି ବିଶ୍ୱନାଥ ଓ ମଥୁରା ନନ୍ଦି ସାହୁଙ୍କ ଠାରୁ ଏକଥା ଲୁଗ୍ଲଇ ରଖିଥିଲେ । ଭଡାବାଲା ମିଳିଛି କହି ରଖାଇ ଦେଲେ । ସେ ସାହିଘରେ ଓ ପରେ କିପରି ସବୁ କାର୍ଯ୍ୟ ହେଉଥିଲା ଏବଂ ମୁଁ କିପରି ସେଠାରୁ ଗିରଫ ହେଲି ସେ ସବୁ କଥା "ଅଗଷ୍ଟ ବିପ୍ଲବ" ପୁସ୍ତକରେ ବର୍ଣ୍ଣିତ ରହିଛି ।

ରୁଚି ରହିବାର ଅସଲ ଉଦ୍ଦେଶ୍ୟ ହେଲା କିପରି ବିପ୍ଳବକୁ ସଂଗଠିତ ଭାବରେ ଓଡ଼ିଶାରେ କରାଇବା । ବିପ୍ଳବ ବୋଇଲେ କି କି କାମ ଆମେ କରୁଥିଲୁ, ସେ ସଂପର୍କରେ ଆମ ନାଁରେ ଯେ ଓଡ଼ିଶା ଷଡଯନ୍ତ୍ର ମକଦ୍ଦମା ହୋଇଥିଲା, ସେଥିରୁ କିଛି ମୁଁ ପରବର୍ତ୍ତି ଅଧ୍ୟାୟରେ ଉଦ୍ଧାର କରିବି ।

ଏଥି ନିମନ୍ତେ ନିମ୍ନ ଢଙ୍ଗରେ ସଂଗଠନ ସ୍ଥିର କଲି । କେନ୍ଦ୍ର ଅଫିସ ଭାର୍ଯରେ ମୁଁ ରହିଲି । ମୋର ନାମକରଣ ହେଲା ସି. ଓ. । ଯେଉଁମାନେ ଚିଠି ଲେଖିବେ ବା ମୋ ସଂପର୍କରେ କିଛି କଥା ବାର୍ତ୍ତା କରିବେ ସେମାନେ ସି. ଓ. ବୋଲି ସର୍ବଦା କହିବେ । ଯାହାକୁ କହନ୍ତି କୋଡ୍ ନାମ, ତାହା ଜଣାଗଲା ଏବଂ ଯେଉଁ ସବୁ ସ୍ଥାନୀୟ ଅଫିସ ହେବ ତାକୁ କୁହାଯିବ ବି. ଓ. । ଏହି କୋଡ୍ ନାମ ବେଶ୍ ଚାଲୁ ହୋଇଗଲା । ତେଣୁ ନିର୍ଦ୍ଦେଶ ଦେବାରେ ଉତ୍ତର ପାଇବାରେ କିଛି ଅସୁବିଧା ହେଲା ନାହିଁ ।

କେନ୍ଦ୍ର ଅଫିସରେ ବୁଲେଟିନ୍ ପ୍ରକାଶର ବ୍ୟବସ୍ଥା ରହିବ । ସେଇଠୁ ଚାରି ଆଡ଼କୁ ବଣ୍ଟା ହେବ । ଏ କାମରେ ବିଶେଷ ଭାବରେ ନିଯୁକ୍ତ ରହିଲେ ବିଶ୍ୱନାଥ ପଣ୍ଡିତ ଓ ମଥୁରା ନନ୍ଦ ସାହୁ । ସେମାନେ ସାନ ପିଲା । ମଥୁରାଙ୍କର ନିଜ ଘର । ଦିନବେଳା ଯେତେ ଥର ଯିବା ଆସିବା କରିବାରେ ସନ୍ଦେହ ହେବ ନାହିଁ । ମୁଁ ବୁଲେଟିନ୍‌ଟି ଲେଖି ଦିଏ; ପଣ୍ଡିତ ବନମାଳୀ ମିଶ୍ର ତାଙ୍କର ସୁନ୍ଦର ଅକ୍ଷରରେ ଲିଥୋ ପେପରରେ ଲେଖି ଦେଇ ଚାଲି ଯାଆନ୍ତି ଏବଂ ବିଶ୍ୱନାଥ ମଥୁରା ତାହା ଛପାନ୍ତି । ଯେଉଁମାନେ ବଣ୍ଟନ ଭାର ନିଅନ୍ତି, ତାଙ୍କର ଯାଙ୍କ ସହ ସଂପର୍କ ନ ଥାଏ । ସେ ଯାହାର କାମ କରି ଯାଆନ୍ତି । ବଣ୍ଟନର ମୁଖ୍ୟ ଦାୟିତ୍ୱ ନେଇ ଥାଆନ୍ତି ଶ୍ରୀ ଶଚ୍ଚିଦାନନ୍ଦ ମିଶ୍ର ।ସେ ଏକାଡେମୀ ସ୍କୁଲରେ ଶିକ୍ଷକତା କରୁ-ଥାଆନ୍ତି । ମୋର ଆତ୍ମୀୟ; ତେଣୁ ତାଙ୍କୁ ଏ କାମ ଦିଆ ଯାଇଥିଲା । ସେ ସ୍କୁଲ ଛାତ୍ର ଅନ୍ୟମାନଙ୍କ ଜରିଆରେ ଏହାର ପ୍ରଚାର ବ୍ୟବସ୍ଥା କରନ୍ତି । ସେ ଏପରି ନୂଆ ନୂଆ ଲୋକଙ୍କୁ ବାହାର କରନ୍ତି ଯେ ବର୍ତ୍ତମାନ ଅରବିନ୍ଦ ଆଶ୍ରମର ପ୍ରସିଦ୍ଧ ପ୍ରପତ୍ତି ବି ଆସି ଆମ ଗୁପ୍ତ ସଂଗଠନ ସହ ସଂପୃକ୍ତ ହୋଇଗଲେ । ଯୋଗାଯୋଗ ଓ ସରକାରୀ ମହଲ ଖବର ସଂଗ୍ରହର ଦାୟିତ୍ୱ ରହିଥାଏ ରାଧାନାଥ ପଣ୍ଡିତଙ୍କ ପାଖରେ । ବିଭିନ୍ନ କେନ୍ଦ୍ର ଗୁଡ଼ିକ ଯୋଗାଯୋଗ ଓ ଶାଖା ଅଫିସମାନ ଖୋଲିବାରେ

ବିଶେଷ ଭବରେ କାର୍ଯ୍ୟ କରିଥିଲେ ଗୌର ଚନ୍ଦ୍ର ଦାସ, ପ୍ୟାରି ମୋହନ ଦାସ, ନିଶାମଣି ଖୁଣ୍ଟିଆ, ନରସିଂହ ଚରଣ ମହାନ୍ତି । ଛିଲ ବା ଶାଖା ଅଫିସମାନ ଖୋଲ-ଗଲ ଏବଂ ସେଥିଲଗି ଲିଥୋ ମେସିନ୍ ସବୁ ଯୋଗାଡ ହେଲ । ଏଗୁଡ଼ିକ ସେମାନେ ନିଜ ଉଦ୍ୟମରେ କରିଗଲେ । ମୋଟ କଥା ହେଲ କେନ୍ଦ୍ର ଅଫିସର ଏହି ସବୁ ବିଭିନ୍ନ ବିଭଗ ପୁଲିସ ଅଗୋଚରରେ ଗ୍ଲୁ ରହିବ; ବିପ୍ଳବ ବାର୍ତ୍ତା ଗ୍ରଡିଆଡେ ପହଂଚିବ । ଏହା ସଫଳତା ସହକାରେ ସଂପନ୍ନ ହୋଇଥିଲ । ଏଥିରେ ଆଉ ଏକ ଉଲ୍ଲେଖନୀୟ କାର୍ଯ୍ୟର ଦାୟିତ୍ୱ ନେଇଥିଲେ ବାଙ୍କ ବିହାରୀ ଦାସ । ସେ ଚତୁର୍ଥ ବାର୍ଷିକ ଶ୍ରେଣୀର ଛାତ୍ର । କାହାରି କେବେ ସନ୍ଦେହ କରିବାର ନ ଥାଏ । ସେ କଲେଜ କ୍ଲାସରେ ଯୋଗ ଦେଇ ଖଗବେଳେ ଚୁପ୍ ଗ୍ରପ ଆସି ଚିଠି ଲେଖା ଓ ଅନ୍ୟ ଆବଶ୍ୟକୀୟ କାର୍ଯ୍ୟ କରି ଗ୍ଲି ଯାଉଥିଲେ ।

卐

[ ୩୫ ]

## ଗୋପନୀୟ ସଂଗଠନର ହାତ, ଆଖି ଓ କାନ

କଟକ ସହର ଓ ମଫସଲ ଅଞ୍ଚଳରେ ବିଭିନ୍ନ ସ୍ଥାନରେ ଅତି ଉତ୍ସାହରେ ଟୋକାମାନେ ବାହାରି ପଡ଼ିଲେ । ବଡ ଠିକଣା ଖବରେ ସବୁ ଚାଲିଥିଲା । ଗୋଟାଏ ଟୋପି ଫ୍ୟାକ୍ଟରୀରେ ନିଆଁ ଲଗାଇ ଦିଆଗଲା । ବୁଲେଟିନ୍ ବାଣ୍ଟିବା ଛଡା ଆଉ କୌଣସି ପ୍ରତ୍ୟକ୍ଷ କାମ କଟକ ସହରରେ କରିବାର ବ୍ୟବସ୍ଥା କରାଯାଇ ନ ଥିଲା । ମୁଁ ଏଠାରେ ରହୁଛି ଓ ମୁଖ୍ୟ କର୍ମସ୍ଥଳୀ କରା ଯାଉଛି, ତେଣୁ ଏଠାରେ ଅନ୍ୟ କାମ ହେଲେ ପୁଲିସର ନଜର ବେଶି ପଡ଼ିବ । ଲୋକେ ଯେ ମୋ ପାଖକୁ ଯିବା ଆସିବା କରୁଛନ୍ତି ସେ ବି ଧରା ପଡ଼ିଯିବେ । ମୁଁ କଟକ ସହରରେ ନାହିଁ ବୋଲି ନାନା ପ୍ରକାର ରୀତିରେ ପୁଲିସକୁ ବାଉଳାରେ ପକାଉଥିଲି, ମୋର ନାନା ପ୍ରଚାରକ ବାହାରି ଗୁଜବ ପ୍ରଚାର କରୁଥିଲେ । ମୋ ନିର୍ଦ୍ଦେଶରେ ନୁହେଁ, ଆପଣା ଛାଏଁ । ଯେମିତି କୁଜଙ୍ଗରେ ମୁଁ କେତେକ ଗାଁରେ ଉଡ଼ିଘରେ ଲୁଚିଛି । ସେଇଠି ଥିଲାବେଳେ ଏରସମା ଥାନା ପୋଡା ଆଦି ଆୟୋଜନ କରିଥିଲି । ଦୋଳମୁଣ୍ଡେଇରେ ଶେଠ ଶେଓଚାନ୍ଦଙ୍କ ଘରେ କିଛିଦିନ ଆଶ୍ରା ନେଇଥିଲି । କଟକ ସହରରେ କେତୋଟି ଯାଗା ମୋର ଅସ୍ଥାୟୀ ଲୁଚାଯାଗା ହୋଇଥିଲା । ଯଥା ଅନୀଲ ଘୋଷଙ୍କ ଘର, ପ୍ରାଣନାଥ ମିଶ୍ରଙ୍କ ଘର, ଉଦୟ ନାଥ ରଥଙ୍କ ଘର ଓ ମୋର ଗୋଟିଏ ମାଉସୀ ପୁଅର ବସା । ଭିନ୍ନ ଭିନ୍ନ ବେଶରେ ପୁଲିସ ମନରୁ କୌଣସି ନିର୍ଦ୍ଦିଷ୍ଟ ଯାଗାରେ ରହୁ ଥିବାର ସନ୍ଦେହ ଦୂର କରିବା ନିମନ୍ତେ ଏହି ପନ୍ଥା ଧରୁଥିଲି । ଦାଢୀ ରଖୁଛି ବୋଲି ପ୍ରଚାର ହେବାରୁ ଏବଂ ପୁଲିସ ରିଜ୍‌ସା ସବୁ ଅଟକାଇ ଦାଢ଼ୀବାଲା ଖୋଜିବାକୁ ଲାଗିଲାରୁ ନିଶ ରଖି ମାରୁଆଡ଼ି ବେଶ ହେଲି ।

ସ୍ୱରିତରି ଗଲେ ମାଲୁଅଛି ବଢ଼ାଟୋପି ରଖି ଛତା ଧରି ଗଲେ । ବର୍ଷାଦିନ, ଅନ୍ଧାର, ଝିପ୍ ଝିପ୍ ମେଘ ପଡୁଥାଏ । ତେଣୁ ବିଚ୍ ରାସ୍ତାରେ ଗଲେ ବି ଧରିବା ସମ୍ଭବ ନୁହେଁ । କିନ୍ତୁ ଏତେବେଳେ ଚିହ୍ନା ଲୋକ ଦେଖି ବଡ଼ ସଂଯମ ରଖିବାକୁ ହୁଏ । ମନ ହୁଏ ତାଙ୍କ ସହ କଥାବାର୍ତ୍ତା କରିବାକୁ । ଥରେ ଏମିତି ଅବସ୍ଥାରେ ରାସ୍ତା ଉପରେ ରବୀ ଘୋଷଙ୍କ ଭାଇ ଓକିଲ ଚନ୍ଦ୍ରକାନ୍ତ ଘୋଷଙ୍କ ସହ ଦେଖା ହେଲା । ମୁଁ ଇ ତାଙ୍କୁ ଧରି ପକାଇଲି । ସେ ଆଗ ମୋ ମୁହଁରେ ହାତ ମାରି ଦେଲେ । ଦାଢ଼ୀ ଜାଣିବା ପାଇଁ । ହୟତ ହୋଇଥାଏ ମୁଁ ମୁସଲମାନ ବେଶ ହୋଇ ସେହିପରି ଦାଢ଼ୀ ବାଗେଇଛି । ଚନ୍ଦ୍ରକାନ୍ତ ଭାରି ବୁଦ୍ଧିଆର ଲୋକ । ମୁଁ ତାଙ୍କୁ କେବଳ ରବୀଦା କେମିତି ଅଛି ବୋଲି ପଚାରି ଥିଲି । ସେ ମୋ ସହିତ ଭେଟ ହୋଇଥିବା ବିଷୟ ବେଶ୍ ପ୍ରଚାର କରିଦେଲେ ଏବଂ କିଛି ଟଙ୍କା ସଂଗ୍ରହ କରି ପରେ ପଠାଇ ଦେଲେ । ଶେଓ ସ୍ୱଦଙ୍କ ଗୁରୁ ଜଣେ ହିମାଳୟ ବାବା । ମୋ ଥିଲା ବେଳେ ତାଙ୍କ ଘରେ ଆଆନ୍ତି । ଶେଓ ସ୍ୱଦ ତାଙ୍କୁ ମୋ କଥା କହିଲେ । ସେ କହିଲେ କିଛି ପରୁଆ ନାହିଁ । ତାଙ୍କ ପାଖକୁ ବହୁ ବଡ ବଡ଼ ଅଫିସର ଓ ପୁଲିସ ଆସନ୍ତି । ସେ ତାଙ୍କ ଆଗରେ ଅସମ୍ଭବ ବର୍ଣ୍ଣନା କରନ୍ତି । ଅମୁକ ଟ୍ରେନରେ ସିଗାରେଟ ପୁଲିସ ଅଫିସର ପାଖରୁ ମାଗି ଖାଇଲି ଇତ୍ୟାଦି । ମୁଁ ବିଭିନ୍ନ ଯାଗାରୁ ଚିଠି ପତ୍ର ପୋଷ୍ଟ କରାଇ ଭୁଆଁ ବୁଲାଇ ଥାଏ । ମୋଟ କଥା କଟକରେ ନାହିଁ ବୋଲି ଧାରଣା ଜନ୍ମାଇବା ନିମନ୍ତେ । ଚିଠି ଏମିତିକା କଂଗ୍ରେସ ଲୋକଙ୍କ ନାମରେ ପଠାଏ; ଯେଉଁମାନେ ଜେଲ ଯିବାକୁ ପ୍ରସ୍ତୁତ ନ ଥାଆନ୍ତି; ମାତ୍ର ପୁଲିସ ତାଙ୍କ ଉପରେ ଦୃଷ୍ଟି ରଖିଥାଏ । ଚିଠି ପଢନ୍ତି; ନଚେତ୍ ଡରୁଆ କଂଗ୍ରେସ ଲୋକେ ନିଜକୁ ଭଲେଇ ହେବା ନିମନ୍ତେ ତାଙ୍କୁ ଦେଖାଇ କହି ଦିଅନ୍ତି— ସେ ଆସିଲେ ଆମେ ଘରେ ପୁରାଇ ଦେବୁ ନାହିଁ । ଜୟପୁରକୁ ମୋ ହାତଲେଖା ଚିଠି ପଠାଗଲା ଯେ ମୁଁ ୨।୪ ଦିନ ମାଚିଲି, ପାପଡାହାଣ୍ଡି ଅଞ୍ଚଳ ବୁଲିବାକୁ ଯିବି । ମହା ହାଲେଇ ପଡ଼ିଗଲା । ଏହି କାମ ବେଶ ସଫଳତା ସହକାରେ ହୋଇ ପାରୁଥିଲା ସାଥିମାନେ ସେପରି ବିଶ୍ୱସ୍ତ ଥିବାରୁ । ପୋଷ୍ଟ କାର୍ଡରେ ବି କଣ ଲେଖା ହୋଇଥାଏ ପଢନ୍ତି ନାହିଁ । ଏଇଥି ଯୋଗୁଁ ଜଣେ ମସ୍ତବଡ଼ ଭୁଲ କରିଦେଲା । ଖୋର୍ଦ୍ଧାରେ ତ ତାରିଖ ପକାଇ ଏକ କାର୍ଡ ଲେଖି ଦେଲି, ଢଟଣୀରେ ପକାଇବା ନିମନ୍ତେ । ସେ କିନ୍ତୁ ସେଇଟିକି ନ ପଢି କଟକ ଚାନ୍ଦିନୀଚୌକ ପୋଷ୍ଟ ଅଫିସରେ ପକାଇ ଦେଲା । ଚିଠିଟି ପଢି ପୁଲିସଙ୍କ ଆଖି ଖୋଲିଗଲା । ସେମାନେ କଟକକୁ ଘୁରିଆଡୁ

ଲଗି ବସିଲେ । ମତେ କିନ୍ତୁ ଏ କଥାଟି ଜଣା ନ ଥିଲା । ଆମ ମକଦ୍ଦମା ବିଗ୍ରର ବେଳେ ଯେଉଁ ସବୁ ସାକ୍ଷ୍ୟ ପ୍ରମାଣ ସଂଗୃହିତ ହୋଇ ଦାଖଲ ହୋଇଥିଲା ସେଥିରେ ଥିଲା ଏ ଚିଠି । ତା ଉପରେ ସ୍ପେସାଲ ବ୍ରାଞ୍ଚ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ବଡ ଭର୍ତ୍ସନା କରି ଅଫିସରଙ୍କୁ ଲେଖିଥିଲେ । ମୋ ନିଜର ସବୁଠାରୁ ବଡ ବିପଦ ଘନେଇ ଆସିଲା ଯେତେବେଳେ ମୋ ବାଁ ଡାହାଣ ହାତ ପ୍ରାୟ କଟା ହୋଇଯିବା ଅବସ୍ଥା ଘଟିଲା । ଶଚି ଓ ବାଙ୍କ ସେ ପର୍ଯ୍ୟନ୍ତ ଚିହ୍ନା ପଡ଼ି ନ ଥାନ୍ତି । ଦୁଇ ଜଣଙ୍କୁ ସନ୍ଦେହ କରିବାର କିଛି କାରଣ ନ ଥିଲା । ଶଚି ତାଙ୍କ କକେଇ ପ୍ରାଣନାଥ ମିଶ୍ରଙ୍କ ଘରେ ରହୁଥିଲେ । ସ୍କୁଲ ଶିକ୍ଷକ । ଟିଉସନ କରନ୍ତି— ଆଉ କିଛି କାମ ଧନ୍ଦା ସହ ସଂପୃକ୍ତ ନ ଥାନ୍ତି । କିନ୍ତୁ ମୋର ଥିଲେ ପ୍ରଧାନ ପ୍ରଗ୍ରରକ । ବୁଲେଟିନ୍ ନିଜେ ଯାଇ ଅଲିସା ବଜାରରୁ ନେଇ ଆସୁଥିଲେ । ତାଙ୍କ ଜରିଆରେ ମୁଁ ଚିଠି ଲେଖି ଚାନ୍ଦା ଅଣାଉଥିଲି । ପ୍ରାଣନାଥ ବାବୁଙ୍କ ଘରେ ହିଁ ଲୁଚି, କାଠଯୋଡ଼ି ବନ୍ଧରେ ଚାଲି ଚାଲି ଆସି ମତେ ଆଉ ଏକ ରାଜନୀତିକ ଫେରର ବିହାରର ରାମ ନନ୍ଦନ ମିଶ୍ର ଭେଟି ଥିଲେ । ସେ ପୂର୍ବ ଭାରତର ଅଣ୍ଡର ଗ୍ରାଉଣ୍ଡ ସଂଗଠନ ଚାର୍ଜରେ ଥିଲେ । ଦେଖାଟା ବଡ ରୋମାଞ୍ଚକାରୀ । ତାଙ୍କ ସହିତ ବସି ମନ୍ତ୍ରଣା ହେଲା— ବର୍ମା ଆଦି ଦେଶକୁ ବ୍ରିଟିଶ ସୈନ୍ୟ ପଠା ଯାଉଛି ଆମ ଓଡ଼ିଶା ବାଟେ ଯାଉଥିବା ଟ୍ରେନ ଗୁଡ଼ିକରେ । ତାକୁ ଏଠାରେ ଓଲଟାଇ ଦେବାକୁ ହେବ । ଗହନ କାମ, ସାଘାତିକ ମଧ୍ୟ । କିନ୍ତୁ ଆମେ ତ ମରିବା ଲାଗି ତିଆର; ଅସାଧ୍ୟ କଅଣ । କଟକର କୌଣସି ସାଥି ସହ ଏହା ଆଲୋଚନା କରିବାର ନ ଥିଲା । ମୁଁ ବାଲେଶ୍ୱରର ଆମର ଜ୍ୟେଷ୍ଠ ସାଥି ଗୌରଚନ୍ଦ୍ର ଦାସଙ୍କୁ କହିଲି ଓ ଲେଖି ପଠାଇଲି । ସେ ଓ ପିଆରୀ ମୋହନ ଦାସ ଏକ ଯୋଜନା କରିଥିଲେ ଟ୍ରେନ ଓଲଟାଇବା ନିମନ୍ତେ । ମାତ୍ର ଘଟଣା ଘଟିବା ପୂର୍ବରୁ ଗିରଫ ହୋଇଗଲେ । ମକଦ୍ଦମାର କାଗଜ ପତ୍ରରେ ଏପରି ଏକ ଯୋଜନା ହୋଇ ଥିବାର ପ୍ରମାଣ ରହି ଥିଲା । ଏହିଭଳି ବିପଦ ଭିତରେ ଶଚି କାମ କରୁଥିଲେ । ହଠାତ୍ ପୁଲିସ ରାତି ପାହାନ୍ତିଆ ତାଙ୍କ ବାସସ୍ଥଳୀ ଘେରାଉ କଲେ । ମୋ ହାତ ଲେଖା ଚିଠି ଖଣ୍ଡିକ ଚିରି ବାହାରକୁ ଫୋପାଡ଼ିଲା ବେଳକୁ ପୁଲିସ ଧରି ପକାଇଲେ । ମୋ ହାତଲେଖା ପାଇ ତାଙ୍କ ମନରେ ଆଉ ସନ୍ଦେହ ରହିଲା ନାହିଁ ଯେ ମୁଁ କଟକରେ ରହି ସବୁ ତମାସା କରୁଛି । ଶଚିଙ୍କୁ ଗିରଫ କରିବାରୁ ମୋର ପ୍ରଚାର ଯନ୍ତ୍ର ପ୍ରାୟ ଅଚଳ ଅବସ୍ଥାକୁ ଆସିଗଲା । ସେ ଯେଉଁମାନଙ୍କ ଜରିଆରେ ବୁଲେଟିନ୍ ବଣ୍ଟନ ଆଦି

କରୁଥିଲେ, ସେମାନଙ୍କର ଆଉ କାହା ସହିତ ସଂପର୍କ ନ ଥିଲା କିମ୍ବା ମୋ ଗୁପ୍ତ ସ୍ଥାନ ଜଣା ନ ଥିଲା । ମୁଁ ଗୋଟାଏ ନୀତି ସ୍ଥିର କରି ଦେଇଥାଏ । କିଏ କଣ କରୁଛି, ପରସ୍ପରକୁ ଜଣା ନ ଥିଲା । ଆସୁଥିଲେ, ନିଜର କାମ କରି ଚାଲି ଯାଉଥିଲେ । ବିଶ୍ୱନାଥ, ବାଙ୍କ, ଶଚି, ନିଶାମଣି ଓ ମଥୁରୀ ଆଦି ଅଞ୍ଚଳର ଗ୍ରାଉଣ୍ଡର ପ୍ରକୃତ ଖୁଣ୍ଟ କହିବାକୁ ହେବ । କିନ୍ତୁ କିଏ କଣ କରୁଛି ଓ କେମିତି ଓ କେଉଁଠି କରୁଛି ଜାଣୁ ନ ଥିଲେ । ପରସ୍ପରରେ ଭେଟ ଖୁବ କମ ହେଉଥିଲା । କେବଳ ବିଶ୍ୱନାଥ ପଣ୍ଡିତ କିଛି କିଛି ଜାଣି ପାରୁଥିଲେ— ନୂଆ ଲୋକ କେହି ବି.ଓ.ଙ୍କ ପାଖରୁ ଆସିଲେ ତାଙ୍କ ଜରିଆରେ ଆସୁଥିଲେ । କିନ୍ତୁ ସାରା ସଂଗଠନର ଟିକିନିଖି ଭିତିରି ଖବର କେବଳ ରାଧାନାଥ ପଣ୍ଡିତ ହିଁ ଜାଣିଥିଲେ । ସେଇଥି ଲାଗି ଅତି ଘାଟିବେଳେ ସେ ସବୁ ପ୍ରକାର ବ୍ୟବସ୍ଥା କରି ଦେବାରେ ସମର୍ଥ ହୁଅନ୍ତି । ସେ ଥିଲେ ଆମ ଗୋପନୀୟ ସଂଗଠନର ଆଖି ଓ କାନ ।

卐

[ ୩୬ ]

## କଟକ ବାହାରକୁ ଯିବା ବ୍ୟବସ୍ଥା

ସବୁ ତ ଗୋପନରେ; ପୁଲିସ ଅଜାଣତରେ । ଡ଼ାକରେ ଅଛୁରି ବିପଦ । କେତେକଙ୍କର ଅକ୍ଷରରେ ପୁଲିସ ସୁପରିଚିତ । ଅକ୍ଷର ଦେଖିବାମାତ୍ରେ ଖୋଲୁଥିଲେ । ଆଉ କେତେକ ନାମ ସନ୍ଦେହରେ ବି ଖୋଲି ପାରୁଥିଲେ । ପୁଲିସଙ୍କୁ ସାତଖୁଣ ମାଫ୍ । ସନ୍ଦେହ କରି ବିନା ଓ୍ୱାରଣ୍ଟରେ ଗିରଫ ବି କରି ପାରୁଥିଲେ । ଖାନତଲାସ କରି କେତେକ ପରିବାରଙ୍କୁ ହଇରାଣ କରୁଥିଲେ । ରାତି ପାହାନ୍ତିଆ ଘର ଘେରାଉ କରି ତଲାସ କରନ୍ତି । ଏକାଥରକେ କଟକ ସହରର ଦୁଇ ଶହ ଯାଗା ଏପରି ହେଲା ବେଳକୁ ଶୁଣିଅଛେ କଥାଟି ପ୍ରଚାର ହୋଇଯାଏ । ମତେ ପୁଣି ଫେରାର (absconder) ଘୋଷଣା କରାଯାଇ ଏକ ବଡ଼ରକମ ପୁରସ୍କାର ଘୋଷଣା କରାଗଲା । ମୋ ଗ୍ରାମ ଓ କଟକ ମାମୁଁଘରେ ନୋଟିସ ମାରି ଦିଆଗଲା— ଅମୁକ ଦିନ ଭିତରେ ଧରା ନଦେଲେ ସଂପତ୍ତି ବାଡ଼ି ଜବତ୍ କରାଯିବ । ଏଥିଯୋଗୁଁ ଆମ ପ୍ରତି ଲୋକଙ୍କର ସହାନୁଭୂତି ବଢ଼ିଲା । କୌତୁହଳ ମଧ୍ୟ । ଏହାଦ୍ୱାରା ଚାନ୍ଦା ସଂଗ୍ରହରେ ସୁବିଧାହେଲା । ଯାହା ପାଖକୁ ଗଲେ ନାସ୍ତିବାଣୀ ଶୁଣିଲେ ନାହିଁ । ଚୁପ୍ ଚାପ୍ ପଚାରନ୍ତି ଦ୍ୱିବେଦୀ ନିରାପଦରେ ତ ! କେବେ କେହି ପଚାରନ୍ତି ନାହିଁ କେଉଁଠି ଅଛନ୍ତି ବୋଲି । ପଚାରିଲେ ବି ଯେ ଚାନ୍ଦା ପାଇଁ ଯାଆନ୍ତି, ସେ କିଛି ଜବାବ ଦେଇପାରନ୍ତେ ନାହିଁ । କାରଣ ତାଙ୍କୁ ବି କିଛି ଜଣା ନ ଥାଏ ।

ଏଇଠି ଆଉ ଏକ କଥା କହିଦିଏଁ । ଆମେ ଉପର ଅଣ୍ଡରଗ୍ରାଉଣ୍ଡ ଅଫିସ ସହ ସଂପର୍କ ରଖିଥାଉ, ବୁଲେଟିନ୍ ଇତ୍ୟାଦି ଓ ଅନ୍ୟ ଖବର ଆଣୁ । ମାତ୍ର

କେବେ କେହି ଟଙ୍କା ଦିଅନ୍ତି ନାହିଁ କିମ୍ବା ସେ ବିଷୟ ଉଲ୍ଲେଖ କରନ୍ତି ନାହିଁ । ଆମକୁ ସ୍ଥାନୀୟ ଉଦ୍ୟମରେ ସବୁ କରିବାକୁ ପଡ଼େ । ସେଇଟା କେଡ଼େ କଷ୍ଟ କାମ ତାହା କହିହେବ ନାହିଁ । ଚନ୍ଦା ପାଇବାର ଆଉ ଗୋଟିଏ ବାଟ ଥାଏ ବୁଲେଟିନ୍ ବିକ୍ରୀ । ପିଲାମାନେ ଗୋପନରେ ଘରଘରକୁ ଯାଇ ଦୁଧ ନେବେ କହି ବୁଲେଟିନ୍ ଦେଇ ଆସନ୍ତି । ସେଥିରୁ ଯେଉଁମାନେ ବୁଝିବାଲୋକ ସେମାନେ ଦାମ୍‌ର ବହୁଗୁଣା ଟଙ୍କାଦିଅନ୍ତି । ରୋନିଓ କାଗଜ, କାଳି ଏବଂ ସାଦା କାଗଜ ଯେତେ ବ୍ୟବହାର କରୁ, ସବୁ ଚନ୍ଦାରେ । କପର୍ଦ୍ଦକ ହୀନ ହୋଇ କେମିତି ଏଡ଼େ ବଡ଼ ବିଦ୍ରୋହୀ ଗୁପ୍ତ ସଂଗଠନ ବଞ୍ଚି ରହିଥିଲା, ଭାବିଲେ ଏବେ ବି ମତେ ଆଶ୍ଚର୍ଯ୍ୟ ଲାଗେ ।

ବାହାରକୁ ସଂବାଦ ପଠାଇବାର ଦୁଇଟି ପନ୍ଥା ଥିଲା । ହାତରେ ଲୋକଦ୍ୱାରା । ଏଇଟା ସହଜ ନ ଥିଲା । କେହି ଯଦି ମେସେଞ୍ଜର ବିଶ୍ୱାସ ଘାତକତା କଲା ! ତେଣୁ ଯେଉଁଠି ସବୁ ଶାଖା ଖୋଲାଗଲା, ସେମାନେ ଲୋକ ପଠାଇ ନେଇ ଯାଉଥିଲେ । ନଚେତ୍ ଆମକୁ ବହି ପାର୍ଶଲ କରି ବିଭିନ୍ନ ସହରର ବହି ଦୋକାନୀଙ୍କ ପାଖକୁ ପଠାଇ ଦିଆ ଯାଉଥିଲା । ବହି ପାର୍ଶଲ କଥା ପୁଲିସ ବୋଧହୁଏ କଳ୍ପନା କରି ପାରୁ ନ ଥିଲେ । ନଚେତ୍ ଏଇଟା ଅକ୍ଲେଶରେ ଧରାପଡ଼ି ଯାଇଥାଆନ୍ତା ।

ଆଉ ଏକ ପନ୍ଥା ଥିଲା ଡାକରେ ପଠାଇବା । ଏଇଟା ବିପଦ ସଂକୁଳ । ଆମେ ପ୍ରାୟ ୮୬ ଲୋକଙ୍କର କଭର ଠିକଣା (cover address) ରଖିଥିଲୁ । ସେ ସଭିଙ୍କର ଠିକଣା ମୋ ପାଖରେ ଥାଏ । ମୋ ପାଖକୁ କେଉଁ କେଉଁ ଠିକଣାରେ ଆସିବ, ତାହାର ନାମ ମୁଁ ପାଖରେ ରଖୁ ନ ଥିଲି । ମତେ ଯେତେବେଳେ ପୁଲିସ ଘେରଉ କରି ଗିରଫ କରିବାକୁ ଆସିଲେ, ସେ ତାଲିକାଟି ମୋର ଭୁଲ ଯୋଗୁଁ ତାଙ୍କର ହସ୍ତଗତ ହେଲା । ମୋର ଗିରଫ ସଙ୍ଗେ ସଙ୍ଗେ ସାରା ପ୍ରଦେଶରୁ ଏପରି ୮୬ ବ୍ୟକ୍ତିଙ୍କୁ ଗିରଫ କରି ନିଆଗଲା । ସେଥିଭିତରେ ପଡ଼ିଗଲେ ଉଦୟ ନାଥ ରଥ, ପ୍ରାଣନାଥ ମିଶ୍ର ଇତ୍ୟାଦି । ସେମାନଙ୍କର କୌଣସି ରାଜନୀତିକ ଇଚ୍ଛା ନ ଥିଲା । ପୁସ୍ତକ ବ୍ୟବସାୟ କରି ଦିନ କାଟୁଥିଲେ । ସରକାର ତାଙ୍କୁ ଆମ କେସ୍‌ର ଆସାମୀ କରି ପାରିଲେ ନାହିଁ । ସେମିତି ପ୍ରମାଣ ନ ଥିଲା । ମାତ୍ର ଡ଼ିଫେନ୍‌ସ ଅଫ ଇଣ୍ଡିଆ ଆକ୍ଟରେ ସେମାନଙ୍କୁ ସିକ୍ୟୁରିଟି ବନ୍ଦୀ କରି ବହୁ ମାସ ଜେଲ ଦଣ୍ଡ ଦେଲେ । ଏହିପରି ୮୬ ଜଣଙ୍କ ଭିତରେ ବହୁ ନିର୍ଦ୍ଦୋଷ ଲୋକ ଥିଲେ ।

ସେମାନଙ୍କର କଷ୍ଟବରଣ, ତ୍ୟାଗ ଓ ବ୍ୟକ୍ତିଗତ ଦୁଃଖଭୋଗ କଥା ଭାବିଲେ ମୁଁ ବେଳେ ବେଳେ ନିଜକୁ ଦୋଷୀ ବୋଲି ମନେ କରେ । ମାତ୍ର ସେମାନେ ମନ ଖୁସିରେ ଏହା ବରଣ କରୁଥିଲେ । ମୋ ପ୍ରତି ଅପାର ଶ୍ରଦ୍ଧା ଓ ସ୍ନେହ ଦେଖାଉ ଥିଲେ । ଏହି ସବୁ ଯୋଗୁଁ ମୋର ମନର ବଳ ବଢୁଥିଲା । ଅଣ୍ଡରଗ୍ରାଉଣ୍ଡରେ ଓ ଜେଲ ଭିତରେ ନାନା ଅସୁବିଧା ଭିତରେ ଦିନ କାଟୁ ଥିଲେ ସୁଦ୍ଧା କେବେ ହେଲେ ମନ ଊଣା କରି ନାହିଁ । ଦିନେ ଦିନେ ଖାଦ୍ୟ ଉପାସ ରହିଯିବାକୁ ପଡ଼େ । ସେ ସବୁ ଦୂସର କଥା । ମାତ୍ର ଏହି ସୂତ୍ରରେ ଆମେ ପ୍ରଦେଶର ବିଭିନ୍ନ ସ୍ଥାନରେ ଯୋଗସୂତ୍ର ସ୍ଥାପନା କଲୁ । ବୁଲେଟିନ୍ ଯାଉଥିଲା । ତେଣୁ ଖବର ଆସି ପହଞ୍ଚୁଥିଲା । ଏସବୁ ପଠାଇବା ସର୍ବଦା ନିରାପଦ ନୁହେଁ ମନେକରି କେତେକ ବ୍ରାଞ୍ଚ ଅଫିସରେ ସାଇକ୍ଲୋ ଷ୍ଟାଇଲ ମେସିନ ରଖି ଛପାଇବାର ବ୍ୟବସ୍ଥା କରିଲେ ।

ଯାହା କହିଛି ସବୁ ଠାରୁ ବିପଦର ବାଟ ହେଲା ଡାକଘର ଜରିଆରେ । ପୁଲିସ କଥା ଜାଣି ଥିବାରୁ ସବୁ ଚିଠି ଗୁଡ଼ିକ ବାଙ୍କ ବିହାରୀ ଦାସଙ୍କ ଅକ୍ଷରରେ ଠିକଣା ଲେଖା ହୋଇ ପଠା ଯାଉଥିଲା । ସେ ପ୍ରତିଦିନ କଲେଜ ଫେରନ୍ତା ଏତିକ କାମ କରି ଯାଉଥିଲେ ବଡ଼ ସଫଳତା ସହକାରେ । ଆମ ସାଙ୍ଗରେ ନବଘନ ବେହେରା ନାମକ ଆଉ ଜଣେ ରାଜନୀତିକ ପଳାତକ ଥିଲେ । ସେ ଢେଙ୍କାନାଳରୁ ପଳାଇ ଆସିଥିଲେ । ମୋ ସାଙ୍ଗରେ ଗିରଫ ହେବାରୁ ବହୁତ ମାଡ଼ ଓ ନିର୍ଯାତନା ସହ୍ୟ କଲେ । ମୋ ସାଙ୍ଗରେ ଚାରି ବର୍ଷ ଓ ଢେଙ୍କାନାଳରେ ଆହୁରି ଦଶବର୍ଷ ସଜା ଭୋଗିଲେ । ୪୦ ବର୍ଷର ସ୍ୱାଧୀନତା ପାଳନ କରା ଯାଉଛି; ମାତ୍ର ଏମାନଙ୍କୁ ପଚାରୁଛି କିଏ ?

ନବଘନଙ୍କ ଘରେ ଟଙ୍କା ଦରକାର ବୋଲି ଖବର ଆସିଲା । ନବଘନ ବଡ଼ ଅଧୈର୍ଯ୍ୟ ହେଲେ । ଆମେ ସ୍ଥିର କଲୁ ତାଙ୍କ ଘରକୁ ମନିଅର୍ଡର ଯୋଗେ ଟଙ୍କା ପଠାଇ ଦେବୁ । ଆଉ କୌଣସି ଉପାୟ ନଥିଲା । ଏ ଟଙ୍କାଟି ମନିଅର୍ଡର ଯୋଗେ ବାଙ୍କ ବାବୁ ତାଙ୍କ ହାତରେ ଲେଖି ପଠାଇଲେ । ଏଠାରୁ ଚାଲିଗଲା; ମାତ୍ର ଢେଙ୍କାନାଳ ପୁଲିସ ଧରିଲେ । କଟକ ପଠାଇଲେ । ବାଙ୍କ ବାବୁ କଲ୍ୟାଣପୁର ମେସ୍‌ରେ ଥାଆନ୍ତି । ସେଠି ଚଢ଼ାଉ କରି ତାଙ୍କ ବାଇଗଣିଆ କାଳି ଓ ଅକ୍ଷର ସହ ମିଳାଇଲେ ।

ପୂର୍ବ ମିଶିଗଲା । ବାଙ୍କୁ ଗିରଫ କରିନେଲେ ଏବଂ ତାଙ୍କ ସାଙ୍ଗରେ ଗଦାଧର ଦାସଙ୍କୁ ମଧ୍ୟ । ସେ କଲ୍ୟାଣପୁର ମେସ୍‌ର ମୁରବୀ ଥିଲେ । ଶଚି ଓ ବାଙ୍କ ଉଭୟଙ୍କର ଗିରଫରେ ମୋର ବାଁ ଡାହାଣ ହାତ କଟିଗଲା ବୋଲି ମୁଁ ଭାବିଲି । ପୁଲିସର କଡ଼ା ନଜର ପଡ଼ିଗଲା କଟକ ସହର ଉପରେ ।

ବାଙ୍କ ବିହାରୀ ଦାସ ଏବେ ଓଡ଼ିଶାରେ ଜଣେ ପ୍ରବୀଣ ନେତା । ମୋ ସହ ସମାଜବାଦୀ ଆନ୍ଦୋଳନରେ ରହିଲେ; ମୁଖ୍ୟ ଭାଗ ନେଲେ । ଏମ୍.ଏଲ୍.ଏ. ଓ ଏମ୍.ପି. ହୋଇଛନ୍ତି । ସବୁଠାରେ ନିଜର ଦକ୍ଷତା ଓ କର୍ମ କୁଶଳତାର ପରିଚୟ ଦେଇଛନ୍ତି । ଏବେ ବି କର୍ମଠ ଅଛନ୍ତି ଏବଂ ଓଡ଼ିଶା କୃଷକ ମହାସଂଘ ଗଢି ଓଡ଼ିଶାର କୃଷକ କୁଳର ବିଭିନ୍ନ ଉନ୍ନତି କଳ୍ପେ ସଚେତନ ରହିଛନ୍ତି । ମୋ ମନରେ ଆନନ୍ଦ ଯେ ଏପରି ସବୁ କୃଶଳୀ ଓଡ଼ିଆ ସନ୍ତାନମାନଙ୍କୁ ରାଜନୀତି କ୍ଷେତ୍ରକୁ ଆଣିବାରେ ମୋର କିଛି ଦାନ ରହିଛି ।

卐

[ ୩୬ ]

# ଆନ୍ଦୋଳନର ସ୍ୱରୂପ

ଭରତ ଛାଡ ଆନ୍ଦୋଳନ ଓଡ଼ିଶାରେ କେମିତି ଆରମ୍ଭ ହେଲା, ସେ ବିଷୟରେ ସୂଚନା ଦିଆ ଯାଇଛି, ପୂର୍ବ ଅଧ୍ୟାୟ ଗୁଡ଼ିକରେ । ଜେଲ ଜୀବନ ସହ ଏଗୁଡ଼ିକ ଜଡ଼ିତ ବୋଲି ଯାହା ମନରେ ଥିଲା, ସଂକ୍ଷିପ୍ତ ସୂଚନା ଦିଆ ଯାଇଛି । ମାତ୍ର ଆନ୍ଦୋଳନ ସମ୍ବନ୍ଧରେ ଯାହା ସବୁ ଲିଖିତ ନିର୍ଦ୍ଦେଶ ଦିଆ ଯାଉଥିଲା, ଗୋଟିଏ ଦୁଇଟି ଲିଖିତ ବିବରଣୀରୁ ଉଲ୍ଲେଖ କରୁଛି । ଏଥିରୁ ଧାରଣା ହେବ କିପରି ବୁଲେଟିନ୍ ବାହାରୁ ଥିଲା ଏବଂ ଶେଷକୁ ବିଦ୍ରୋହ କି ଆକାର ଧାରଣ କଲା ।

ଗୋଟିଏ ବୁଲେଟିନ୍‌ରେ ଲେଖା ଥିଲା–

"ମନେ ରଖିବ– କେବେ ହେଲେ ଆମ ତରଫରୁ କୌଣସି ବ୍ୟକ୍ତି ଉପରେ ଆକ୍ରୋଶ ରଖି କିମ୍ବା ଆମ ଆନ୍ଦୋଳନର ହିତ ଦୃଷ୍ଟିରୁ ହିଂସା ଆଚରଣ କରି ହତ୍ୟା କରିବ ନାହିଁ । ଏହା ବ୍ୟତୀତ ସବୁ ପ୍ରକାର ବେଆଇନ ମୂଳକ ଓ ସରକାରକୁ ଅଚଳ କରିବାର କାର୍ଯ୍ୟକ୍ରମ ହାତକୁ ନେଇ ପାରିବ । ପ୍ରଚାରକ ତ ସ୍ଥାନେ ସ୍ଥାନେ ବୁଲେଟିନ୍ ବାଣ୍ଟିବେ ଏବଂ ସ୍ଥଳ ବିଶେଷରେ ବିକ୍ରୀ କରିବେ– ମାତ୍ର ଦଳକୁ ଦଳ ଗାଁ ବା ସହରୀଆ ଟୋକାଙ୍କୁ ଏକାଠି କରି ସେମାନଙ୍କୁ ଶିକ୍ଷା ଦେଇ ସାଙ୍ଗେ ସାଙ୍ଗେ ବିଭିନ୍ନ ସ୍ଥଳକୁ ପଠାଇ ଦିଅ । ସେମାନଙ୍କର କାମ ହେବ ରେଲ ତାର କାଟିବା, ବାଟ ଘାଟ ହାଣି ବା ଗଛ କାଟିଦେଇ ରାସ୍ତା ବନ୍ଦ କରିଦବା । ସେମାନେ ଟେଲିଗ୍ରାଫ ତାର କାଟିବେ ଏବଂ ଏମିତି ଅବସ୍ଥା ସୃଷ୍ଟି

କରିବେ ଯେମିତି ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ପୁଲିସ ବା ସୈନ୍ୟ ଯାଇପାରିବେ ନାହିଁ । ଏତିକି ବେଳେ ଯାଇ ପୁଲିସ ଥାନା ଆକ୍ରମଣ କରିବ । ଆଗ ଅତି ଦୂର ମଫସଲ ଗ୍ରାମରେ କାମ ଆରମ୍ଭ କରିବା ଭଲ । ଅଳ୍ପ ପୁଲିସ ଥିବେ; ସେମାନଙ୍କୁ କାବୁ କରିବା ସହଜ । ସେମାନଙ୍କୁ ବନ୍ଦୀ କରି ନବ । ଅସ୍ତ୍ର ଶସ୍ତ୍ର ସବୁ ନେଇ ଆସିବ । ଥାନାରେ ନିଆଁ ଲଗାଇ ଦେଇ ପାର । ସେଇଟା ଅବସ୍ଥା ଦେଖି କରିବ । ମାତ୍ର ଅସ୍ତ୍ର ଶସ୍ତ୍ର ଛଡ଼ାଇ ନେଇ ସେହି ପୁଲିସ ଅଫିସରଙ୍କ ଠିଁ ତୁମର ଯଦି ପରିଆଗ ହୁଏ, ତାଙ୍କୁ ସ୍ୱାଧୀନ ଭରତର ପୁଲିସ ବୋଲି ଘୋଷଣା କରି, ଉକ୍ତ ସ୍ଥାନରେ ପତାକା ଉଠାଇ ଦେଇ ଓ ସ୍ୱାଧୀନତା ଘୋଷଣା କରି ଦେଇ ଚାଲି ଆସିବ । ଅସ୍ତ୍ର ଶସ୍ତ୍ର ଆଣି ଯଦି ସୁବିଧା ସ୍ଥାନରେ ରଖି ପାରିବ ଭଲ । ନଚେତ୍ ଗଭୀର ନଦୀ ବା ଗହଡ଼ା ପଙ୍କୁଆ ପୋଖରୀ ଭିତରକୁ ପକାଇ ଦେବ । ହୁସିଆର, ହତିଆର ପାଇ କାହାରିକି ହତ୍ୟା କରିବ ନାହିଁ ।

ଆନ୍ଦୋଳନ ଭିତରେ ପାରଲା ମନ୍ତ୍ରୀ ମଣ୍ଡଳ ଗଠିତ ହୋଇଥିଲା । ପଣ୍ଡିତ ନୀଳକଣ୍ଠ ଦାଶଙ୍କ ଉଦ୍ୟମରେ କେତେକ କଂଗ୍ରେସ ଏମ୍.ଏଲ୍.ଏ.ଙ୍କୁ ଖସାଇ ନେଇ ଏହି ମିଳିତ ମନ୍ତ୍ରୀ ମଣ୍ଡଳ ଗଠିତ ହୋଇଥିଲା । ଏଥିରେ ପଣ୍ଡିତ ଗୋଦାବରୀଶ ମିଶ୍ର ଜଣେ ମନ୍ତ୍ରୀ ଥିଲେ । ବ୍ରିଟିଶ ଯୁଦ୍ଧରେ ସାହାଯ୍ୟ କରିବା ନିମନ୍ତେ ମୁଖ୍ୟତଃ ଏହା ଗଠିତ ହେଲା । ନେତାଜୀଙ୍କ ପ୍ରୋଗ୍ରାମରେ ଏହା ହୋଇ ଥିଲା ବୋଲି ଏକ ମିଥ୍ୟା ପ୍ରଚାର କରା ଯାଇଥିଲା । ଏ କଥାଟି ଏବେ ବି ବହୁ ଲୋକ ବିଶ୍ୱାସ କରନ୍ତି । ଏହି ଯୁଦ୍ଧ ସପକ୍ଷ ପ୍ରଚାର ଲାଗି ନେସନାଲ ଓ୍ୟାର ଫଣ୍ଡ ନାମକ ଏକ ଅନୁଷ୍ଠାନ ଗଢ଼ି ପଣ୍ଡିତ ନୀଳକଣ୍ଠଙ୍କ ହାତରେ ବ୍ରିଟିଶ ସରକାର ନବେ ହଜାର ଟଙ୍କା ଦେଇଥିଲା । ସେବ କାଳର ନବେ ହଜାର ବର୍ତ୍ତମାନ କେତେ ପରିମାଣ ହେବ ସହଜରେ ଅନୁମାନ କରାଯାଇ ପାରିବ । ସେ ମନ୍ତ୍ରୀ ମଣ୍ଡଳ ପ୍ରତି ଆମର କଣ ମନୋଭାବ ତାହାର ସୂଚନା ମିଳିବ ନିମ୍ନୋକ୍ତ ବୁଲେଟିନ୍‌ରେ—

"ପାରଲା ମନ୍ତ୍ରୀ ମଣ୍ଡଳ ବ୍ରିଟିଶ ଏଜେଣ୍ଟ ରୂପେ ଓଡ଼ିଶାରେ ତିଷ୍ଠିଛି । ଏହା ପଛରେ ଲୋକ ସମର୍ଥନ ନାହିଁ । ଏହାକୁ ଆମେ ବେଆଇନ ଘୋଷଣା କରୁଛୁ । ଏଠାରେ ବ୍ରିଟିଶର ପଞ୍ଚମ ବାହିନୀ ରୂପେ ସେମାନଙ୍କ ରକ୍ଷା ଲାଗି ଏହା କାର୍ଯ୍ୟ କରୁଛି । କୋରାପୁଟ ଓ ଗଞ୍ଜାମରେ ଯେଉଁ ଏକଶତ ବ୍ୟକ୍ତିଙ୍କୁ ହତ୍ୟା

କର ଯାଇଛି ସେଥି ଲାଗି ଏମାନେ ଦାୟୀ । ନାନା ପ୍ରକାର ହତ୍ୟା ବିଭିଷିକା ଅପରାଧରେ ଏମାନେ ଦୋଷୀ । ଏହି ମନ୍ତ୍ରୀ ମଣ୍ଡଳର ସଭ୍ୟ ଓ ସମର୍ଥକମାନଙ୍କୁ ପୂର୍ନଜୀବନ ବିନାଶ କରିଦେବା ଉଚିତ । ମୃତ ବ୍ରିଟିଶ ଶାସନକୁ ପୂର୍ନଜୀବନ ଦେବା ନିମନ୍ତେ ଏମାନେ ଯେଉଁଭଳି ନିର୍ଲଜ ବ୍ୟଗ୍ରତା ଦେଖାଉଛନ୍ତି, ସେଥିରେ ଏମାନଙ୍କୁ ଗୁଳି-କରି ମାରିଦେବା ଉଚିତ । ମାତ୍ର ଅହିଂସାରେ ହତ୍ୟାକୁ ଶାସ୍ତି ରୂପେ ଉପଯୋଗ କରା-ଯାଇ ପାରେନା । ଅହିଂସାରେ ହତ୍ୟାର ସ୍ଥାନ ନାହିଁ । ତେଣୁ ଏମାନଙ୍କୁ ସାମାଜିକ ବାସନ୍ଦ କର, ଲାଞ୍ଛନା ଦିଅ । ଦୁଷ୍କର୍ମରୁ ରକ୍ଷା କରିବା ନିମନ୍ତେ ଏମାନଙ୍କୁ ଗିରଫ କରି ନିଅ । ମାତ୍ର ସାବଧାନ, କୌଣସି ବ୍ୟକ୍ତି ବିଶେଷ ଉପରେ ହିଂସା ଆଚରଣ କରିବ ନାହିଁ ।

ଆଉ ଏକ ବୁଲେଟିନ୍‌ରେ ଥିଲା– "ଇଂରେଜ ରାଜୁତିର ଶେଷ ସତ୍ତା ଲୋପ କରିବା ନିମନ୍ତେ ପୁଲିସ ଥାନା, ତହସିଲ, ଡାକବଙ୍ଗଳା, କେନାଲ ଇଲାକାର ଅଫିସ୍ ସବୁ ଓ ସବ୍‌ରେଜିଷ୍ଟ୍ରୀ ଅଫିସଗୁଡ଼ିକ ଦଖଲ କରିବ ଏବଂ ଏଗୁଡ଼ିକ ସ୍ୱାଧୀନ ଦେଶର ହୋଇଗଲା ବୋଲି ପତାକା ବାନ୍ଧିବ । ଲୋକେ ଦଳ ଦଳ ହୋଇ ଏଥିରେ ପ୍ରବେଶ କରିବେ ଏବଂ ଏମିତି ଦଖଲ କରି ନବ । ସହର ମାନଙ୍କରେ ଯେଉଁ ସରକାରୀ କେନ୍ଦ୍ର କଲେକ୍ଟରେଟ୍, ଆଇନ ଅଦାଲତ ଓ ଅନ୍ୟ ବଡ ଅଫିସ ରହିଛି, ସେଗୁଡ଼ିକୁ ମଧ୍ୟ ସେହି ଭାବରେ ଦଖଲ କରାଯିବ । କିନ୍ତୁ ପୁଲିସ ଥାନା କିମ୍ବା ସରକାରୀ ଦପ୍ତର ଦଖଲ ପୂର୍ବରୁ ଯେତେ ରାସ୍ତା, ପୋଲ, ଟେଲିଗ୍ରାଫ୍ ତାର ଓ ଡ଼ାକଘର ସବୁ ଥିବ, ସେଗୁଡ଼ିକ ହୁଏତ କାଟିଦବ, ନଚେତ୍ ପୋଡ଼ିଦବ । ଭାରତୀୟ ସରକାରୀ କର୍ମଚାରୀ ମାନଙ୍କୁ ଇସ୍ତଫା ଦେବାଲାଗି ନିବେଦନ କରିବ ଏବଂ ଆନ୍ଦୋଳନରେ ଯୋଗ ଦେବା ଲାଗି କହିବ । ନଭେମ୍ବର କିସ୍ତି ଖଜଣା ଲୋକେ ଦେବେ ନାହିଁ । ଚୌକିଦାରୀ ଟିକସ ଦେବା ବନ୍ଦ କରି ଦିଆଯିବ । ଯେଉଁସବୁ ଅସ୍ଥାୟୀ ଜମିଦାରୀ ମାହାଲ ରହିଛି ସେଠି କୌଣସି ପ୍ରଜା ଖଜଣା ଦେବେ ନାହିଁ । ଜଙ୍ଗଲ ଅଞ୍ଚଳରେ ଫରେଷ୍ଟ ଆଇନକୁ ଅମାନ୍ୟ କରିବା ନିମନ୍ତେ ପ୍ରଜାଙ୍କୁ କହିଦିଅ । ସବୁ ପ୍ରକାର ସରକାରୀ ବିଧି ନିୟମକୁ ଲଂଘନ କର ।"

ଏହି ସବୁ ବୁଲେଟିନର ଅଦ୍ଭୁତ ପ୍ରଭାବ ପଡ଼ିଥିଲା । ସରକାରୀ ଗୁପ୍ତ ରିପୋର୍ଟରେ ସେଥିର କିଂଚିତ ବର୍ଣ୍ଣନା ରହିଛି । ସେଥିରେ ଲେଖା ଅଛି ଦେଶରେ

ନଗଦ ମୁଦ୍ରା ପ୍ରଚଳନର ସଂକଟ ସୃଷ୍ଟି କରିବା ନିମନ୍ତେ ସୁରେନ୍ଦ୍ରନାଥ ଦ୍ୱିବେଦୀ ଏକ ନିବେଦନ କରିଥିଲେ ଯେ ଦେଶବାସୀ ବ୍ରିଟିଶ ମୁଦ୍ରା କାରବାର କରନ୍ତୁ ନାହିଁ । ଯାହା ପାଖରେ ଅଛି, ତାହା ପୋତି ରଖି ଦିଅନ୍ତୁ । ସେସନାଲ ଆରକାଇଭ୍‌ରୁ ଏହି ରିପୋର୍ଟ ମିଳି ପାରିବ । ଲୋକେ ଏହି ନିବେଦନ ଅନୁସାରେ କାର୍ଯ୍ୟ କରିଥିଲେ– ଫଳରେ ମୁଦ୍ରା ପ୍ରଚଳନରେ ସରକାର ଓଡ଼ିଶାରେ ମହା ଯନ୍ତ୍ରଣାରେ ପଡ଼ିଲେ ।

ଆମର ଗୁପ୍ତ ସଂଗଠନ କୌଣସି ପ୍ରତ୍ୟକ୍ଷ ସଂଗ୍ରାମରେ ବ୍ୟାପୃତ ନ ଥିଲା । ମାତ୍ର ଓଡ଼ିଶାର ଆନ୍ଦୋଳନକୁ ସକ୍ରିୟ କରିବାରେ ଏବଂ ସବୁଆଡ ସହିତ ସଂଯୋଗ ସ୍ଥାପନାରେ ଏହା ପ୍ରଧାନ ଭୂମିକା ଗ୍ରହଣ କରିଥିଲା ।

卐

[ ୩୭ ]

# ଗିରଫ ପୂର୍ବର ଅବସ୍ଥା

ଅଣ୍ଡରଗ୍ରାଉଣ୍ଡ ସଂଗଠନ ବହୁଦିନ ରହି ପାରନ୍ତା ନାହିଁ । ତାହାର ଆନ୍ଦୋଳନ ସଂଗଠିତ ଭାବରେ ଚଳାଇ ନ ପାରିଲେ ଏହାର ଆବଶ୍ୟକତା ବା କଅଣ ? ଅଗଷ୍ଟରୁ ସାରା ଭାରତରେ ସ୍ୱତଃସ୍ଫୂର୍ତ୍ତ ଭାବରେ ବିଦ୍ରୋହ ଜାଗି ଉଠିଲା । ଯାହାକୁ ବାସ୍ତବିକ ଜନ ବିପ୍ଳବ ବା ବିଦ୍ରୋହ ନାମ ଦିଆ ଯାଇଛି । ବ୍ରିଟିଶ ସରକାର ଭାରତରେ ଖାଲି ଅସ୍ତବ୍ୟସ୍ତ, ନାସ୍ତାନବୁଦ ହେଲା ନାହିଁ, କେତେକ ସ୍ଥାନରେ ସରକାରୀ କଳ ଏକ ପ୍ରକାର ଅଚଳ ହୋଇଗଲା । ମହାରାଷ୍ଟ୍ର, ପଶ୍ଚିମବଙ୍ଗ ଓ ବିହାର ଆଦିରେ ସମାନ୍ତରାଳ ସରକାର ସ୍ଥାପିତ ହୋଇ ନିର୍ଦ୍ଦିଷ୍ଟ ଅଞ୍ଚଳରେ ବ୍ରିଟିଶ ସରକାରୀ କଳକୁ ନିଷ୍କ୍ରିୟ କରିଦେଲେ । ନୀରସ ଜନବିଦ୍ରୋହ କ୍ରମାନ୍ୱୟ ଭାବରେ ଚଳିବା କଷ୍ଟସାଧ୍ୟ । ଆଗରୁ ସଂଗଠିତ ଭାବରେ ଯେତେ ଆଇନ ଅମାନ୍ୟ ଆନ୍ଦୋଳନ କରା ଯାଇଥିଲା, ତାହା କେବେ ତିନି ଚାରି ମାସରୁ ଅଧିକ କାଳ ଚଳି ପାରି ନ ଥିଲା । ଏଥରକ ତିନି ଚାରି ମାସ ଭିତରେ ଭାରତରେ ସରକାର ଉପରେ ଯେ ପ୍ରହାର ଓ ଧକ୍‌କା ଲାଗିଲା, ଯୁଦ୍ଧରତ ବ୍ରିଟିଶ ଶକ୍ତି ପକ୍ଷରେ ତାହା ସମ୍ଭାଳିବା ମୁସ୍କିଲ ହୋଇଗଲା । ଏହି ସ୍ୱତଃସ୍ଫୂର୍ତ୍ତ ବିପ୍ଳବ ଖୁବ୍ ବେଶିଦିନ ନ ଚଳିବା ସ୍ୱାଭାବିକ । ମାତ୍ର ଅଣ୍ଡରଗ୍ରାଉଣ୍ଡ ସଂଗଠନ ଗୁଡ଼ିକ ତିଷ୍ଠିଥିଲା । ଜୟ ପ୍ରକାଶ ନାରାୟଣ ହାଜାରିବାଗ ଜେଲରୁ ପଳାଇ ଆସିବା ପରେ ଓ ସେ ଓ ଲୋହିଆ ଅଣ୍ଡର ଗ୍ରାଉଣ୍ଡ ସଂଗଠନ ଗୁଡ଼ିକ ସହ ସଂପର୍କ ସ୍ଥାପନ କଲାପରେ ବିଭିନ୍ନ ରୂପରେ ଆନ୍ଦୋଳନ ତେଜି ଉଠିଲା । ଆମେ ଯେ ଗୁପ୍ତ ସଂଗଠନରେ ନିଯୁକ୍ତ ଥାଉ, ଯାମ ଭିତରେ ପରସ୍ପର ସଂପର୍କ ଆହୁରି ଘନୀଭୂତ ହୋଇଗଲା । ମାତ୍ର କେବଳ ଗାନ୍ଧୀଜୀଙ୍କର

ଢେଇ ଆଗା ଖାଁ ପାଲେସ୍ ଆକ୍ରମଣ କରିବାର ଯୋଜନା ଛଡ଼ା ସର୍ବଭାରତୀୟ କାର୍ଯ୍ୟକ୍ରମ କିଛି ସ୍ଥିର ହୋଇ ନ ଥିଲା । ହୋଇ ପାରନ୍ତା ନାହିଁ ମଧ୍ୟ । ଲୁଗ୍ଗ ଗ୍ରେସ ସଂପର୍କଟି ସ୍ଥାୟୀ ବା ନିର୍ଭରଯୋଗ୍ୟ ନୁହେଁ । ଧର, କେହି ସଂଯୋଗକାରୀ ଗିରଫ ହୋଇଗଲା । ଆମ ପାଖରେ ଧନ ଓ ଜନବଳ ଏପରି ନଥିଲା, ତା ବଦଳରେ ଅନ୍ୟ ବ୍ୟବସ୍ଥା ସହଜରେ କରାଯାଇ ପାରନ୍ତା । ବିଭିନ୍ନ ସ୍ଥାନରେ ପ୍ରଦେଶରେ ଯେଉଁସବୁ ସଂଗଠନ ସ୍ଥାପିତ ହୋଇଥିଲା, ତାହା ସର୍ବଦା ପରସ୍ପର ସହ ସଂପର୍କ ରକ୍ଷା କରି ନ ପାରୁଥିଲେ ମଧ୍ୟ ଟିକି ରହିଥିଲା । କେତେକ ସେଗର ନେତା ମଝିରେ ମଝିରେ ଗିରଫ ହୋଇ ଯାଉଥିଲେ । ଆନ୍ଦୋଳନର ତୀବ୍ରତା ରହି ପାରି ନ ଥିଲା; ମାତ୍ର ଗୁପ୍ତ ସଂଗଠନ ଗୁଡ଼ିକର ସ୍ଥାନୀୟ ବେଆଇନ କାର୍ଯ୍ୟ ଚାଲୁଥିଲା ।

ଆମର ଏଠି ପୁଲିସର ତୀକ୍ଷ୍ଣ ଦୃଷ୍ଟି କଟକ ସହର ଉପରେ ରହିବାରୁ ମୁସ୍କିଲ ଅବସ୍ଥା ପହଞ୍ଚିଲା । ଶଚି ଓ ବାଙ୍କଙ୍କ ଗିରଫ ପରେ କଟକ ସହରରେ ସଂପର୍କ ବଢ଼ାଇବା ସମ୍ଭବ ହେଲା ନାହିଁ । ବିଶ୍ୱନାଥ ଓ ମଥୁରୀ ଆଦିଙ୍କୁ ଅନ୍ୟ କୌଣସି କାମରେ ଲିପ୍ତ ହେବା ଠିକ୍ ହୋଇ ନ ଥାନ୍ତା । ସେମାନେ ଯେତେ ଗୋପନରେ ରହିବେ, ତେତେ ଲିଥୋ କାର୍ଯ୍ୟଟି ସୁରକ୍ଷୁରରେ ଚାଲିବ । ସାହି ବସ୍ତି ବାସିନ୍ଦା ହୋଇଥିବାରୁ ବସ୍ତି ଭିତରେ ଚଳପ୍ରଚଳ ହେଲେ ତାଙ୍କୁ ସେପରି ସନ୍ଦେହ କେହି କରିବେ ନାହିଁ । ମୋର ଲୁଚିବା ସ୍ଥଳଟି କେବଳ ମୋ ରହିବାସ୍ଥାନ ନ ଥିଲା; ତାହା ଥିଲା ଆମର ମୁଖ୍ୟକେନ୍ଦ୍ର ଓ ଲିଥୋ ଛାପା କାମ ଏମାନେ କରୁଥିଲେ । ଏହି ବ୍ୟବସ୍ଥାଟି ଭଲ କାମ ଦେଲା । ଅର୍ଥାତ୍ ମୋ ଗିରଫ ପରେ ମଥୁରୀ ଓ ତାଙ୍କ ପିତା ନନ୍ଦି ସାହୁ ମତେ ଆଶ୍ରୟ ଦେବାରୁ ସିନା ଗିରଫ ହୋଇଗଲେ; ମାତ୍ର ବିଶ୍ୱନାଥ ଓ ବନମାଳୀ ମିଶ୍ରଙ୍କୁ ସାଙ୍ଗେ ସାଙ୍ଗେ ଗିରଫ କରାଯାଇ ନ ଥିଲା । ବିଶ୍ୱନାଥ ପଣ୍ଡିତ ମୋର ଗିରଫ ପରେ ଗୁପ୍ତ ସଂଗଠନକୁ କିଛିତ ପରିମାଣରେ ଚଳାଇଥିଲେ । ଅନୀଲ କୁମାର ଘୋଷ ବି ତାଙ୍କ ସହ ଯୋଗ ଦେଇଥିଲେ ।

ଏହା ଭିତରେ କଟକ ଜିଲ୍ଲା ଓ ଅନ୍ୟ କେନ୍ଦ୍ର ଗୁଡ଼ିକ ସହ କ୍ରମେ ଦୁର୍ବଳ ହୋଇଯାଉଥିବାର ସଂବାଦ ମଧ୍ୟ ପହଞ୍ଚୁ ଥାଏ । କେବଳ ବାଲେଶ୍ୱରରେ ଗୌରଚନ୍ଦ୍ର ଦାସ ଓ ପ୍ୟାରିମୋହନ ଦାସ, ଦୁଃଖଶ୍ୟାମ ପାଢ଼ୀ ଓ ରମାକାନ୍ତ

ଦାସଙ୍କ ସହାୟତାରେ ଯେଉଁ କେନ୍ଦ୍ର ସ୍ଥାପନା କରିଥିଲେ, ପୁଲିସ ତହିଁର ସନ୍ଧାନ କରିପାରି ନ ଥିଲେ । ବାଲେଶ୍ୱର ଜିଲାର ବିଭିନ୍ନ ସ୍ଥାନରେ ଯେ ପ୍ରବଳ ଆନ୍ଦୋଳନ ଓ ଗୁଳି ଚାଳନା ଆଦି ଚାଲିଥିଲା, ସେଥିପ୍ରତି ତାଙ୍କର ଅଧିକ ନଜର ଥିଲା । ଯାହାହେଉ, ଚରିଆଡୁ ଯେମିତି ବାନ୍ଧି ହୋଇ ପଡ଼ିଲା ପରି ମତେ ଲାଗିଲା । ମୁଁ ଧରିନେଲି ମୋ ପକ୍ଷରେ କଟକରେ ରହିବା ଆଉ ନିରାପଦ ନୁହେଁ । ଏହା ଭିତରେ କେତେକ ଯାଗାରେ ଲିଥୋ ମେସିନ୍ ଯୋଗାଡ଼ କରି ଦିଆଗଲା । ତାହାଛଡ଼ା କଟକରୁ ଚରିଆଡ଼କୁ ପଠାଇବା ବି ସେପରି ସହଜ ନ ଥିଲା । ଯେମିତି ଗଞ୍ଜାମରୁ ଘନଶ୍ୟାମ ପଟନାୟକଙ୍କୁ ଓଡ଼ିଶା ବୁକ୍ ଇମ୍ପୋରିୟମ୍, ବାଲୁବଜାର, କଟକ ଠିକଣାରେ ଚିଠି ପଠାଇବା ନିମନ୍ତେ କୁହାଯାଇଥିଲା, ସେ ଭୁଲରେ କଟକ ଇମ୍ପୋରିୟମ୍ ବୋଲି ଲେଖିଦେବାରୁ ରାଣୀ ହାଟରେ ଚିଠି ଯାଇ ପହଞ୍ଚିଲା । ଘନଶ୍ୟାମ ପଟନାୟକ ଆମର ଗଞ୍ଜାମର ବି. ଓ. ବୋଲି ଜାଣିବାକୁ ପୁଲିସକୁ ଡେରି ଲାଗିଲା ନାହିଁ । ବିଭିନ୍ନ ଜିଲାରେ କେତେ ବ୍ୟକ୍ତିଙ୍କ ଛଡ଼ା ଛୋଟ ଛୋଟ ବହି ଦୋକାନ ଆମର ବୁଲେଟିନ୍ ଓ ଅନ୍ୟ ଜିନିସ ପତ୍ର ପଠାଇବାର ଏକ ମାଧ୍ୟମ ହୋଇଥିଲା । ଏ ଚିଠି ଯୋଗୁଁ ସେଗୁଡ଼ିକ ସନ୍ଦେହ ଚକ୍ଷୁରେ ପଡ଼ିଗଲେ । ଆଉ ବହି ଦୋକାନ ନାମରେ ପାର୍ଶଲ ଆଦି ପଠାଇବା ବନ୍ଦ କରିଦେଲି ।

ମୋଟାମୋଟି ସ୍ଥିର କରିନେଲି କଟକର ଅଲିସାବଜାର କେନ୍ଦ୍ର ଛାଡ଼ି କଲିକତା ଚାଲିଯିବି । ବିଭିନ୍ନ କେନ୍ଦ୍ର ମାନଙ୍କରେ ତ ଲିଥୋ ମେସିନ୍ ବ୍ୟବସ୍ଥା ହୋଇଗଲାଣି । କଲିକତାରୁ ବୁଲେଟିନ୍ ଲେଖି ପଠାଇବି । ତାହାଛଡ଼ା ଭାବିଲି ମୁଁ ନିଜେ ଏଠି ଯେ ବାନ୍ଧି ହୋଇ ପଡ଼ିଛି, ବାହାରିଗଲେ ପୁଲିସର ଏତେ ଚପଟ ନ ଥିବ । ମୁଁ ସେଠାରୁ ବିଭିନ୍ନ କେନ୍ଦ୍ର ପରିଚାଳକଙ୍କ ସହ ପ୍ରତ୍ୟକ୍ଷ ସଂପର୍କ କରି ପାରିବି ଏବଂ କେନ୍ଦ୍ର ଅନୁଷ୍ଠାନ ସଂପର୍କରେ ଆସି ପାରିବି ମଧ୍ୟ । ଏହି ସିଦ୍ଧାନ୍ତ କରି ଦଶହରାରେ ପ୍ରଚାର ନିମନ୍ତେ ଏକ ବୁଲେଟିନ୍ ଲେଖିବା ସ୍ଥିର କଲି । ତାର ନାମ ରଖାଗଲା "ଦେବୀ ଆରାଧନା" । ଦେବୀ ଚାହେଁ ରକ୍ତ; ଦେଶର ଯୁବକମାନେ ମାତୃଭୂମିର ସ୍ୱାଧୀନତା ଲାଗି ରକ୍ତଦାନ କରନ୍ତୁ । ଏହା ଲେଖୁଥାଏ ଖରାବେଳେ ଖଣ୍ଡିଏ ଲୁଙ୍ଗି ପିନ୍ଧି ସରପ ଉପରେ ଏକ ଚକିଆରେ ଭରାଦେଇ । ଖରାବେଳ ଅର୍ଥାତ୍ ଗୋଟାକ ପରେ ସବୁ ନିଶ୍ଚଳ ଥାଏ । ଖିଆପିଆ ସରି ଯାଇଥାଏ । ଦିନବେଳେ କେହି ଆସିବାର ନ ଥାଏ । ଯେ ଆସନ୍ତି, ସନ୍ଧ୍ୟାପରେ । ଖରାବେଳେ

କେବଳ ଦୁଇଜଣ ଆସୁଥିଲେ । ବାଙ୍କ ତାଙ୍କ କଲେଜ କ୍ଲାସରୁ ଘରକୁ ଫେରିବା ବାଟରେ ଆସି ଚିଠି ପାର୍ଶଲ ଆଦି ଉପରେ ଠିକଣା ନିଜ ହାତରେ ଲେଖୁଥିଲେ ପୁଲିସର ସନ୍ଦେହ ନ ରହିବା ନିମନ୍ତେ । ଦ୍ୱିତୀୟରେ ବେଳେ ବେଳେ ରାଧାନାଥ ପଣ୍ଡିତ ଆସି ଟିକିଏ ଡ଼ରେଇବା ଉପହାସ କରିବା ନିମନ୍ତେ । ମାତ୍ର ଖରବେଳଟି ବଡ଼ ନିଷ୍କଳ । ଏତିକି ବେଳେ ମୁଁ ଲେଖାଲେଖି କରେ କିମ୍ବା ପ୍ରେମଚନ୍ଦ ଓ ଶରତ ଚନ୍ଦ୍ର ଚଟାର୍ଯିଙ୍କ ଉପନ୍ୟାସ ପଢ଼େ– ହିନ୍ଦୀ ଓ ବଙ୍ଗଳା ଜ୍ଞାନ ବଢ଼ାଇବା ଛଳି ।

ଏହିପରି ଏକ ଦିନବେଳା ସପ ଉପରେ ଶୋଇ କାର୍ବନ କପି କରି ମୁହଁମାଡ଼ି ଲେଖୁଛି– ହଠାତ୍ ଶୁରିଆଡୁ ଶୁଭିଲା ବୁଟ୍‌ଯୋତା ଶବ୍ଦ ଏବଂ ଘର ଝରକାରେ ଜୋର ହାତମାରି ଚିତ୍କାର–"ଖୋଲେ, ଖୋଲେ" ।

卐

[ ୩୮ ]

# ଗିରଫ ଓ ଜେଲ

ଏପରି ବୁଟ୍ ଯୋତା ଶବ୍ଦ ଓ ଝରକା ଉପରେ ମାଢ଼ ଦେଖି ମୁଁ ଟିକିଏ ଚମ୍‌କି ଉଠିଲି । ସାଙ୍ଗେ ସାଙ୍ଗେ ଚେତା ପଶିଲା । ଦିନ ପ୍ରାୟ ଦୁଇଟାରୁ ବେଶି ହେବ । ଏକାନ୍ତ ଭାବି ଲେଖୁଥିଲି । ମୋର ଧାରଣା ନଥିଲା ଦିନ ବେଳେ ଚଢ଼ାଉ କରିବେ ବୋଲି । ସାଧାରଣତଃ ଯେତିକି ଭିନ୍ନ ଯାଗାର ଖବର ମିଳୁଥିଲା, ସଶସ୍ତ୍ର ପୁଲିସ ସ୍ଥଳ ବିଶେଷରେ ସୈନ୍ୟ ଘେରଉ କରି ରାତି ପାହାନ୍ତିଆ ଆକ୍ରମଣ ହୁଏ । ଦ୍ୱିତୀୟରେ ସବୁ ଅଣ୍ଡରଗ୍ରାଉଣ୍ଡ କେନ୍ଦ୍ରରେ ପୁଲିସର ଭୟ ଥାଏ ସଶସ୍ତ୍ର ପ୍ରତିରୋଧ ହେବ ବୋଲି । କେତେକ ସ୍ଥାନରେ ସେମିତି ଘଟିଥିବାର ସମ୍ବାଦ ମଧ୍ୟ ମିଳୁଥାଏ । ଆମର ଏଠାରେ କିନ୍ତୁ ସେ ସବୁର ଆଶଙ୍କା ନ ଥିଲା । ନାଁ ଥିଲା କୌଣସି ପ୍ରକାର ଛୁରମାଢ଼ କରିବା ଲାଗି ଇଚ୍ଛା । ପ୍ରବଳ ପ୍ରଚାର ବାହାରେ ହୋଇଥିଲା— ମତେ ଏହା ଜଣା ନ ଥିଲା । ଗୁଜବ ଯେ ମୁଁ ଅସ୍ତ୍ର ଶସ୍ତ୍ର ଧରି ସଜ୍ଜିତ ହୋଇ ରହିଛି । ଗୋଥ ବାଉଷ୍ଟେଡ୍ ସାହେବ ଚିଫ୍ ସେକ୍ରେଟରୀ । ତାଙ୍କୁ ମାରି ଉଡ଼ାଇ ଦେବାର ଯୋଜନା କରି ରଖିଛି । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇ ସାରି ଥିଲା । ଗଭର୍ଣ୍ଣର ବି ଥିଲେ । ତାଙ୍କ ଦେହରେ ହାତ ଦେବା କିଛି ସହଜ କଥା ନ ଥିଲା । କିନ୍ତୁ ଚିଫ୍ ସେକ୍ରେଟରୀ ତ ସେକ୍ରେଟରୀଏଟ୍ ଆସି ଅଫିସ କରୁଛି । ସେ ହେଲା ମୁଖ୍ୟ- ତାକୁ ମାରିଦେଲେ ଶାସନ ନିରସ୍ତ ହୋଇଯିବ । ଏହି ମତଲବରେ ମୁଁ ଅଛି ବୋଲି ପୁଲିସ ଓ ସରକାରର ବି ବିଶ୍ୱାସ ହୋଇ ଯାଇଥିଲା । ତେଣୁ ଆଗ ଆସି ମୋ ଗୋପନୀୟ ବାସକୁ ଗ୍ରୁରିଆଡେ ସଶସ୍ତ୍ର ପୁଲିସ ଘେରି

ଗଲେ । ମୁଁ ଝରକା ବାଡେଇଲେ ସୁଦ୍ଧା କବାଟ ନ ଖୋଲିବାରୁ ପାଚେରୀ ଡେଇଁ ଘର ଭିତରେ ପଶିଲେ । ନବଘନ ସେତେବେଳକୁ ଗୋଟାପଣ ଥରିଲାଣି । ଏପରି ଅଭିଜ୍ଞତା ତାର ନ ଥିଲା । ମୋର ବି ନ ଥିଲା । ମାତ୍ର ମୁଁ ତ ସବୁକଥା କରିଛି– ମୃତ୍ୟୁ ପର୍ଯ୍ୟନ୍ତ ପ୍ରସ୍ତୁତ ଥିଲି । ସେଇଥିଲାଗି ଆମର ବିଚାର ବେଳେ ମକଦ୍ଦମାରୁ ଓହରି ଆସି ଜଜ୍‌ଙ୍କୁ ପରିଷ୍କାର ଶୁଣାଇ ଦେଲି– ଆମେ ସାକ୍ଷୀସବୁତ ଦେବୁ ନାହିଁ; ଆମର ବ୍ରିଟିଶ ଅଦାଲତ ବା ନ୍ୟାୟ ବିଚାରରେ ବିଶ୍ୱାସ ନାହିଁ । ତୁମ ଆଇନରେ ଯେତେ ବେଶି ଶାସ୍ତିର ବ୍ୟବସ୍ଥା ଏପରିକି ଫାଶି ପର୍ଯ୍ୟନ୍ତ ତୁମେ ଦେଇପାର । ମୁଁ ଆସି ପ୍ରତ୍ୟକ୍ଷ ଭାବରେ ପୁଲିସର ସମ୍ମୁଖୀନ ।

ଆଗ ପଶି ଆସିଲେ ଗଙ୍ଗାଧର ଦ୍ୱିବେଦୀ ଏବଂ ମତେ କୁଣ୍ଢାଇ ଧରି ପକାଇ ପଛଆଡେ ହାତ ବୁଲାଇ ଦେଲେ । ମୁଁ ଲୁଙ୍ଗି ଓ ହାଫ ସାର୍ଟ ପିନ୍ଧିଥାଏ । ସେଥିରୁ କଣ ବା ପାଆନ୍ତେ ! ବନ୍ଧୁକ କାହିଁ ବୋଲି କହି ଅଗଣାରେ ଯେତେ କାକୁଡ଼ି ଓ କଖାରୁ ଲଟା ବଣ ଥାଏ ତାକୁ ଘାଣ୍ଟି ପକାଇଲେ । କିଛି ମିଳିଲା ନାହିଁ । ମନରୁ ପ୍ରଥମ ଆଶଙ୍କା ଦୂର ହେଲା । ନବଘନକୁ ଗୁଡାଇ ତୁଡାଇ ବହୁ କଥା ପଚାରିଲେ । ମୁଁ ତାଙ୍କୁ କହିଲି ସେ ଆଠଗଡ଼ର ଏକ ଅଫିମିଆ– ଏଠି ବୁଲୁଥିଲା ଏଘର ସେଘର ହୋଇ । ମୁଁ ରଖିଥିଲି ତାକୁ ମୋର ବୋଇହାକ କରିବ ଓ ଘେଷେଇ କରିବା ଲାଗି । ମତେ ତ ପାଇଲ । ସେ ବିଚରାକୁ ଛାଡ଼ିଦିଅ । ଏତେ-ବେଳକୁ ମନବୋଧ ପଣ୍ଡା, ଇନ୍‌ସ୍ପେକ୍ଟର ଆସି ଯାଇଥିଲେ– ସେ ମତେ ପାଇ ଏତେ ଖୁସି ଯେ କହି ପକାଇଲେ– ହଁ, ସେ ଶଳାଟାକୁ ଛାଡ଼ିଦିଅ । ସେ ବିଚରା ବାହାରୁଛି– ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ରେନର ସାହେବ ପହଂଚିଲେ । ସେ ସାଙ୍ଗେ ସାଙ୍ଗେ ବାରଣ କଲେ । ମୋ ଆଗରୁ ତାକୁ ବାନ୍ଧିନେଇ ଲାଲବାଗ୍ ପୁଲିସ ଲକ୍‌ଅପ୍‌ରେ ଅଲଗା ରଖିଲେ । ପରେ ବହୁତ ପିଟାପିଟି କଲେ କିଛି ଖବର ପାଇବା ଲାଗି । ସେ ଭାରି ଟାଣୁଆ । ଢେଙ୍କାନାଳରେ ମଡା ଥାନା ଆକ୍ରମଣ କରି ପଳାତକ ହୋଇଥାଏ । ସେ କାହୁଁ ଭାଙ୍ଗନ୍ତା ।

ମୋର ଘରୁ କିନ୍ତୁ ସବୁ ଜିନିଷ ତାଙ୍କୁ ମିଳିଗଲା । ବାସ୍ତବିକ ଆମର ଏ ହାଇଡ଼ ଆଉଟରେ ସବୁ ରହିଥିଲା । ଲିଥୋ ମେସିନ୍, କିଛି ବୁଲେଟିନ୍, କେତେକ ଚିଠି ଓ ଅଜଣା ଠିକଣା ବହୁ ଲୋକଙ୍କର; ପୁଣି ମୋ ହାତଲେଖା ଅଧା ବୁଲେଟିନ ।

ଏତକ ପାଇ ସେମାନେ ଖୁସି । ରେନର ସାହେବ ମୋ ସାଙ୍ଗରେ ଟିକିଏ ଯୁକ୍ତି ବାଢ଼ି ବସିଲେ । ମୁଁ ଯେପରି ମାନସିକ ଉତ୍ତେଜନା ଭିତରେ ଥାଏ, ଅନୁମାନ କରିହବ । ମୁଁ ବିଶେଷ କଥା ନ ବଢ଼ାଇ ତାଙ୍କୁ ଯେତେବେଳେ ସିଧା ଶୁଣାଇ ଦେଲି । ମହାତ୍ମା ଗାନ୍ଧୀ ଇଂରେଜଙ୍କୁ ଏ ଦେଶ ଛାଡ଼ିଯିବା ନିମନ୍ତେ ଡ଼ାକରା ଦେଇଥିଲେ; ଆଉ ତୁମେ ଆସି ମତେ ଗିରଫ କରୁଛ— ଲଜ ମାତ୍ରୁ ନାହିଁ । ଏତିକିରେ ସେ ତମ୍ପ ସାପ ପରି ଲମ୍ଫମାରି ହୁକୁମ ଦେଲେ ନେଇ ଯାଅ । ମତେ ସାଙ୍ଗେ ସାଙ୍ଗେ ନେଇ ଯିବାର ଆଉ ଏକ କାରଣ ହେଲା ସେଠି ବହୁ ଲୋକ ଠୁଳ ଦେଖି ।

ପାଖ ପଡ଼ିଶାଙ୍କୁ ଅଜଣା ଥିଲା ଏଠାରେ ଏପରି ଏକ ଗୁପ୍ତ ଆନ୍ଦୋଳନର କେନ୍ଦ୍ର ରହିଛି ବୋଲି । ସଶସ୍ତ୍ର ପୁଲିସ ଆସି ଘେରଉ କରିବା ବେଳୁ ସେମାନେ ଆସି ବହୁ ସଂଖ୍ୟାରେ ଜମି ଗଲେ । ଅତି କୌତୁହଳି ହୋଇ ଏକତ୍ର ସେକଡ ହେଉ ଥାଆନ୍ତି । ଆଗରୁ ମୁଁ ଏକ ବୁଲେଟିନ୍‌ରେ ଲେଖି ଦେଇଥାଏ ପୁଲିସ ଘେରଉ ଦେଖିଲେ ତାଙ୍କୁ କିପରି ଅହିଂସ ଉପାୟରେ କାବୁ କରି ନିଆଯିବ । ତାହାଛଡ଼ା ସଶସ୍ତ୍ର ଆକ୍ରମଣର ଆଶଙ୍କା ପୁଲିସ ମନରେ ବି ଥାଏ । ତେଣୁ କାଳ ବିଳମ୍ବ ନ କରି ମତେ ବନ୍ଧୁକଧାରୀଙ୍କ ମେଳରେ ଏକ ବସ୍‌ରେ ବସାଇ ଦିଆଗଲା । ଆଗରେ ପଛରେ ଦୁଇଟି ବସ୍‌ରେ ସଶସ୍ତ୍ର ପୁଲିସ ରହିଲେ । ଅଧିକା ପୁଲିସ ମାର୍ଚ୍ଚ କରି ଆସିଲେ । ଅଲିସା ବଜାରରୁ ଲାଲବାଗ୍ ଥାନା ପର୍ଯ୍ୟନ୍ତ ଏକ ଅପୂର୍ବ ସଶସ୍ତ୍ର ପ୍ରହରୀଙ୍କ ମାର୍ଚ୍ଚ । ଦ୍ୱିବେଦୀ ଧରା ପଡ଼ିଲା ବୋଲି ଗ୍ରରିଆଡ଼େ ହୁରି ହୋଇଗଲା । ଲାଲବାଗରେ ପହଂଚିଲା ବେଳକୁ ସେଠି ବି ଲୋକ ଗହଳି । ମାଜିଷ୍ଟ୍ରେଟ ଆସିଲେ । ଲୋକ ଭିଡ଼କୁ ବେଆଇନ ଘୋଷଣା କଲେ– ଲୋକଙ୍କୁ ଘଉଡ଼ାଇବା ପାଇଁ ଲାଠିଚ୍ଚାଳନା ହେଲା । ଥାନା ଭିତରେ ମୂତଗନ୍ଧ ଭରା ଛୋଟ ଗାରଦରେ ମତେ ରାତି କଟାଇବାକୁ ପଡ଼ିଲା । ଗନ୍ଧ ସାଙ୍ଗକୁ କଟକ ମଶା । ଶୋଇବାର ଜ୍ଞ କାହିଁ ।

ଅନ୍ୟ ପୁଲିସଙ୍କ ଛଡ଼ା ଦୁଇଜଣ ଖାସ ଜଗୁଆଳି ନିଯୁକ୍ତ ହେଲେ । ସକାଳୁ ଉଠି ପାଇଖାନା ଗଲା ବେଳକୁ ଦୁଇ ପାଖରେ ଦୁଇଜଣ ସଶସ୍ତ୍ର ପ୍ରହରୀ ଛିଡ଼ା ହୁଅନ୍ତି । ଆଜି କାଲି ପରି ସେପ୍‌ଟି ପାଇଖାନା ହୋଇ ନ ଥାଏ ।

ଝୋଡା ଏକ ପ୍ରକାର ଖୋଲରେ ପଡ଼ୁଥିଲା । ଦୁର୍ଗନ୍ଧ ହେବା ସ୍ୱାଭାବିକ । ଜଗୁଆଳୀ-ମାନେ କଥାବାର୍ତ୍ତା ହୁଅନ୍ତି– ବାବୁ କଣ ପଳାଇ ଯିବେ ଯେ, ଏମାନଙ୍କର ଏତେ ଡର । ଆମକୁ ବାସନା ଜାଗାରେ ଛିଡା କରାଇଛନ୍ତି । ମୁଁ ତାଙ୍କୁ ପାଇଖାନା ଭିତରୁ ଆଶ୍ୱାସନା ଦେଲି । ସେମାନେ ଦୁଇ ଜଣ ଯାକ ପାଇଖାନା ପାଖ ଦୁଆର ମୁହଁରେ ଛିଡାହୋଇ ରହିଲେ । ଖାଲି ଡ଼ରୁ ଥାଆନ୍ତି କାଳେ କେହି ଅଫିସର ଆସିଯିବ ବୋଲି । ଏଇ ଗିରଫ ପରେ ସରକାର ମନରେ ଏପରି କୋକୁଆ ଭୟ ପଶିଲା ଯେ ଜେଲଖାନା ଭିତରେ ବି ଦୁଇ ଦୁଇ ଜଣ ସ୍ପେଶାଲ ଗାର୍ଡ ରାତି ଦିନ ଜଗି ରହିଲେ । କିନ୍ତୁ କଟକ ଜେଲରେ ସେଥରକ ମତେ ମୋଟେ ଦୁଇ ଦିନ ରଖି ବ୍ରହ୍ମପୁରକୁ ସିକ୍ୟୁରିଟି ବନ୍ଦୀ ରୂପେ ପଠାଇ ଦେଲେ । ଅଗଷ୍ଟ ୬ ତାରିଖରୁ ଯେଉଁ ଓ୍ୱାରଣ୍ଟ ବାହାରି ଥିଲା ତାରି ବଳରେ । ଏଣେ ପ୍ରଦେଶ ସାରା ଧରପଗଡ ଓ ଖାନତଲାସ ଲାଗିଗଲା । ବହୁ ଲୋକ ଗିରଫ ହେଲେ । କଟକ ଜେଲ ଏକ୍ସରକମ ଭରି ହୋଇଗଲା ଦ୍ୱିବେଦୀ କେସ୍‌ରେ । ଆଗରୁ ଥିବା ବନ୍ଦିମାନେ କଅଣ କେମିତି ହେଉଥିଲା ଜାଣିବା ପାଇଁ ଏମାନଙ୍କୁ ଗୁଡାଇ ତୁଡ଼ାଇ ପଚାରନ୍ତି । କିନ୍ତୁ ସେମାନେ ବା କଅଣ ଜାଣି ଥାଆନ୍ତି । ସେଥିରୁ କେତେକ କହନ୍ତି ଆମେ ଦ୍ୱିବେଦୀଙ୍କୁ ଦେଖି ବି ନାହୁଁ । କଥାଟି ସତ୍ୟ ।

–:–

[ ୩୯ ]

# ପୁଣି ବ୍ରହ୍ମପୁର ଜେଲ

ଗିରଫ ପରେ ମତେ ଗୋଟାଏ ରାତି ବି କଟକ ଜେଲରେ ରଖାଗଲା ନାହିଁ । ସେହି ରାତିରେ ମେଲ ଗାଡ଼ିରେ ପୁଲିସ ଏସ୍କର୍ଟ ବ୍ରହ୍ମପୁର ଜେଲକୁ ନେଇ ଆସିଲେ ସିକ୍ୟୁରିଟି ବନ୍ଦୀ ଭାବରେ । ସିକ୍ୟୁରିଟି ବନ୍ଦୀ ହୋଇ ଥିବାରୁ ଏଥର ହାତକଡ଼ି ପଡ଼ି ନ ଥିଲା ।

ଏଥରକ ବ୍ରହ୍ମପୁର ଜେଲଟି ଲୋକାରଣ୍ୟ ହୋଇଥାଏ । ବହୁତ ନୂଆ ନୂଆ ଘର ତିଆରି ହୋଇଥାଏ । ଓଡ଼ିଶାରେ ଯେତେ ରାଜବନ୍ଦୀ ୧୯୪୨ ଆନ୍ଦୋଳନରେ ଗିରଫ ହୋଇଥିଲେ, ପ୍ରାୟ ସମସ୍ତେ ସେଠାରେ ରହୁଥିଲେ । ଜେଲ ବନ୍ଧନ ବିଶେଷ କିଛି ନଥିଲା କହିଲେ ଚଳେ । ରାତିରେ ବନ୍ଦ କରା ଯାଉଥିଲା କି ନାହିଁ ମୋର ମନେପଡ଼ୁ ନାହିଁ । ଯେଉଁଠି ରହୁଥିଲେ, ସେଠାରେ ଖୁସିରେ ଚଳ ପ୍ରଚଳ କରି ପାରୁଥିଲେ । ଜେଲ କର୍ତ୍ତୃପକ୍ଷଙ୍କ ମତିଗତି ବି ବଦଳି ଥିଲା । ଏକ ରାଜନୀତିକ ଅନିଶ୍ଚୟତା ଭିତରେ କେତେବେଳେ କଅଣ ଘଟିବ– ଏହି ବିଷୟଟି ତାଙ୍କ ମନକୁ ଘାରୁଥିଲା । ପୁଣି ଓଡ଼ିଶାର ପ୍ରାୟ ସମସ୍ତ ନେତୃସ୍ଥାନୀୟ ବ୍ୟକ୍ତି ରହି ଥିବାରୁ ତାଙ୍କ ଭିତରେ ଡ଼ର ଥାଏ କେତେବେଳେ ଯାଙ୍କ ଭିତରୁ କେହି ପୁଣି ମୁଖ୍ୟମନ୍ତ୍ରୀ ବା ମନ୍ତ୍ରୀ ହୋଇ ହୁଏତ ଆସିଯିବେ । ସିକ୍ୟୁରିଟି ବନ୍ଦୀ ହୋଇ ଥିବାରୁ କାରାଦଣ୍ଡ ଭୋଗୁଥିବା ବନ୍ଦୀଙ୍କ ଠାରୁ ଏମାନଙ୍କୁ ଅଧିକ ସୁଯୋଗ ମିଳୁଥିଲା । ଏକ ପ୍ରକାର ଯୁଦ୍ଧବନ୍ଦୀ କହିଲେ ଚଳେ ।

ହରେକୃଷ୍ଣ ମହତାବ ବମ୍ବେ ଠାରେ ୧୯୪୨ ଅଗଷ୍ଟ ୮ ରାତିରେ ଗିରଫ ହୋଇ ବଡ଼ ନେତାମାନଙ୍କ ସହିତ ଯାଇ ଅହମଦ ନଗର ଦୁର୍ଗରେ ରହିଥିଲେ । ତାଙ୍କ ଛଡ଼ା ବାକି ସବୁ ଗୋଟିଆ ଗୋଟି ହୋଇ ବନ୍ଦୀ ହୋଇ ଆସିଲେ ବ୍ରହ୍ମପୁରକୁ । କେତେକଙ୍କ ନାମ ଲେଖି ଦେଉଛି ପାଠକଙ୍କ କୌତୁହଳ ମେଣ୍ଟାଇବା ନିମନ୍ତେ । ସମସ୍ତିଙ୍କ ନାମ ଲେଖିଲେ ବଡ ପୁସ୍ତକଟିରେ ବି ଅଣ୍ଟିବ ନାହିଁ । ଏଠାରେ ଥିଲେ ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାସ, ବିଶ୍ୱନାଥ ଦାଶ, ଭଗିରଥୀ ମହାପାତ୍ର, ସାରଙ୍ଗଧର ଦାସ, ରାଧାନାଥ ରଥ, ବ୍ରଜ ମୋହନ ସିଂହ, ବିରଜା ପ୍ରସାଦ ରାୟ, ବିନୋଦ କାନୁନଗୋ, ମଧୁସୂଦନ ମହାପାତ୍ର, ଅମିତାଭ ମହାପାତ୍ର, ଅଧ୍ୟାପକ ସତ୍ୟବାଦୀ ମିଶ୍ର, ପଣ୍ଡିତ ପ୍ରାଣକୃଷ୍ଣ ପଢିହାରୀ, ଡାକ୍ତର ରବୀ ଘୋଷ ଏବଂ ଅସ୍ତୁମାରୀ ଅନ୍ୟ ବନ୍ଦୀ ସାଥି । ଏଠିକାର ଚିହ୍ନଟି ପାଟନା କ୍ୟାମ୍ପ ଜେଲ ପରି ଏକ ରାଜନୀତିକ ଶିବିରରେ ପରିଣତ ହୋଇଥିଲା ।

ମୁଁ ପହଂଚିଲା ବେଳକୁ ଦେଖେ ସାଥି ବନ୍ଦୀମାନେ ଭିନ୍ନ ଭିନ୍ନ ଭାବରେ ରହୁଛନ୍ତି । ଜଣାଶୁଣା କଥା ଯେ ଏଥିରେ ଗାନ୍ଧୀବାଦୀ, ସମାଜବାଦୀ ଓ ସାମ୍ୟ-ବାଦୀ ଏବଂ ଆଉ କେତକ ନିଛକ କଂଗ୍ରେସବାଦୀ କିମ୍ବା କୌଣସି ଗୋଷ୍ଠି ଅନ୍ତର୍ଭୁକ୍ତ ହୋଇ ନ ଥିବା ଲୋକ ସବୁ ଥାଆନ୍ତି । ତାହାଛଡା ଅନେକଙ୍କର କେତେକଙ୍କ ପ୍ରତି ଶ୍ରଦ୍ଧା ଥାଏ; କେତେକ ଲୋକଙ୍କୁ ନାପସନ୍ଦ ମଧ୍ୟ କରନ୍ତି । ତେଣୁ ଏହି ଭାବରେ ନିଜ ନିଜର ସ୍ଥାନ ବାଛି ନେଇ ଥାଆନ୍ତି– ନିଜର ବ୍ୟକ୍ତିଗତ ରୁଚି ଅନୁସାରେ କିମ୍ବା ଦଳ ଓ ଗୋଷ୍ଠିଗତ ବିଚାରରେ । ଏଥରକ ଜେଲରେ ଯେଉଁମାନେ ଥିଲେ, ସେମାନେ ଅନିଶ୍ଚିତ କାଳ ପାଇଁ ରହିଯିବେ– ଏପରି ଏକ ଧାରଣା ମଧ୍ୟ ଥିଲା । କିନ୍ତୁ ସ୍ୱାଧୀନତାର ଆକାଙ୍କ୍ଷା ଏତେ ବେଶି ସେମାନଙ୍କ ମନରେ ଭରି ରହିଥିଲା ଯେ ମୁଁ ରହିଥିଲାବେଳେ କେହି ବିମର୍ଷ ହେବାର ଦେଖି ନାହିଁ । ଏଥିରେ ବହୁ ସଂଖ୍ୟାରେ ରହୁଥିଲେ ଯୁବକ, ଛାତ୍ର ଓ ଅନ୍ୟ ଶ୍ରେଣୀ । ସେମାନଙ୍କର ଅନିଶ୍ଚିତ ଭବିଷ୍ୟତ ନିମନ୍ତେ ଚିନ୍ତା ନ ଥିଲା । ଏହି ସବୁ କାରଣରୁ ନିଜ ଭବିଷ୍ୟତ ଛଡା ଭାରତର ଭବିଷ୍ୟତ ଚିନ୍ତା ସେମାନଙ୍କ ମନରେ ଖୁବ ପ୍ରବେଶ କରିଥିଲା ।

ଏଭଳି ଭବିଷ୍ୟତ ଚିନ୍ତା ମୁଖ୍ୟତଃ ରାଜନୀତିକ ଦୃଷ୍ଟିକୋଣରୁ କରା ଯାଉଥିଲା । ତେଣୁ ଜେଲ ଭିତରେ ଯାହା ଚର୍ଚ୍ଚା ହେଉଥିଲା, ସେଥିରେ ଏହି

କାରଣରୁ ଗୋଷ୍ଠି ସବୁ ଗଢି ଉଠୁଥିଲା । ଏହି ଗୋଷ୍ଠି ସବୁ ବିଭିନ୍ନ ଆଦର୍ଶ ଅହିଂସା ବା ହିଂସା ଓ ଦେଶର ଅନ୍ୟାନ୍ୟ ସମସ୍ୟା ସମ୍ବନ୍ଧରେ ଲେଖା ଲେଖି ପଢାପଢିରେ ନିବିଷ୍ଟ ରହୁଥିଲେ । କେତେକ ଘରି ଭିତରେ ପୁସ୍ତକ ଓ ପ୍ରବନ୍ଧ ଆଦି ମଧ୍ୟ ଲେଖି ବସିଥିଲେ । ପରସ୍ପର ଭିତରେ ଭୀଷଣ ଯୁକ୍ତିତର୍କ ବିବାଦ ମଧ୍ୟ ଲଗେ । ଏପରି ଉତ୍କଟ ଗୋଷ୍ଠି ବିବାଦ ଯୋଗୁଁ ଗୋଟିଏ ଘରେ ରହୁଥିବା ଏକ ଗୋଷ୍ଠିଙ୍କ ଓ୍ୟାର୍ଡରେ ନିଆଁ ବି ଲଗାଇ ଦିଆ ଯାଇଥିଲା । ଆହୁରି ଏକ ବିବାଦ ଉଠେ ବୁଢା, ମଝି ମଝିକିଆ ଓ ଟୋକାଙ୍କ ଭିତରେ । ଜେଲ କର୍ତ୍ତୃପକ୍ଷଙ୍କ ସଙ୍ଗେ ସହଯୋଗ ନା ଅସହଯୋଗ; ଏହା ବି ଏକ ବିବାଦୀୟ ବସ୍ତୁ ହୋଇଯାଏ । ଜେଲ ଭିତରେ ଥାଇ ସ୍ବାଧୀନତା ଦିବସରେ ଜାତୀୟ ପତାକା ଉତ୍ତୋଳନ ଘେନି ଏକ ତୁମୁଳ କାଣ୍ଡ ଘଟିଥିଲା । କର୍ତ୍ତୃପକ୍ଷଙ୍କ ବିରୋଧ ସତ୍ତ୍ୱେ ଦିବସ ପାଳିତ ହେଲା ଏବଂ କେତେକ ଆହତ ହେଲେ । ମୋଟାମୋଟି ବାୟୁମଣ୍ଡଳ ଏପରି ସରଗରମ ଥିଲା । ଯେ ଦେଖିବ ସେ ଏହା ଏକ ରାଜନୀତିକ ସଂଗ୍ରାମୀ ଛାଉଣୀ ନୁହେଁ ବୋଲି ଭୁଲ କରିବ ନାହିଁ । ଆଉ କେତେକ ଡରୁଆ ଥାଆନ୍ତି, ସେମାନେ ଚୁପ୍‌ଚାପ୍ ଗୁମ୍‌ମାରି ରହି ଥାଆନ୍ତି ।

ମୋର ରହଣି ଏତେ ଅଳ୍ପକାଳ ହେଲା ଯେ ମୁଁ ଏଭଳି ଜେଲ ସାଥି-ମାନଙ୍କ ସହ ଆସ୍ଥାନ ଜମାଇ ରହିବାର ସୁଯୋଗ ମିଳିଲା ନାହିଁ । ଅବଶ୍ୟ ମୁଁ ଏକ ଆକର୍ଷଣୀୟ ଜୀବ ହୋଇଥାଏ ସେମାନଙ୍କ ଚକ୍ଷୁରେ । ଦୁଇ ମାସରୁ ଅଧିକ କାଳ ଅଣ୍ଡରଗ୍ରାଉଣ୍ଡରେ ଥିଲି । ଆମର କାର୍ଯ୍ୟକଳାପ ଓ ଆନ୍ଦୋଳନ ସମ୍ବନ୍ଧରେ ନାନା ଗୁଜବ ପ୍ରଚରିତ ହୋଇଥିଲା । ସେ ବିଷୟରେ ବହୁ ଲୋକ ଜାଣିବା ଲାଗି ଆଗ୍ରହୀ ଥିଲେ । ବିଶେଷ ଭାବରେ ଯୁବକ ବନ୍ଧୁମାନେ ଭିତିରି କାହାଣୀ ଶୁଣିବା ଲାଗି ଏବଂ ତାଙ୍କ ମନର କୌତୂହଳ ଦୂର କରିବା ଲାଗି ବିଶେଷ ବ୍ୟଗ୍ରତା ଦେଖାଉ ଥିଲେ ।

ଏତିକିବେଳେ ଓଡ଼ିଶାରେ ବିଶେଷ ବାତ୍ୟା, ଝଡ, ତୋଫାନ ବହିଗଲା । ଉତ୍ତର ବାଲେଶ୍ୱର ଏକ ପ୍ରକାର ଖଣ୍ଡ ପ୍ରଳୟରେ ମାଟିରେ ମିଶିଗଲା । ଲୋକେ ହୀନିମାନ୍ ହୋଇଗଲେ— ପଥର ଭିକାରୀ ପାଲଟିଲେ । ଯୁଦ୍ଧ ବେଳ— ତାଙ୍କୁ ପଚାରୁଛି କିଏ ? ବାଲେଶ୍ୱର ଧାନ ଫସଲ ଲାଗି ପ୍ରସିଦ୍ଧ । କିନ୍ତୁ ଏପରି ଦୁର୍ଭାଗ୍ୟ

ଯେ ଲୋକେ ନିଜ ଅଞ୍ଚଳରେ ଧାନ ବ୍ୟବହାର କରିବାର ସୁଯୋଗ ପାଇଲେ ନାହିଁ । ଇସ୍ପାହାନୀ କମ୍ପାନୀ ଧାନ ଗ୍ରଉଳ ବଙ୍ଗଳାକୁ ରପ୍ତାନୀ କରିଦେଲେ । ମିଳିତ ମନ୍ତ୍ରୀ ମଣ୍ଡଳ ଏପରି ନିକମ୍ମା ଥିଲା ଯେ ତାକୁ ରୋକିପାରିଲା ନାହିଁ । ଘୋର ଦୁର୍ଦ୍ଦଶାରେ ଲୋକେ ଦିନ କାଟିଲେ ।

ଏହି ଅବସ୍ଥାରେ ବ୍ରହ୍ମପୁର ଜେଲ ପ୍ରାଚୀର ଖଣ୍ଡେ ଭାଙ୍ଗି ପଡ଼ିଲା । ପାଚେରୀ ଭୁଷୁଡ଼ି ପଡ଼ିବାରୁ ପ୍ରଚଣ୍ଡ ଶବ୍ଦ ହେଲା । ସବୁ ଦଉଡ଼ି ଯାଇ ସେ ଦୃଶ୍ୟ ଦେଖୁ ଥାଆନ୍ତି । କିନ୍ତୁ ଏପରି ବର୍ଷା ଓ ପବନ ଯେ କିଛି ଦିଶୁ ନ ଥାଏ । ଗୋଟିଏ କଥା ସ୍ପଷ୍ଟ ଜଣା ପଡ଼ିଲା ଯେ ସେଠି କେହି ଜଗୁଆଳୀ ନାହାଁନ୍ତି— ତାଙ୍କୁ ଜଣାଥିଲା କି ନା ସନ୍ଦେହ । ଏଭଳି ମଉକା ଦେଖି ମୁଁ ପଳାଇ ଯିବାର ଯୋଜନା କଲି । ଯିବା ଲାଗି ପ୍ରସ୍ତୁତ ହେଲି । ରବି ଘୋଷଙ୍କ ପାଖରେ ଗୋଟିଏ କୋଟ ଥାଏ; ତାହା ସଂଗ୍ରହ କଲି । ୫ଟି ଟଙ୍କା ମଧ୍ୟ । କିନ୍ତୁ ପଳାଇ ବାହାରେ ଅନ୍ତତଃ ଟ୍ରେନ ବେଳ ପର୍ଯ୍ୟନ୍ତ କେଉଁଠି ଲୁଚି ଅପେକ୍ଷା କରିବି ସେଥିର କିଛି ବାଟ ଖୋଜି ପାଇଲି ନାହିଁ । ମୋର ନିକଟତମ ବନ୍ଧୁମାନେ ମଧ୍ୟ ପରାମର୍ଶ ଦେଲେ ସାଙ୍ଗେ ସାଙ୍ଗେ ପୁଲିସ ତ ଲାଗିଯିବେ । ଯଦି ବ୍ରହ୍ମପୁର ସହର ଭିତରେ ହିଁ ଧରା ପଡ଼ିଯିବ, ତେବେ ଏପରି ପଳାୟନର କିଛି ମୂଲ୍ୟ ନାହିଁ । କିନ୍ତୁ ଏହା ଭିତରେ ବନ୍ଦୀଙ୍କ ମହଲରେ ପ୍ରଚାର ହୋଇ ଯାଇଥାଏ ଯେ ମୁଁ ପଳାଇ ଯାଇଛି । ତହିଁ ଆରଦିନ ସକାଳୁ ଆଶ୍ଚର୍ଯ୍ୟ ହରିହର ଦାସ ମତେ ଦେଖି ବିସ୍ମିତ ହେଲେ ଏବଂ କହିଲେ "କଣ ରହିଗଲ କି !"

卐

[ ୪୦ ]

## ବନ୍ଦୀର ଲାଗି ଫେଏରେ କଣ୍ଟକ

ଅଳପ ଦିନ ରହିଛି । ଫେର ଡ଼ାକର ଆସିଲା କଟକ ବଦଳି । ମୁଁ ଅଗଷ୍ଟ ୬ ତାରିଖରେ ବାହାରି ଥିବା ଓ୍ୱାରେଣ୍ଟ ଅନୁସାରେ ସିକ୍ୟୁରିଟି ବନ୍ଦୀ ଥିଲି । ଏବେ ହେଲି ବିଗ୍ରହଧୀନ ଅର୍ଥାତ୍ ଅଣ୍ଡର ଟ୍ରାୟଲ ବନ୍ଦୀ । ମତେ ନେଇ ସମସ୍ତଙ୍କ ସାଙ୍ଗରେ ନ ରଖି ଏକ ସେଲ୍‌ରେ ରଖାଗଲା । ସେଲ୍ ବୋଇଲେ ଆଉ କିଛି ନୁହେଁ; ଏକ ନିର୍ଜନ କୋଠରୀ; ଜଣିଏ ରହିବା ଲାଗି ବ୍ୟବସ୍ଥା । କଟକ ଜେଲରେ ଆଗରୁ କେତୋଟି ଏକ ଘରକିଆ ସେଲ ରହିଥିଲା । ସେଥିରେ ସାଧାରଣତଃ ଫାସି ଆସାମୀ ରହୁଥିଲେ । ନୂଆ କରି କେତେକ କୋଠରୀ ତିଆରି ହୋଇଥାଏ । ସେଗୁଡ଼ିକ ସାଧାରଣ ଓ୍ୟାର୍ଡମାନଙ୍କ ଠାରୁ ଦୂର ନ ଥିଲା । ଅନୁମତି ନେଇ ଅନ୍ୟମାନଙ୍କ ପାଖକୁ ଯାଇ ହେଉଥିଲା ।

ସେଥିରୁ ଗୋଟିଏ ସେଲ୍‌ରେ ଫ୍ରିମ୍‌ଗେଲ୍ ବୋଲି ଜଣେ ଆନ୍ତର୍ଜାତିକ ଦସ୍ୟୁ ମୁଁ ପହଂଚିଲା ବେଳକୁ ଆସି ରହିଥିଲେ । ତାହାରି ପାଖ କମରରେ ମତେ ରଖାଗଲା । ଫରକ ଏତିକି ଯେ ସେ ଗଡିକ ବନ୍ଦ ରହୁଥିଲେ— ଦିନବେଳେ ସେ ୪।୫ଟି ଘରକୁ ଘେରି ଯେଉଁ ପାଚେରୀ ଭିତରେ ଚକଡା ଥାଏ, ତହିଁ ଭିତରେ ବୁଲବୁଲି କରି ପାରୁଥିଲେ । ମାତ୍ର ମତେ କଡା ପହରା ଭିତରେ ରଖାଗଲା । ସମସ୍ତଙ୍କ ଲାଗି ଜଣେ ଓ୍ୱାର୍ଡର ଜଗୁଆଳୀ ଥାଏ । ମତେ ଜଗିବା ନିମନ୍ତେ ଏକ ଖାସ ପହରାବାଲା ରହିଲା । ସେ ମତେ ମୋ କୋଠରୀ ଦୁଆରମୁହଁ ବାରଣ୍ଡା ଛଡା ଆଉ ଅନ୍ୟ ଯାଗାକୁ ଛାଡ଼ିଦିଏ ନାହିଁ । ପରିସ୍ରା ପାଇଖାନା ଗଲେ ବି

ଛଡି ଧରି ପଢ଼ୁକୁ ଲାଗି ଛିଡ଼ା ହୋଇ ରହେ । କି ମାନସିକ ବିରକ୍ତିକର ବ୍ୟାପାର ! ଜେଲ କର୍ତ୍ତୃପକ୍ଷଙ୍କର ଅନୁମତି ନେଇ ଓ୍ୟାର୍ଡକୁ ଗଲେ ସେ ପଶ୍ଚାତ୍‌ଧାବନ କରେ ।

ଫ୍ରିମ୍‌ରୋଜ୍ ଜଣେ ମଜାଦାର ଲୋକ । ଘରତର ବହୁ ଯାଗାରେ ବହୁ କେସ୍‌ରେ ସେ ସଂପୃକ୍ତ । ଗୋଟିକ ପରେ ଗୋଟିଏ ଯାଗାକୁ ଯାଉଛି । ସେ କହେ ମୋ ମକଦ୍ଦମା ସହଜରେ ଫଇସଲ ହେବ ନାହିଁ । ଏମିତି ଯାଉ ଯାଉ କେତେ-ବେଳେ ହେଲେ କେଉଁଠି ଡ଼ିଆଁମାରି ପଳାଇ ଯିବି । ସେ ଓ୍ୟାର୍ଡରମାନଙ୍କୁ ଟଙ୍କା ଦେଇ ଖୁବ ମଉଜ କରେ । ଓଡ଼ିଆରେ ଯେତେକ ଅଶ୍ଳୀଳ ଶବ୍ଦ ଓ ବାକ୍ୟ ଥାଏ, ତାଙ୍କଠୁ ଶିଖେ । କହେ ମୁଁ କଚେରୀରେ ଏପରି ସ୍ଲ୍ୟାଙ୍ଗ୍ କଥା କହିଲେ– ହାକିମ ଚିଡ଼ିଯିବ; ଏମିତି ମୋ ଠାରୁ ଖୋଲା କୋର୍ଟରେ ଝିଅ ବୋହୁଙ୍କ ଗାଳି ଫଜିତ୍ ଶୁଣି ପାରିବ ନାହିଁ । ହୁଏତ ଭିନ୍ନ ତାରିଖ କରିବ; ନଚେତ ଖଲାସ କରିଦବ । ସେ କେତେଦୂର ଏହି କୌଶଳରେ ସଫଳ ହେଲା ମତେ ଜଣା ନାହିଁ ।

ମତେ ବ୍ରହ୍ମପୁର ପଠାଇ ଦେବା ଭିତରେ ମୋ ଠାରୁ ମୋ ଗୋପନ ନିବାସରୁ ଯେଉଁ ସବୁ କାଗଜପତ୍ର ପାଇଲେ, ସେଥିରେ ଅନ୍ୟ କାଗଜ ଭିତରେ ମୋର ଦୁର୍ଭାଗ୍ୟକୁ ପାଇଗଲେ ଗୁଡ଼ିଏ ଠିକଣା । ସେହି ଗୁପ୍ତ ଠିକଣାରେ ମୁଁ ବିଭିନ୍ନ ଶାଖାଗୁଡ଼ିକୁ ବୁଲେଟିନ୍ ଓ ଚିଠି ପତ୍ର ପଠାଉଥିଲି । ପୁଲିସ ମତେ ଯେତେବେଳେ ଘେରିଗଲେ, ମୁଁ ଠିକଣା କାଗଜଟିକି ଚିରି ଟିକ୍‌ନିକ୍ କରି ବାରଣ୍ଡାରେ ଥିବା କୂଅ ଭିତରକୁ ଫିଙ୍ଗି ଦେଲି । ମାତ୍ର ମନ୍ଦ କପାଳକୁ ସେଗୁଡ଼ିକ ଭସି ଉଠିଲା । ପୁଲିସ ଡ଼େଇଁପଡ଼ି କୂଅରୁ ଉଦ୍ଧାର କଲେ । ଯୋଡ଼ି ଯୋଡ଼ି ନାମ ବାହାର କଲେ । ଏଥି-ଭିତରେ ଏମିତି ପ୍ରାୟ ୮୬ ଲୋକଙ୍କୁ ଦ୍ୱିବେଦୀ କେସ୍‌ରେ ଗିରଫ କରି ଆଣିଲେ । ସେମାନଙ୍କୁ ସମସ୍ତଙ୍କୁ କଟକ ଜେଲରେ ରଖା ଯାଇଥାଏ । କେବଳ ନନ୍ଦି ସାହୁ ଓ ତାଙ୍କ ପୁତ୍ର ମଥୁରାନନ୍ଦ ସାହୁଙ୍କୁ ସିକ୍ୟୁରିଟି ବନ୍ଦୀ ରୂପେ ବ୍ରହ୍ମପୁରକୁ ପଠାଇ ଦେଇ ଥାଆନ୍ତି । ଏଥି ସଂକ୍ରାନ୍ତରେ ପ୍ରଦେଶ ସାରା ବିଭିନ୍ନ ସ୍ଥାନ ଖାନତଲାସ କରିଥିଲେ । ପ୍ରମାଣ କରିବା ନିମନ୍ତେ ସେ ସବୁ ସ୍ଥାନରୁ ଆମର ଏଠାରୁ ପଠା ଯାଇଥିବା ବୁଲେଟିନ୍ ବି ମିଳିଥିଲା ।

କଟକ ଜେଲରେ ଆଗରୁ ବହୁ ରାଜବନ୍ଦୀ ରହି ଥାଆନ୍ତି । ସେମାନଙ୍କ ଭିତରୁ କାହାରି କାହାରିକି ୨୨ ବର୍ଷ, ୩୦ ବର୍ଷ ଓ ୪୦ ବର୍ଷ ପର୍ଯ୍ୟନ୍ତ ସଶ୍ରମ

କାଗଦଣ୍ଡ ମିଳିଥାଏ । ଘରପୋଡ଼ି, ତାରକଟା, ଥାନା ପୋଡ଼ା, ସରକାରୀ କର୍ମଚାରୀଙ୍କ କାର୍ଯ୍ୟରେ ବାଧା ବା ହତ୍ୟା କରିବାର ଉଦ୍ୟମ ଆଦି ଅପରାଧରେ ଦଣ୍ଡିତ ହୋଇ ଥାଆନ୍ତି । ସେମାନଙ୍କ ଭିତରେ ଥାଆନ୍ତି ବଡ଼ଚଣାର କୃଷ୍ଣଚନ୍ଦ୍ର ରାଉତ ଓ ଏରସମାର ଗୌରୀଶ୍ୟାମ ନାୟକ । ସେହିମାନଙ୍କ ସାଥିରେ ମୋ କେସ୍‌ରେ ଧରା ହୋଇଥିବା ବନ୍ଦୀମାନଙ୍କୁ ରଖିବା ଯୋଗୁଁ ଗୋଟିଏ ସୁବିଧା ହେଲା । ଅନେକେ ଥିଲେ ଅତି ନିରୀହ; ଛୋଟ ଦୋକାନ ବା ବ୍ୟବସାୟ କରୁଥିଲେ । ରାଜନୀତି ବା ଆମ ଆନ୍ଦୋଳନ ସହ କୌଣସି ସଂପର୍କ ନ ଥିଲା । କେବେ ବି ରହନ୍ତା ନାହିଁ । ଏପରି ହରବର ହେବାକୁ ପଡ଼ିବ ଜଣାଥିଲେ, ଚିଠିପତ୍ର ଗୁଡ଼ିକ ପାଇ ଯାହାକୁ ଦେଉଥିଲେ, ତାକୁ ହୁଏତ ଦେଉ ନ ଥାନ୍ତେ । ଚିନ୍ତାରେ ପଡ଼ିବା କଥା । କିନ୍ତୁ ଜେଲର ବାୟୁମଣ୍ଡଳ ସେମାନଙ୍କୁ ସାହାଯ୍ୟ କଲା । ହେମତ ଦେଲା । କେହି ଜଣେ ହେଲେ କ୍ଷମା ମାଗି ଥିବାର ମତେ ଜଣା ନାହିଁ ।

ମୁଁ ଏଇଟାକୁ ବଡ ସମ୍ମାନ ବୋଲି ବିଚାରେ । ଆମ କାର୍ଯ୍ୟର କିପରି ପ୍ରଭାବ ପଡ଼ିଛି ଏବଂ ଦେଶପ୍ରୀତି କେମିତି ଏପରି ଲୋକଙ୍କ ମଧ୍ୟରେ ବି ପ୍ରବେଶ କରିଛି ତାହାର ଏହା ଏକ ଦୃଷ୍ଟାନ୍ତ । ସେମାନଙ୍କୁ କୌଣସି ପ୍ରକାର ଫୌଜଦାରୀ ଦଫାରେ ପକାଇ ଅଳ୍ପଦିନ ଲାଗି ଜେଲରେ ରଖାଗଲା । କାରଣ ତାଙ୍କ ବିରୁଦ୍ଧରେ କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ନ ଥିଲା । ଏ ବନ୍ଧୁମାନଙ୍କ ଭିତରୁ ଅନେକ ମୃତ । ଯେଉଁମାନେ ଜୀବିତ ଅଛନ୍ତି, ସେମାନେ ପ୍ରାୟ ରାଜନୀତିରେ ନାହାଁନ୍ତି । ବୃଦ୍ଧ ହୋଇ ଗଲେଣି; ମାତ୍ର ମତେ କେବେ କେଉଁଠି ଦେଖିଲେ କୃତକୃତ୍ୟ ହୋଇ ଯାଆନ୍ତି । ମୁଁ ଏବେ ଦୂରରେ ଆସି ରାଉରକେଲାରେ ରହୁଛି ବୋଲି ସିନା, ନଚେତ୍ ଭୁବନେଶ୍ୱରରେ ମୋ ରହୁଥିବା ବେଳେ କେହି କେହି ଆସି ସାକ୍ଷାତ୍ କରି ଯାଉଥିଲେ ।

୮୬।୮୭ଙ୍କ ଭିତରୁ ମୋଟ ୧୬ ଜଣଙ୍କୁ ବାଛିଲେ ବିଚାର ଲାଗି । ଏଥିରେ ଆସାମୀରୂପେ ରହିଲେ– (୧) ମୁଁ ସୁରେନ୍ଦ୍ରନାଥ ଦ୍ୱିବେଦୀ (୨) ଗୌରଚନ୍ଦ୍ର ଦାସ (୩) ପ୍ୟାରୀମୋହନ ଦାସ (୪) ରମାକାନ୍ତ ଦାସ (୫) ଦୁଃଖୀଶ୍ୟାମ ପାଢ଼ୀ– ଏ ସମସ୍ତେ ବାଲେଶ୍ୱରର (୬) ବିଶ୍ୱନାଥ ପରିଡ଼ା– ଜଣେ ବହୁ ପୁରାତନ କଂଗ୍ରେସ କର୍ମୀ (୭) ଯଦୁମଣି ଯେନା– ଏମାନେ ପୁରୀ ଜିଲ୍ଲାର (୮) ଘନଶ୍ୟାମ ପଟନାୟକ– ଗଞ୍ଜାମର ପୁରାତନ କଂଗ୍ରେସ କର୍ମୀ (୯) ନବଘନ ବେହେରା–

ଢେଙ୍କାନାଳର (୧୦) ଭୈରବ ଚନ୍ଦ୍ର ମହାନ୍ତି (୧୧) ଲୋକନାଥ ମିଶ୍ର (୧୨) ବାଙ୍କ ବିହାରୀ ଦାସ (୧୩) ନିଶାମଣି ଖୁଣ୍ଟିଆ (୧୪) ନାରାୟଣ ପ୍ରସାଦ ମହାନ୍ତି (୧୫) ନରସିଂହ ଚରଣ ମହାନ୍ତି ଏବଂ (୧୬) ଶଚ୍ଚିଦାନନ୍ଦ ମିଶ୍ର ।

ଏମାନଙ୍କ ଭିତରୁ ଗୌର ବାବୁ, ପ୍ୟାରୀ ମୋହନ, ଦୁଃଖୀଶ୍ୟାମ, ବିଶ୍ୱନାଥ ପରିଡ଼ା, ଲୋକନାଥ ମିଶ୍ର, ଘନଶ୍ୟାମ ପଟନାୟକ ଓ ନରସିଂହ ଚରଣ ମହାନ୍ତିଙ୍କୁ ଛାଡ଼ିଦେଲେ ବାକୀ ସମସ୍ତେ ନୂଆ । ଏମାନେ ପୂର୍ବରୁ କଂଗ୍ରେସ କର୍ମୀ ହୋଇ ରହିଥିଲେ ଓ ଜେଲ ବରଣ ମଧ୍ୟ କରିଥିଲେ । ଦୁଃଖର ବିଷୟ ଯେ ଏହି ସାଥିଙ୍କ ଭିତରୁ ଗୌର ଚନ୍ଦ୍ର ଦାସ, ରମାକାନ୍ତ ଦାସ, ପ୍ୟାରୀ ମୋହନ ଦାସ, ବିଶ୍ୱନାଥ ପରିଡ଼ା, ଘନଶ୍ୟାମ ପଟନାୟକ, ଭୈରବ ଚନ୍ଦ୍ର ମହାନ୍ତି ଓ ଲୋକନାଥ ମିଶ୍ରଙ୍କର ମୃତ୍ୟୁ ହୋଇ ଯାଇଛି ।

ମକଦ୍ଦମାର ଶେଷ ଚାର୍ଜସିଟ ଦାଖଲ ବେଳକୁ ଯଦୁମଣି ଯେନା ଓ ଶଚ୍ଚିଦାନନ୍ଦ ମିଶ୍ରଙ୍କୁ ଛାଡ଼ି ଦିଆଗଲା । ବାକୀ ଆମେ ରହିଲୁ ୧୪ ଜଣ ଏବଂ ଆମର ମକଦ୍ଦମାର ନାମ ହେଲା– "ଓଡ଼ିଶା ଷଡ଼ଯନ୍ତ୍ର ମକଦ୍ଦମା" ।

卐

[ ୪୧ ]

## ଓଡ଼ିଶା ଷଡ଼ଯନ୍ତ୍ର ମକଦ୍ଦମା

ଅଗଷ୍ଟ ବିପ୍ଳବ ତ ଭାରତରେ ପ୍ରକୃତରେ ପ୍ରଳୟ ସୃଷ୍ଟି କରିଥିଲା । ସ୍ୱାଧୀନତା ପ୍ରାପ୍ତି ଏଥି ଯୋଗୁଁ ନିକଟ ହୋଇଗଲା । ଅନ୍ୟାନ୍ୟ ପ୍ରଦେଶରେ ଯାହା ଯେପରି ଘଟିଥିଲା, ତାହା ତୁଳନାରେ ଆମର ଓଡ଼ିଶାରେ ସମ ପରିମାଣରେ ହୋଇଥିଲା ବୋଲି କୁହା ଯାଇ ପାରିବ ନାହିଁ । ମାତ୍ର ଦୁଇମାସ ଖୁବ ତୀବ୍ରତା ଧରିଥିଲା । ନେସନାଲ ଆର୍କାଇଭସ୍‌ରେ ଯେଉଁ ଗୁପ୍ତ କାଗଜ ପତ୍ର ରହିଛି, ତାହା ଘାଣ୍ଟିଲେ ଦେଖିବାକୁ ମିଳେ ଯେ, ବ୍ରିଟିଶ ସରକାର ଏକ ପ୍ରକାର ଆତଙ୍କିତ ହୋଇ ପଡ଼ିଥିଲେ । ଗୋଟିଏ ରିପୋର୍ଟରେ ବର୍ଣ୍ଣିତ ଅଛି ମୋର ନିବେଦନରେ ଓଡ଼ିଶାରେ ଲୋକେ ଖୁଚୁରା ପଇସା ଲୁଚାଇ ରଖିବାରୁ ଏକ ସଂକଟ ଉପୁଜି ଥିଲା । ଆଉ ଗୋଟିଏ ରିପୋର୍ଟରେ ଆମେ ଯେଉଁଳି ମିଲିଟରୀ ଟ୍ରେନ ଓଲଟାଇ ଦେବାର ଯୋଜନା କରିଥିଲୁ, ସେ ସଂବାଦରେ ବହୁତ ଘବଡାଇ ପଡ଼ିଥିଲେ । ଅନ୍ୟ ମାନଙ୍କ ତୁଳନାରେ ଆମର କାର୍ଯ୍ୟ ଖୁବ କୃତିତ୍ୱପୂର୍ଣ୍ଣ ନ ହୋଇଥିଲେ ସୁଦ୍ଧା ବ୍ରିଟିଶ ସରକାରର ଯେ କୋକୁଆ ଭୟ ପଶିଥିଲା ଏହା ଏବେ ଜାଣି ଆମେ ଆନନ୍ଦିତ ।

ଭାରତବର୍ଷରେ ବହୁ ହତ୍ୟା, ଗୁଳିକାଣ୍ଡ ହୋଇଛି; କେତେକ ସ୍ଥାନରେ ସମାନ୍ତରାଳ ସରକାର ସ୍ଥାପିତ ହୋଇଛି । କେତେକ ଅଞ୍ଚଳରେ ଇଂରେଜଙ୍କର ଚିହ୍ନ ବର୍ଣ୍ଣ ରଖି ଦେଇ ନାହାନ୍ତି । ବହୁ ଲୋକ ବହୁକାଳ ପର୍ଯ୍ୟନ୍ତ ଫେରାର୍ ହୋଇ ବୁଲିଛନ୍ତି । ସଶସ୍ତ୍ର ବିଦ୍ରୋହ ଲାଗି ପ୍ରସ୍ତୁତ ହୋଇ ଥିବାର ପ୍ରମାଣ ସବୁ ମିଳିଛି । ବହୁ ବର୍ଷ ଜେଲ, ଜୋରିମାନା ଏପରିକି ଫାସି ପର୍ଯ୍ୟନ୍ତ ହୋଇଛି । ମାତ୍ର ଓଡ଼ିଶା ପରି

ଏକ ଷଡ଼ଯନ୍ତ୍ର ମକଦ୍ଦମା (conspiracy case) ହୋଇଥିଲା ପରି ଜଣା ନାହିଁ । ବ୍ରହ୍ମଦେଶ ଆଡକୁ ଜାପାନୀ ମାଡ଼ି ଆସିଥିଲେ । ମଣିପୁରରେ ଆଜାଦ୍ ହିନ୍ଦ୍ ଫୌଜ ଆସି ଜାତୀୟ ପତାକା ଉଡ଼ାଇଲେ । ପୂର୍ବ ଖଣ୍ଡରେ ଏ ସବୁର ସମ୍ମୁଖୀନ ହେବା ନିମନ୍ତେ ଓଡ଼ିଶା ଭିତର ଦେଇ ସୈନ୍ୟ ଚାଳନା କରିବାକୁ ପଡୁଥିଲା । ତେଣୁ ବୋଧହୁଏ ଓଡ଼ିଶାର ଆନ୍ଦୋଳନକୁ ବ୍ରିଟିଶ ସରକାର ଗୁରୁତ୍ୱ ଦେଉଥିଲା ।

ମାହେର ନାମକ ଏକ ଆଇରିଶ୍ ଆଇ.ସି.ଏସ୍.ଙ୍କୁ ଆମ କେସ୍ ବିଚାର କରିବା ନିମନ୍ତେ ସ୍ପେଶାଲ ଜଜ୍ ଭାବରେ ନିଯୁକ୍ତି ମିଳିଲା । ସେସନ ବିଚାର । କାରଣ ଆମ ବିରୁଦ୍ଧରେ ନରହତ୍ୟା, ଘରପୋଡ଼ି, ତାରକଟା ଇତ୍ୟାଦି ଯାବତୀୟ ଅପରାଧ ଖଞ୍ଜା ହୋଇଥିଲା । ୩୦୨ (ଫାସି) ଦଫା ବି ପୁଲିସ ଯୋଡ଼ିଥିଲେ । ଆଉ କଣ ହେଉ ନ ହେଉ ମତେ ଯେ ଫାସିଦଣ୍ଡ ମିଳିବ ଏପରି ବିଶ୍ୱାସ ଲୋକଙ୍କ ମନରେ ଜନ୍ମିଥିଲା । ମୋର ଅନ୍ୟ ସାଥିମାନେ ଆହୁରି ବେଶି ଚିନ୍ତିତ ହୋଇ ପଡ଼ିଲେ ମୋ ସକାଶେ । ଆମେ ସମସ୍ତେ କିନ୍ତୁ ପ୍ରଫୁଲ୍ଲ ମନରେ ଥାଉ । ରୀତିମତ କଚେରୀକି ଟଣାହୋଇ ଆସୁ ଜେଲରୁ ।

ଲୋକଙ୍କର ଆମ ପ୍ରତି ଅଦ୍ଭୁତ ଭାବରେ ଶ୍ରଦ୍ଧା ବଢିଲା । ବହୁ ଲୋକ ଆସି କଚେରୀ ବିଚାର ବେଳେ ବାହାରେ ଜମା ହୋଇ ଯାଉଥିଲେ । ଆମର ଆତ୍ମୀୟ ସ୍ୱଜନ ଅତ୍ୟନ୍ତ ଚିନ୍ତିତ ହୋଇ ଓକିଲ ଲଗାଇଲେ । କଟକର ଚିନ୍ତାମଣି ଆଚାର୍ଯ୍ୟ, ଦୀନବନ୍ଧୁ ସାହୁ ଓ ବାଲେଶ୍ୱରର ବ୍ରଜ କିଶୋର ଦାସ ଇତ୍ୟାଦି । ଚାର୍ଯଫ୍ରେମ୍ ପୂର୍ବରୁ ସାକ୍ଷୀଗୁହା ଆରମ୍ଭ ହେଲା । ଆମର ତ ସାକ୍ଷୀ ନ ଥିଲା– ସରକାର ପକ୍ଷର ସାକ୍ଷୀ ଚାଲି ଥାଆନ୍ତି । କୋର୍ଟରେ ଏପରି ଏକ ଘଟଣା ଘଟିଲା, ଯେଉଁଥିରେ ଆମେ ବିଚାରିଲୁ ଏପରି ବିଚାର ନିରର୍ଥକ । ବ୍ରିଟିଶ ସରକାର ଦଣ୍ଡ ଦେବାକୁ ହିଁ ସ୍ୱତନ୍ତ୍ର ଜଜ୍ ନିଯୁକ୍ତ କରିଛି । ଆମର ତ ଛାଡ଼ ପାଇବାର ଆଶା କମ୍ । ହେଇ ହେଲେ ଖୁବ ଜୋର ହେଲେ ଫାସି ହୁକୁମ ହେବ । ହେଉ, ସେଥିରେ ଆମମାନଙ୍କର ଯଶ ହେବ ।

ଏପରି ଭାବନା ମନରେ ନେଇ ଆମେ ମକଦ୍ଦମା ଲଢିବୁ ନାହିଁ ବୋଲି କଚେରୀରେ ଘୋଷଣା କରିଦେଲୁ । ସବୁ ସାଥି ଏଥିରେ ରାଜି ହୋଇଗଲେ ।

ମୁଁ ଏକ ବିବୃତି ଦେଇ କହିଲି– ଆମର ବ୍ରିଟିଶର ନ୍ୟାୟ ବିଗ୍ଭରରେ ବିଶ୍ୱାସ ନାହିଁ । ଆମେ ସମସ୍ତେ ବ୍ରିଟିଶ ସାମ୍ରାଜ୍ୟବାଦର ଧ୍ୱଂସ ନିମନ୍ତେ ଜାଣି ଶୁଣି କାର୍ଯ୍ୟ କରିଛୁ । ତେଣୁ ଓକିଲ ଦେଇ ଲଢିବୁ ନାହିଁ । ଆଇନରେ ଦଣ୍ଡ ବିଧାନର ଯାହା ବ୍ୟବସ୍ଥା ରହିଛି; ସେଥିରେ ସର୍ବୋଚ୍ଚ ଶାସ୍ତି ପ୍ରଦାନ କଲେ ଆମେ ଆନନ୍ଦରେ ବରଣ କରିବୁ ।

ବିଗ୍ଭରପତି ସ୍ତବ୍ଧ । ଆମ ଓକିଲ ବନ୍ଧୁମାନେ ବଡ଼ ନିଃସହାୟ । ବିଗ୍ଭରପତି ଭବିଲେ ବୋଧହୁଏ ତାଙ୍କ ପ୍ରତି ଅବିଶ୍ୱାସ ଜନ୍ମିଛି । ସେ ଓକିଲଙ୍କ ଜରିଆରେ ଅନୁରୋଧ ଜଣାଇଲେ ମକଦ୍ଦମାରେ ସରିକ୍ ହେବାକୁ । ଆମେ ଆମ ନାସ୍ତିବାଣୀରେ ଦୃଢ ରହିଲୁ । ଆଇରିଶ୍ ବିଗ୍ଭରପତିଙ୍କ ଉପରେ ଏହାର ଏକ ଅଲୌକିକ ପ୍ରଭବ ପଡ଼ିଲା । ପୁଲିସର ହାତ ଗୋଡ଼ ବାନ୍ଧି ହୋଇଗଲା । ଯେଉଁ ସବୁ ମିଥ୍ୟା ପ୍ରମାଣ ସଂଗ୍ରହ କରି ଆଣିଥିଲେ, ନରହତ୍ୟା ସିଦ୍ଧ କରିବା ନିମନ୍ତେ ତାହା ବୃଥା ହୋଇଗଲା । ଏପରି ଏକ ଚରମ ପଦକ୍ଷେପ ନିଆଯାଇ ପାରେ ତାଙ୍କ କଳ୍ପନା ବାହାରେ ଥିଲା । ମକଦ୍ଦମାର ତଦବୀର ଓ ପ୍ରମାଣ ସଂଗ୍ରହ ଆଦିରେ ଯେଉଁ ତନାଘନା ଗ୍ଭଲିଥିଲା ତାହା ମାନ୍ଦା ପଡ଼ିଗଲା ।

ଆମର ବନ୍ଧୁବାନ୍ଧବଙ୍କର ସିନା ଚିନ୍ତା ବଢିଗଲା । କିନ୍ତୁ ଜଜ୍ ମାହେର ଗ୍ଭର୍ଯଫ୍ରେମ୍ କଲା ବେଳକୁ ୩୦୨ (ଫାସି) ଦଫାକୁ ଉଡ଼ାଇ ଦେଲେ । ଯେଉଁ ବିଗ୍ଭଟ ଗ୍ଭୟ ଦେଲେ, ସେଥିରେ ଆମ ମାନଙ୍କର ଦେଶପ୍ରୀତିର ଖୁବ ତାରିଫ୍ କଲେ । ଓଡ଼ିଶା ସରକାରଙ୍କ ଦ୍ୱାର ପ୍ରକାଶିତ "Freedom Movement in Orissa" ପୁସ୍ତକରେ ଏ ବିଗ୍ଭରଟି ପୂର୍ଣ୍ଣ ଭବରେ ବାହାରିଛି । ମୋ ଲିଖିତ "ଅଗଷ୍ଟ ବିପ୍ଳବ" ପୁସ୍ତକରୁ ମଧ୍ୟ ଏହାର ବିବରଣ ମିଳି ପାରିବ । ତେଣୁ ଦେଖାଯିବ ଆମେ ମକଦ୍ଦମାରୁ ଓହରି ଆସିବାଟା ବଡ଼ କାମ ଦେଲା । ଆମେ ତ ଓଲଟା ଆଶା କରୁଥିଲୁ ଏବଂ ସର୍ବୋଚ୍ଚ ଦଣ୍ଡ ସକାଶେ ମନକୁ ପ୍ରସ୍ତୁତ କରି ରଖିଥିଲୁ ।

ମାହେର ବିଗ୍ଭର କରି ଶାସ୍ତି ଘୋଷଣା କଲେ– ମତେ ୬ ବର୍ଷ ସଶ୍ରମ କାରାଦଣ୍ଡ ଏବଂ ଅନ୍ୟ ସାଥି ୧୩ ଜଣଙ୍କୁ ୪ ବର୍ଷ କରି । ଆଗରୁ ଦୁଇ ଜଣଙ୍କୁ ପ୍ରମାଣ ଅଭବରୁ ଖଲାସ ବୋଲି ଘୋଷଣା କଲେ । ବାସ୍ତବରେ ସେମାନଙ୍କୁ ସିନା ଆମ ମକଦ୍ଦମାରୁ ମୁକ୍ତି ମିଳିଲା; କିନ୍ତୁ ସିକ୍ୟୁରିଟି ବନ୍ଦୀ ଭବରେ ଜେଲରେ

ଅଟକ ରଖାଗଲା । ଏହା ପୂର୍ବରୁ ଆମେ ସବୁ ୫ ମାସ କାଳ ବିଗ୍ରଧୀନ ବନ୍ଦୀ ଭବରେ ଜେଲରେ ରହିଥିଲୁ । ତାକୁ ମିଶାଇ ଦେଲେ ଆମର ଦଣ୍ଡ ପ୍ରାପ୍ତି ଆହୁରି ବେଶି ।

ମାହେର ସାହେବ ଓ ସରକାରୀ ଓକିଲ ବାଞ୍ଛାନିଧି ମହାପାତ୍ର ମିଶି ଆମକୁ ଆଉ ଏକ ଅନୁଗ୍ରହ ଦେଖାଇଲେ । ୧୪ ଜଣ ଯାକଙ୍କୁ "ଏ" କ୍ଲାସ କଏଦୀ ରୂପେ ବ୍ୟବହାର ଦେଖାଇବା ନିମନ୍ତେ ହୁକୁମ ହେଲା । ଏହା ଏକ ଅସାଧାରଣ କଥା– ଏଥିରେ ବାଛ ବିଗ୍ଚର କରଯାଏ । ତାହା ନ କରି ସମସ୍ତଙ୍କୁ ସମାନ ଭବରେ ଆଚରଣ ଦେଖାଇବାକୁ ନିର୍ଦ୍ଦେଶ ଦେବାରୁ ମୁଁ ମନେ ମନେ ଜଜ୍ ସାହେବଙ୍କୁ ମୋର କୃତଜ୍ଞତା ଜଣାଇଲି ।

ଆମେ ସମସ୍ତେ ଜେଲ ଭେଗିଲୁ କଟକ ଜେଲରେ । ଶାସ୍ତି ପାଇଲା ପରେ ମତେ ଆଉ ଅଲଗା ରଖା ନ ଯାଇ ବନ୍ଦୀ ସାଥିଙ୍କ ସହ ଏକ ଓ୍ୟାର୍ଡରେ ରଖାଗଲା । ଯେତେଦୂର ମୋର ସ୍ମରଣ ହେଉଛି କଟକ ଜେଲର ୧୭ ନମ୍ବର ଓ୍ୟାର୍ଡରେ ଦ୍ୱିବେଦୀ ଷଡଯନ୍ତ୍ର ମକଦ୍ଦମାର ସବୁ ସାଥି ଏକାଠି ରହିଲେ ।

卐

[ ୪୨ ]

## କଟକରୁ କୋରାପୁଟ ଜେଲ

ଜେଲ ଦଣ୍ଡ ହୋଇଯିବା ପରେ ବହୁ ମାସ ହେଲା ହୋଇଥିବା ଉତ୍ତେଜନା, ଉନ୍ମାଦନା ଓ ଅନିଶ୍ଚୟତାର ଅବସାନ ଘଟିଲା । ବିଗ୍ରହକୁ କଟକ ଅଦାଲତକୁ ନେଉଥିବା ବେଳେ ମୁଁ ଯାହା ଅନ୍ୟ ସାଥିଙ୍କ ସହ ମିଶି ପାରୁଥିଲି; କଥାବାର୍ତ୍ତା କରି ପାରୁ ଥିଲି । ଜେଲ ଭିତରେ ସେମିତି ଏକୁଟିଆ ଜୀବନ ଥିଲା । ଏଥରକ ସବୁ ମିଶି ରହିବାରୁ ମୋ ମନ ଖୁସି ହୋଇଗଲା । ଯାହାକୁ କହନ୍ତି ଆମେ ଏକ ପ୍ରକାର ସେଟଲ କରିଗଲୁ । ଆମରି ଓ୍ୟାର୍ଡ ଭିତରେ ଗୋଟାଏ ଛୋଟିଆ କିଚନ ହୋଇଥିଲା । ଆମର ରେସନ ସେଠିକି ଆସେ । 'ଏ' କ୍ଲାସ ହୋଇ ଥିବାରୁ ଆମ ରେସନ ଭିତରେ ଚିନି ମିଳିଲା । ପ୍ରତିଦିନ ଚାରି ଆଉନ୍‌ସ ଦୁଧ, ପାଏ ମାଂସ କିମ୍ବା ଅଧପାଏ ମାଛ ମିଳୁଥିଲା । ଆମ ସାଥିମାନେ ସ୍ୱାଦ ରନ୍ଧାରେ ନିଜର କରାମତି ଦେଖାଇବାର ସୁଯୋଗ ପାଇଲେ । ସବୁଠୁଁ ଖାଦ୍ୟ ରସିକ ଥିଲେ ଘନଶ୍ୟାମ ପଟନାୟକ । ସେ ଯେପରି ଖାଦ୍ୟ ପାଚନର ଉପଭୋଗ କରନ୍ତି ଓ ବିଭିନ୍ନ ପ୍ରକାର ମିଶାମିଶି କରି ସ୍ୱାଦୁ ବଦଳାନ୍ତି, ତାହା ଦେଖିବାର କଥା । ଜେଲ ଭିତରେ ଆଉ କି ଉପଭୋଗ ।

ଏକସାଙ୍ଗରେ ରହିବାରୁ ଆମେ ପରସ୍ପରର ଦୋଷ ଗୁଣ ସହ ଭଲ ଭାବରେ ପରିଚିତ ହୋଇଗଲୁ । ବିଶ୍ୱନାଥ ପରିଡ଼ା ଆମ ଭିତରେ ସର୍ବାପେକ୍ଷା ବୟସ୍କ ଥିଲେ । ବେମାରିଆ ଲୋକ; ସେ ସର୍ବଦା ତାଙ୍କ ଖଟରେ ପ୍ରାୟ ଚୁପଚାପ ବସନ୍ତି । ବେଳେ ବେଳେ ଗୀତା ପାଠ କରୁଥିଲେ । ଲୋକନାଥ ମିଶ୍ର ଥିଲେ

ମଧ୍ୟମ ବୟସ– ଆମ ସମସ୍ତଙ୍କ ଭିତରେ ବେଶି ପାଠୁଆ– ଏମ୍‌:ଏ: ବି.ଏଲ୍‌. ପାସ୍‌ । ତାଙ୍କର ଚିଡ଼ଚିଡା ପ୍ରକୃତିକୁ ଲକ୍ଷ୍ୟ କରି ଖୁବ ଥଟ୍ଟା ପରିହାସ ହୁଏ । ସେ ଥିଲେ ଅତ୍ୟନ୍ତ ନିଷ୍ଠାବାନ୍‌, ନୀତି ପରାୟଣ । ଓଡ଼ିଶାରେ ଖୁବ ପ୍ରତିଷ୍ଠା ଅର୍ଜନ କରିଥିଲେ । ଘାଟକୁରା ଅଞ୍ଚଳର ଲୋକେ ତାଙ୍କୁ ଦେବତା ତୁଲ୍ୟ ମାନ୍ୟ ଦେଉଥିଲେ । ଓଡ଼ିଶା ବିଧାନ ସଭାର ଉପ ବାଚସ୍ପତି ହୋଇଥିଲେ । ମାତ୍ର ୬୩ ବୟସରେ ପ୍ରାଣବାୟୁ ଉଡ଼ିଗଲା । ମୁଁ ସେତେବେଳକୁ ଦିଲ୍ଲୀରେ ଥିଲି; ଅବଶୋଷ ରହିଗଲା ଶେଷ ଦେଖା ହୋଇ ପାରିଲା ନାହିଁ । ଗୌରବାବୁଙ୍କ ନେତୃତ୍ୱରେ କେତେକ ଖେଳ କସରତରେ ଆଗ୍ରହୀ ହୋଇ ପଡ଼ିଲେ– ଏକ ବ୍ୟାଡ଼ମିଣ୍ଟନ କୋର୍ଟ ହେବା ଲାଗି ସେଠି ସ୍ଥାନ ଥିଲା । ଗୌରବାବୁ ଏକ ପ୍ରକାର ମନିଟର ପରି କାର୍ଯ୍ୟ କରୁଥିଲେ । ବେଶ୍ ଆନନ୍ଦରେ ଦିନ କଟୁଥିଲା ।

ମୁଁ ୧୯୪୦।୪୧ରେ ବ୍ରହ୍ମପୁର ଜେଲରେ ଜବାହାରଲାଲଙ୍କ 'ଆତ୍ମକାହାଣୀ' ଓଡ଼ିଆରେ ଅନୁବାଦ କରି ସାରିଥିଲି । ଏଠାରେ ଆରମ୍ଭ କଲି Glimpses of World History. ବିରାଟ ଗ୍ରନ୍ଥ । ଦିନସାରା ବସିଯାଏ । କୋରାପୁଟ ଜେଲକୁ ବଦଳି ହେବା ଆଗରୁ ଶେଷ କରିପାରି ଥିଲି । ଏହା ସମ୍ଭବ ହୋଇ ପାରିଲା ପ୍ୟାରିମୋହନ ଦାସଙ୍କ ଯୋଗୁଁ । ମୁଁ ଡାକେ, ସେ ଲେଖନ୍ତି । ତାଙ୍କର ସହର୍ଷ ସାହାଯ୍ୟ ବିନା ଏହା ଅଧା ରହି ଯାଇଥାନ୍ତା । କାରଣ କୋରାପୁଟ ଗଲାବେଳେ ବହି ପତ୍ର କିଛି ନେବାକୁ ପ୍ରଥମେ ଦେଇ ନ ଥିଲେ । ଏହା ଲେଖିଲା ବେଳକୁ ପ୍ୟାରୀ ମୋହନ ଆଉ ନାହାଁନ୍ତି । ଅଳ୍ପଦିନ ତଳେ ତାଙ୍କର ମୃତ୍ୟୁ ଘଟିଛି । ୭୪ ବର୍ଷ ହୋଇଥିଲା । ଦୁଇ ଦୁଇ ଥର ଭୋଟରେଇରୁ ଏମ୍‌.ଏଲ୍‌:ଏ. ହୋଇଥିଲେ । ବିଦଗ୍ଧ ଓ ବିଦ୍ରୋହୀ ପ୍ରାଣ; ବଡ଼ ଚଞ୍ଚଳ ଓ ଉଗ୍ର ସ୍ୱଭାବ । କୌଣସି ଦୁଃଖ ନିର୍ଯ୍ୟାତନା ସହ୍ୟ କରି ପାରୁ ନ ଥିଲେ । ସର୍ବଦା ସଂଗ୍ରାମରତ । ନିଜ ଶ୍ରମ ଓ କର୍ମରେ ନିଜର ପରିବାର ଛିଡ଼ା କରାଇ ଥିଲେ । ବାଲିଆପାଳ ଲାଗି ପ୍ରାଣ ବିସର୍ଜନ କରିବା ଲୋକ । ଆମେ ତାଙ୍କୁ ହରାଇଲୁ, ମୁଁ ଚିରଦିନ ପାଇଁ ମୋର ଜଣେ ଅତି ସ୍ନେହୀ ଦରଦୀ ସାଥିକି ହରାଇ ବସିଲି ।

ଜେଲ ଭିତରେ ରହିଲୁ ସିନା । ମୋର ମନ ଥାଏ ବାହାର ସଂଗଠନଟି କିପରି ରହିବ ? କେତେକ ଓ୍ୱାର୍ଡରଙ୍କ ଜରିଆରେ ବାହାର ସହିତ ସଂଯୋଗ

ସ୍ଥାପନ କଲି । ଗାନ୍ଧୀଜୀଙ୍କ କାରାଗାର ଆଗା ଖାଁ ପ୍ରାସାଦ ଆକ୍ରମଣ କରିବାର ଏକ ଯୋଜନା ହୋଇଥାଏ । ସାରା ଭାରତରୁ ସ୍ୱେଚ୍ଛାସେବୀମାନେ ଯାଇ ତାହା ଉପରେ ଏକତ୍ର ଚଢ଼ାଉ କରିବେ, ଏହା ଥିଲା ଯୋଜନା । ଓଡ଼ିଶାରୁ କେତେ ଜଣ ଯିବାର ଯୋଗାଡ଼ ହୋଇଗଲା । ଏହି ସବୁ କଥା ଲେଖିଲା ବେଳକୁ ଗୋଟିଏ ପ୍ରଶ୍ନ ମନ ଭିତରେ ସ୍ୱତଃ ଉଠେ । ଆମେ ସବୁ ଧନ ଶୂନ୍ୟ । ଆଜିକାଲି ଗୋଟିଏ ସାଧାରଣ ସଭା ଆୟୋଜନ କଲା ବେଳକୁ ଶହ ଶହ ଟଙ୍କାର ଆବଶ୍ୟକ ପଡୁଛି । କିନ୍ତୁ ସେତେବେଳେ ଏସବୁ କାମ ଅର୍ଥାଭାବରୁ ଅଟକି ଯାଉ ନ ଥିଲା– ଯୁଆଡୁ ହେଲେ ଅର୍ଥ ଯୋଗାଡ଼ ହୋଇ ଯାଉଥିଲା । ଲୋକଙ୍କର ଅଦ୍ଭୁତ ସମର୍ଥନ ଯୋଗୁଁ ଏହା ସମ୍ଭବ ହେଉଥିଲା ।

ଏହି ସବୁ ଯୋଗସୂତ୍ର ମୁଁ ସ୍ଥାପନା କରୁଛି ବୋଲି କ୍ରମେ ବନ୍ଦୀ ସାଥିମାନେ ଜାଣି ପାରିଲେ । ତୁଣ୍ଡ ବାଇଦ ସହସ୍ର କୋଷ । ଏମିତି ହେଉ ହେଉ ଜେଲ କର୍ତ୍ତୃପକ୍ଷଙ୍କ କାନରେ ପହଞ୍ଚିଲା । ବାହାରେ ତେଣେ ଗୋଟିଏ ଗୁଜବ ଜୋରରେ ପ୍ରଚାର ହୋଇଥିଲା ଯେ ମୁଁ ଜେଲ ଡେ଼ଇଁ ପଳାଇ ଯିବାର ଯୋଜନା କରୁଛି । ତେଣୁ ମତେ ସାଥିମାନଙ୍କ ଭିତରୁ ନେଇ ଅଲଗା ରଖିଦେଲେ ପୁଣି ସେ ସେଲରେ । ସେଲରେ ଥିବାବେଳେ ପ୍ରିୟନାଥ ଦେ ଙ୍କ ଠାରୁ ମୋର ହାତ ଲେଖା ଚିଠି ମିଳିଲା ; ସେ କିଛି ବେଆଇନ ବୁଲେଟିନ୍ ଧରି କଲିକତାରୁ ଫେରୁଥିଲେ । ମତେ ଆଉ କଟକରେ ରଖିବା ନିରପଦ ନୁହେଁ । ୨୪ ଘଣ୍ଟା ଭିତରେ ହାତକଡ଼ି ପକାଇ ମୋର ବଦଳି ହୋଇଗଲା କୋରାପୁଟ ଜେଲକୁ ।

ମୋ ଜୀବନରେ ବହୁ ଦୁଃଖ ସହିଛି । ପରବର୍ତ୍ତୀ କାଳରେ ଅଗ୍ରଜଙ୍କ ମୋର ସ୍ତ୍ରୀ ବିୟୋଗ ଅତ୍ୟନ୍ତ ଦୁଃଖଦାୟକ ହେଲା । ଏବେ ଜୀବନ ସାରା ଏକ ଶୁଷ୍କ ଜୀବନ ବିତାଉଛି । ମୁଁ ବିଶ୍ୱରେ "ଦୁଃଖେ ଜାଦେର ଜୀବନ ଗଢ଼ା, ତା'ଦେର ଆବାର ଦୁଃଖ କି ରେ ?" କଥାଟି ମୋ ପ୍ରତି ସଂପୂର୍ଣ୍ଣରୂପେ ପ୍ରଯୁଜ୍ୟ । ଏବେ ସତ ଲେଖୁଛି- କଟକ ଜେଲରେ ସାଥିମାନଙ୍କୁ ଛାଡ଼ି କୋରାପୁଟ ଗଲାବେଳକୁ ମୋ ମନ ଯେପରି ବିଷାଦଭରା ହେଲା, ସେପରି କେବେ ଘଟି ନ ଥିଲା କି ଘଟିବ ନାହିଁ ।

କଟକ କୋରାପୁଟ ଆକାଶ ପାତାଳ ପ୍ରଭେଦ । ଜଳବାୟୁ, ଭୌଗୋଳିକ ପରିସ୍ଥିତି ସବୁ ବିପରୀତ । ବଣ, ଜଙ୍ଗଲ ଗିରି ପର୍ବତମାଳା ଭେଦ କରି ସତେ କି ଯାଉଛି ଏହିପରି ମନେ ହେଉଥିଲା ଯେତେବେଳେ ମତେ ହାତକଡ଼ି ପକାଇ ପୁଲିସ ବିଜୟ ନଗରମ୍ ଠାରୁ କୋରାପୁଟ ପର୍ଯ୍ୟନ୍ତ ନେଇ ଆସିଲେ । କଟକରୁ ବିଜୟ ନଗରମ୍ ଆସିଲୁ ମାନ୍ଦ୍ରାଜ ମେଲ ଯୋଗେ । ସେ ଟ୍ରେନଟି ରାତିରେ ଆସୁଥିଲା; ତେଣୁ ମୋର ବଦଳି ଯାତ୍ରାଟା ଏକ ପ୍ରକାର ଗୋପନୀୟ ହୋଇଗଲା ।

ସାଥି ବନ୍ଦୀ କୋଳାହଳ ଭିତରୁ ଆସିଗଲି ଏକ ଅଜଣା ନିର୍ଜନତା ଭିତରକୁ । ସେ କଥା ଆର ପ୍ରବନ୍ଧରେ ବର୍ଣ୍ଣନା କରିବି । କିନ୍ତୁ ଏଠାରେ ଥିବା ଭିତରେ ମୋ ମନ ଭିତରେ ଗୁଣ୍ ଗୁଣ୍ ହୋଇ ମୁଁ ଯେଉଁ କବିତା ଆବୃତ୍ତି କରୁଥାଏ, ତାହା ହେଲା—

"ଥାଆନ୍ତା ଯଦି ମୋର ବିହଙ୍ଗ ପକ୍ଷ
ଲଂଘି ଭୀଷଣ ଗିରି ସାଗର ବକ୍ଷ ।
ଦେଖନ୍ତି ପ୍ରିୟଜନ ମୁଖ କମଳ
ହୁଅନ୍ତା ଏ ସନ୍ତପ୍ତ ପ୍ରାଣ ଶୀତଳ ।"

卐

[ ୪୩ ]

# କୋରାପୁଟ ଜେଲ ଜୀବନ

ଏଇଟା ମୋର ଶେଷ ଜେଲ ଭୋଗ । ଛଅ ବର୍ଷ ପୂରା ରହିବାକୁ ପଡ଼ିବ । କାରଣ ସେତେବେଳ ପର୍ଯ୍ୟନ୍ତ ସଂଗ୍ରାମ ବନ୍ଦ ହେବାର କୌଣସି ସୂଚନା ନ ଥିଲା । ୧୭ ମାସ କଟକ ଜେଲରେ ସାଥିମାନଙ୍କ ସହ ରହି ଆସିଲି । ଏଠି ଏକୁଟିଆ ଏତେ ଗୁଡ଼ିଏ ସମୟ କେମିତି କାଟିବି ଏହା ହୋଇଥିଲା ଚିନ୍ତା ।

କୋରାପୁଟ ଥିଲା ନିଛାଟିଆ ଯାଗା । ଜେଲଟି ବି ଏକପାଖିଆ । ଦକ୍ଷିଣୀ ଢଙ୍ଗରେ ଛୋଟ ଛୋଟ ଘର । ଏହି ଜିଲ୍ଲାଟି ମାନ୍ଦ୍ରାଜରେ ଥିଲା । ମୁଁ ସେଠିକି ଗଲି ୧୯୪୪ରେ । ଓଡ଼ିଶା ସ୍ୱତନ୍ତ୍ର ହେଲା ୧୯୩୬ରେ— ସେଥିରେ ମାନ୍ଦ୍ରାଜର ଗଞ୍ଜାମ ଓ କୋରାପୁଟ ଜିଲ୍ଲା ଦୁଇଟି ଓଡ଼ିଶାକୁ ଆସିଲା । ଏଇ କେତୋଟି ବର୍ଷ ଭିତରେ ବିଶେଷ କିଛି ଯେ ପରିବର୍ତ୍ତନ ହୋଇଥିଲା, ଏପରି ନୁହେଁ । ସବୁ ପୁରୁଣା ଢ଼ାଞ୍ଚା । ବିରାଟ ପାଚେରୀ, ପୁଣି ଛୋଟ ଛୋଟ ପାଚେରୀ ଭିତରେ ଓ୍ୟାର୍ଡ ସବୁ ଥାଏ । ଓଡ଼ିଆ ଅଫିସରମାନେ ଥାଆନ୍ତି, ମାତ୍ର ଓ୍ୟାର୍ଡରଙ୍କ ଭିତରେ ବେଶ୍ କିଛି ସଂଖ୍ୟାରେ ତେଲଗୁଭାଷୀ ରହି ଥାଆନ୍ତି । ଆଦିବାସୀ ବହୁଳ ଅଞ୍ଚଳ; ମାତ୍ର ଭାଷା ପରିପାଟୀ ଓ କାରବାରରେ ଆନ୍ଧ୍ରର ବେଶ୍ ପ୍ରଭାବ ରହିଥିବା ଅତି ସ୍ପଷ୍ଟ ଭାବରେ ଜଣା ପଡୁଥାଏ । ଲୋକମାନେ ବଡ଼ ସରଳ; ସତ୍ୟପ୍ରିୟ । ଶୁଣିଲି ଯେତେ ମର୍ଡର କେଶ୍‌ରେ ଧରାହୋଇ ଆସିଥିଲେ ସମସ୍ତେ ହତ୍ୟା କଥା ଆପଣା ଛାଏଁ ସ୍ୱୀକାର କରିଛନ୍ତି କିମ୍ବା ହତ୍ୟା ଶବକୁ

ଧରି ନିଜେ ନିଜେ ଆସି ପୁଲିସ ପାଖରେ ହାଜର ହୋଇଛନ୍ତି । ମତେ ଏହା ମଧ୍ୟ କୁହାଗଲା ଏହି କାରଣରୁ ଜଣକୁ ହେଲେ ଫାସିଦଣ୍ଡ ମିଳି ନ ଥିଲା । ଦୀର୍ଘ କାରାଦଣ୍ଡ ଭୋଗୁଥିବା ଲୋକଙ୍କ ସଂଖ୍ୟା କମ୍ । ସେପରି ବଡ ବଡ ଚୋରୀ ଡକାୟତି ଘଟଣା ମଧ୍ୟ ବେଶି ନ ଥାଏ । ଏପରି କୟଦୀଙ୍କୁ ଶାସନ କରିବା ସହଜ ।

ଜେଲଟି ପାହାଡ଼ ଉପରେ– ଚାରିପାଖ ଜଙ୍ଗଲ । ଜଳବାୟୁ କଥା ନ ଲେଖିବା ଭଲ । ଏବେ ତ କୋରାପୁଟରେ ଗ୍ରୀଷ୍ମ ଅବକାଶ କରାଯାଇ ପାରିବ । ସେତେବେଳେ ସେଇଟା ଥିଲା ଇଂରେଜୀଙ୍କ ହୋମ୍ କ୍ଲାଇମେଟ । ଘୋର ବର୍ଷା ଓ କୁହୁଡ଼ି । ମଜ୍ଜମୋଡ଼ା ଶୀତ । ସକାଳ ୧୦ଟା ପର୍ଯ୍ୟନ୍ତ କୁହୁଡ଼ିରେ ମୁହଁ ଦେଖାଯାଏ ନାହିଁ । ଇଂଲଣ୍ଡରେ ଟିକିଏ ସୂର୍ଯ୍ୟ କିରଣ ପଡ଼ି ଫର୍ଗ ଦେଖାହେଲେ ଲୋକେ ନିଜକୁ ଭାଗ୍ୟବାନ ବୋଲି ବିଚାରନ୍ତି । ଏଠାରେ ସେହିପରି ସୂର୍ଯ୍ୟ ଦେଖିବା ସପନ । ଏପରି ନାହିଁ ନ ଥିବା ଜାଡ ସହି ଲୋକେ ରହି ଥାଆନ୍ତି । କୟଦୀ କାମ କରନ୍ତି । ଏମାନେ ଜେଲକୁ ଜେଲ ବୋଲି ନ କହି ମାନ୍ଦ୍ରାଜ ଅମଳରୁ ଶିକ୍ଷା ବୋଲି କହୁଥିଲେ । ଏବେ କଅଣ ହୋଇଛି ମତେ ଜଣାନାହିଁ । ସେତେବେଳେ ଭିଡ ବୋଇଲେ ବହୁ ସଂଖ୍ୟାରେ ରାଜବନ୍ଦୀ ଗୋଟିଏ କଣରେ ରହି ଥାଆନ୍ତି । ମତେ ନେଇ ଗୋଟିଏ ଅଲଗା ଓ୍ୱାର୍ଡରେ ରଖାଗଲା ।

ସେ ଓ୍ୱାର୍ଡଟି କୁଆଡ଼େ ମହିଳା ବନ୍ଦୀଙ୍କ ଲାଗି ତିଆରି । ଖୁବ ବଡ଼ ବଡ଼ ପାଚେରୀ– ବଡ଼ କାଠ କବାଟ ଦୁଆରମୁହଁ । ଗୋଟିଏ ମୁଣ୍ଡକୁ ଘର ବଖରାଟିଏ ଉଚ୍ଚରେ । ସେହି ଘରଠୁଁ ମୁଁ ଜେଲର କିଛିଟା ଦୂରରେ ଥିବା କୋରା ଜିଲା ମାଜିଷ୍ଟ୍ରେଟ ବଙ୍ଗଳା ଦେଖି ପାରୁଥାଏ । ସେହି କୋଠରୀରେ ମତେ ରଖାଗଲା । କୋରାପୁଟ ଜେଲ ସାରା ଅମୃତଭଣ୍ଡା ଗଛ ଭରାଥାଏ । ସେହି ହିଁ ପ୍ରଧାନ ପରିବା । ମୋ ଚକଡା ଭିତରେ ବି ବହୁତ ଗୁଡ଼ିଏ ଅମୃତଭଣ୍ଡା ଗଛ ରହିଥାଏ । କିଛି କୟଦୀ ଆସନ୍ତି ବଗିଚା କାମ କରିବାକୁ । ମୋର ତ କିଛି କାମ ନ ଥାଏ । ପ୍ରଥମ ଅବସ୍ଥାରେ ବହି କାଗଜ ପତ୍ର ବି ଦିଆଯାଉ ନ ଥିଲା । ମୁଁ ଅନଶନ କରି ପ୍ରଥମେ କେବଳ 'ହିନ୍ଦୁ' ଦୈନିକ ପାଇଲି । ପରେ ଅବଶ୍ୟ ବହିପତ୍ର ମିଳିଲା । ସେମାନଙ୍କ ସହ ମିଶି ମୁଁ ବଗିଚା କାମ କଲି । ମୋ ଓ୍ୱାର୍ଡ ଭିତରୁ ବାହାରି ଥିବା କୋବି ଓ ଅମୃତଭଣ୍ଡା ଜେଲରେ ଶ୍ରେଷ୍ଠ ପୁରସ୍କାର ପାଇଥିଲା ।

ହଠାତ୍ ଦିନେ ସକାଳୁ ମୁଁ ଉଠି ବାହାରକୁ ଆସି ଗ୍ରହିଁଲି ବେଳକୁ ଜେଲ କାନ୍ଥ ଉପରେ ଏକ ଛୋଟ ବାଘ । କୁଦାମାରି କାନ୍ଥ ଉପରକୁ ଉଠିଛି । ଭୀଷଣ କୁହୁଡ଼ି; ଭିତରକୁ ଡେଇଁନାହିଁ ବୋଧ ହୁଏ ଲୋକବାକ କିଛି ନ ଦେଖି । ବନ୍ୟଜନ୍ତୁ ବିଶେଷଜ୍ଞ କହିବେ– ମୋର ମନେହୁଏ ଗ୍ରରିଆଡ଼େ ବଡ଼ ବଡ଼ ପାଚେରୀ ଏବଂ ଏଣେ ଜନଶୂନ୍ୟ ଦେଖି ସେ ବିଚର ସେ କାନ୍ଥ ଉପରେ ଛିଡାହୋଇ ଭବିଥିବ– ଯିବି କିନା, ଫେରିବି କେମିତି । ମୋ ଓ୍ୟାର୍ଡ ପାଖରୁ କିଛି ଦୂରରେ ସେ ପାଚେରୀ; ମତେ ବାଘ ଦେଖିଲା କି ନାହିଁ; ମୁଁ କିନ୍ତୁ ବାଘକୁ ପ୍ରତ୍ୟକ୍ଷ ଦେଖି ପାରିଲି । ବଡ଼ ପାଟିରେ ଚିତ୍କାର କଲି । ଓ୍ୟାର୍ଡର ଦଉଡ଼ି ଆସିଲେ; ମାତ୍ର ପାଟିତୁଣ୍ଡ ଶୁଣି ବାଘଟି ଲମ୍ଫମାରି ସେପାଖରେ ତଳକୁ ଡ଼େଇଁ ପଡ଼ିଲା । ଏଇଟା ମୁଁ ନିଜ ଆଖିରେ ଦେଖିଛି । ବାଘ ମୁହଁରୁ ମୋର ରକ୍ଷା ହେଲା ନାହିଁ, ବଗିଗ୍ଚ କାମ କରିବାକୁ ଆସୁଥିବା କୟଦୀ ଓ ଓ୍ୟାର୍ଡର ରକ୍ଷା ପାଇଗଲେ ।

ଅଣ୍ଡର ଗ୍ରାଉଣ୍ଡରେ ଭୋକ ଉପାସ ଓ ନାନା ଅସୁବିଧା ଭିତରେ ଦିନ କାଟିଥିବା ହେତୁ ମୋର ପେଟରୋଗ ଆରମ୍ଭ ହୋଇ ଯାଇଥିଲା । ଆଗରୁ ସାଇଟିକା ଥିଲା; ମାତ୍ର ପେଟରୋଗ କେବେ ଉତ୍କଟ ହୋଇ ନ ଥିଲା । ଗିରଫ ପରେ ମୋର ଅଜୀର୍ଣ୍ଣ ରୋଗ (Dispepsia) ହୋଇଛି କଟକର ଜେଲ ସୁପରିଣ୍ଟେଣ୍ଡେଣ୍ଟ ଡ଼କ୍ଟର ପି: ସି. ରାୟ କହିଲେ । ତାଙ୍କ ଚିକିତ୍ସାରେ ଥିଲି । କେବଳ ଦୁଧ ଭାତ ଖାଇବାକୁ ଦେଉଥିଲେ । ମୋର ଟିକିଏ Anemia ରକ୍ତହୀନତା ଘଟୁଛି ବୋଲି ସେ ଚିନ୍ତିତ ଥିଲେ ଓ ଚିକିତ୍ସା ଦେଉଥିଲେ । ଏଠି ନିଛାଟିଆ ଓ ଏକୁଟିଆ ହେବାରୁ ମୋର ମନ ଓ ଦେହ ଉପରେ ତାର ପ୍ରଭାବ ପଡ଼ିଲା ।

କୋରାପୁଟରେ କଳାଜ୍ୱର– (Black Fever) ହୁଏ ବୋଲି ଆଗରୁ ଶୁଣିଥିଲି । ମତେ ଲୋକ କହିଲେ ଏହି ଅସ୍ୱାସ୍ଥ୍ୟକର ଜଳବାୟୁ ଭିତରେ ବେମାର କରି ମାରିଦେବାର ଚକ୍ରାନ୍ତ ଥିଲା ବ୍ରିଟିଶ ସରକାରର । କଥାର ସତ୍ୟତା କେତେଦୂର ମତେ ଜଣା ନାହିଁ । ମତେ ଜ୍ୱର ହେବାରୁ ତିନିଟା କମ୍ବଳ ଦେଇ ଥାଆନ୍ତି । ଖଇ ପରି ତାତିରେ ଦେହ ଫୁଟୁଥାଏ । ଆଖି ଫିଟାଇ ଅନାଇ ପାରେ ନାହିଁ । ପାଖରେ ଆହା କରିବାକୁ କେହି ନାହିଁ । ଡାକ୍ତର ଥରେ ଆସି ଦେଖି ଯାଆନ୍ତି ଓ

ଔଷଧ ଦେଇ ଯାଆନ୍ତି । ଘଡିରେ ପୁଣି ବନ୍ଦ । ଛଟପଟ ହେଉଥାଏ; ଅଚେତ୍ ହୋଇଯାଏ କିମ୍ବା ଚେତା ପାଉ ନ ଥାଏ– ଏପରି ଅବସ୍ଥା । ନିଜର ଉଠିବାର ଶକ୍ତି ନ ଥିବାରୁ ଘଡିରେ ପରିସ୍ରାକୁ ଉଠିପାରେ ନାହିଁ– ବିଛଣାରେ ପରିସ୍ରା ପଡ଼ିଯାଏ । ସକାଳେ ତାହା ଉଠାଇଲା ବେଳକୁ ଗାଳି ଶୁଣିବାକୁ ପଡ଼େ । ତାକୁ ବଦଳାଇ ନୂଆ କମ୍ବଳ ଦିଆଯାଏ ନାହିଁ । ସେହି ଗନ୍ଧରେ ମତେ ଶୋଇବାକୁ ପଡ଼େ । ପରିସ୍ରା ଭୟରେ ମୁଁ ଦିନେ ଦିନେ ଘଡିରେ ପାଣି ପିଏ ନାହିଁ । ୬ଟା ବେଳୁ ତ ସନ୍ଧ୍ୟାରେ ବନ୍ଦ । ସଂନ୍ଧ୍ୟା ୬ଟାରୁ ସକାଳ ୬ଟା ପର୍ଯ୍ୟନ୍ତ ପାଣି ନ ପିଇ ମୁଁ ବହୁ ଦିନ କଟାଇଛି । ଶୋଷ ହେଲେ ବି କେହି ପାଖରେ ନ ଥାଏ ପାଣି ଆଣି ଦେବା ଲଗି; ମୋର ଶକ୍ତି ନ ଥାଏ ଉଠି ଯିବା ଲଗି । ଏପରି ୨୧୪ ଥର ଭୀଷଣ ଜ୍ୱର ଭୋଗିଲା ପରେ ମୋର ସ୍ୱାସ୍ଥ୍ୟ ଭଗ୍ନ ହେଲା । ପେଟରୋଗ ବଢିଗଲା । ଭୀଷଣ ଯନ୍ତ୍ରଣା ଅନୁଭବ କଲି । ଦେହ ଏକଦମ୍ ବିଗିଡ଼ି ଗଲା । ରକ୍ତ ବାନ୍ତି କଲି । ୪୫ ପାଉଣ୍ଡ ଓଜନ କମ୍ ହୋଇଗଲା । ଏକାକୀ ରହିବାର ମାନସିକ ଯନ୍ତ୍ରଣା ମଧ୍ୟ ଭୋଗିଲି ।

卐

[ ୪୪ ]

# ଦୁର୍ଦ୍ଦଶା ବଢିବାକୁ ଲାଗିଲା

ଏକପ୍ରକାର ମର ମର ଅବସ୍ଥା ହୋଇଗଲା । ମୋର ଡ଼ର ନ ଥିଲା ମରିବାକୁ । ମନ ବ୍ୟାକୁଳ ହୋଇଥାଏ ଭାବି ଯେ ବ୍ରିଟିଶ ମତେ ମାରିଦେବା ଲାଗି କୋରାପୁଟ ପଠାଇଥିଲା । ମୁଁ କଣ ଏମିତି ଛଟପଟ ହୋଇ ମରିଯିବି ! ମୁଁ ହାରିଯିବି; ଏ ମୃତ୍ୟୁରୁ ଉଦ୍ଧାର ପାଇବି ନାହିଁ ! ଫାସି ହୋଇପାରିଲା ନାହିଁ । ଶେଷକୁ ଜର ପେଟମରରେ ମରିଯିବି । ମନରେ ସାହସ ବାନ୍ଧିଲି । ଦେହ ପଛକେ ଅବସନ୍ନ ହୋଇଯାଉ; ମନ ମଉଳି ନ ଯାଉ । ଜେଲ କର୍ତ୍ତୃପକ୍ଷଙ୍କୁ ନିବେଦନ କଲି ମୋର ମାନସିକ ପରିବର୍ତ୍ତନ ଲାଗି ଓ ଏକୁଟିଆ ଭାବ ଭାଙ୍ଗିବା ନିମନ୍ତେ ଜଣେ କାହାରିକି ମୋ ସାଙ୍ଗରେ ରହିବାଲାଗି ଅନୁମତି ଦିଆଯାଉ ।

ଜେଲ ସୁପରିଣ୍ଟେଣ୍ଡେଣ୍ଟ ଥାଆନ୍ତି ଡ଼ାକ୍ତର ଜଗନ୍ନାଥ ଦାସ । ଆମରି ତେଲଙ୍ଗା ବଜାରର ଏବଂ କରିଲୋପାଟଣାରେ ତାଙ୍କ ଘର । ବଡ଼ ଦୟାଳୁ, ସାଧୁ ଓ ଅକପଟ ଲୋକ । ମତେ ଭଲ କରିବା ନିମନ୍ତେ ଯଥାସାଧ୍ୟ ଚେଷ୍ଟା କଲେ । ଯନ୍ତ୍ରଣା ଦେଖି ବଡ଼ ଦୁଃଖିତ ହେଲେ । ମୋର X' Ray ହେବା ଦରକାର ମନେ କରି କଟକ ପଠାଇବା ନିମନ୍ତେ ଓଡ଼ିଶା ସରକାରକୁ ଲେଖିଲେ । ମାତ୍ର ବିପରିତ ହେଲା ଫଳ । ସେ ଏପରି ସୁପାରିଶ କରିବା ହେତୁ ମୋ ବଦଳରେ ତାଙ୍କର ବଦଳି ହୋଇଗଲା । କି ବିଡ଼ମ୍ବନା ! ବ୍ରିଟିଶ ସରକାର କାହିଁକି ଏ

ଦାଉ ସାଧୁଛି ! ଟ୍ରାନ୍‌ସଫର କୋଣେ ଦୁଃଖ ନ କରି ମୋ ଅବସ୍ଥା ଦେଖି ସେ ବେଶି ବ୍ୟଥିତ ହେଲେ । ସେ ଯିବା ପୂର୍ବରୁ କୋରାପୁଟ ଜିଲ୍ଲର ଦଶମନ୍ତପୁର ଅଞ୍ଚଳର ଏକ କନ୍ଧ ଲିମ୍ବା ସାଉଁଟାଙ୍କୁ ମୋ ସାଙ୍ଗରେ ରହିବା ଲଗି ଅର୍ଡର ଦେଇଗଲେ । ସେ ଜଣେ ସିକ୍ୟୁରିଟି ବନ୍ଦୀ । ଅନ୍ୟ ଓ୍ବାର୍ଡରେ ଥିଲେ ।

ଲିମ୍ବା ସାଉଁଟା ବୃଦ୍ଧ—ନିରକ୍ଷର, ବଡ଼ ମଜାର ଲୋକ । ଅତ୍ୟଧିକ ସ୍ନେହୀ । ବଡ଼ ମଜାର କଥା କହି ମତେ ଖୁସି ରଖୁଥିଲେ । କନ୍ଧ ଜାତିର ରୀତିନୀତି ଓ ସାମାଜିକ ବୃତ୍ତାନ୍ତ ଶୁଣାଉଥିଲେ । ନିଜ ବିଷୟରେ କହିଲେ- ମୋର ଦୁଇଟି ଭାର୍ଯ୍ୟା । ପ୍ରଥମରୁ ୪ଟି ସନ୍ତାନ ହେଲା ପରେ ସେ ମୁଣ୍ଡ କୁଣ୍ଡାଇ ଦେଇ କହିଲା— ଦ୍ୱାହି ତତେ, ମୁଁ ଆଉ ପାରିବି ନାହିଁ । ମତେ ମାଫି କରିଦେ । ମୁଁ ତତେ ଆଉ ଏକ ଡାଙ୍ଗ୍‌ରୀ ଆଣି ଦେଉଛି । ତା ପାଖରେ ଶୋଇବୁ । ମୁଣ୍ଡ ବନ୍ଧାବନ୍ଧି କାମ ମୁଁ ଯେମିତି କରୁଛି, ସେମିତି କରିବି । ସତକୁ ସତ ଭଲ ଡାଙ୍ଗରୀଟାଏ ଆଣିଦେଲା । ମାତ୍ର ମତେ ଜେଲକୁ ବାନ୍ଧି ଆଣିଲେ !

ଏହିପରି ମନ ଦୁଃଖରେ ଥିବାବେଳେ ମୁଁ କବିତା ଲେଖିବାକୁ ଆରମ୍ଭ କଲି । ଲିମ୍ବା ସାଉଁଟାକୁ ପଢି ଶୁଣାଉଥାଏ । ସେଥିରୁ କେତେପଦ ଏଠାରେ ଉଲ୍ଲେଖ କରୁଛି । ମନର ଭାବନା କିଁଅିତ ପରିମାଣରେ ସେଥିରୁ ଅନୁମାନ କରାଯାଇ ପାରିବ । ଏହା ଲେଖା ହୋଇଥିଲା ଦୀପାବଳୀ ଅମାବାସ୍ୟା ଦିନ ୧୭ । ୧୦ । ୪୪ ତାରିଖରେ ।

"ଓଡ଼ିଶାର କୋରାପୁଟ, ପାହାଡ଼ ଅଞ୍ଚଳ
ଘେରିଆଛେ ଦିଶୁଅଛି ଗହନ ଜଙ୍ଗଲ । ।୧।

ବାଘ, ଭାଲୁ, ବାର୍‌ହା ଏଠି ହୋଇଛନ୍ତି ଭଗ
ମଣିଷ ଶିକାର ତାଙ୍କ ସବୁଠାରୁ ପ୍ୟାର । ।୨।

ଏହି କି କାମନା ତବ ଆହେ ସରକାର
କରିଲ କି ସେଥିପାଇଁ କଟକୁ ଅନ୍ତର । ।୩।

ମେଲେରିଆ କଳାଜ୍ୱର, କରିଅଛି ଘର
ଭବିଛି ତା ଗ୍ରାସେ ମୁହିଁ ପଡ଼ିବି ମୁକର । ୪ ।

ବୃଥା ଆଶା ତୁମର ଏ ଉଭଟ କଳ୍ପନା
ଲିଭିବ ନାହିଁ ଏ ପ୍ରାଣ ଲକ୍ଷ୍ୟ ପୂର୍ଣ୍ଣ ବିନା । ୫ ।

ସହି ମାଡ଼ ଅତ୍ୟାଗ୍ଚର ହୋଇଛି ଶକତ
ବହୁଅଛି ଶରୀରରେ ତପତ ଶୋଣିତ । ୬ ।

ମୋର ଲକ୍ଷ୍ୟ ଏ ଦେଶର ପୂର୍ଣ୍ଣ ସ୍ୱାଧୀନତା
ହାସଲ କରିବି ନିଶ୍ଚେ ଜାଣିଥା ଜାଣିଥା । ୭ ।

ଲଗିଅଛି ରଣ ଆମ ହୋଇନାହିଁ ଶେଷ
ସହିଅଛି ଶରୀରରେ କଷଣ ଅଶେଷ । ୮ ।

ହୋଇନାହିଁ ଜୀବନରେ କେବେ ହେଁ କାତର
ତମ କୋକୁଆ ଭୟକୁ ମୁଁ କରେ ନା ଖାତର । ୯ ।

ଲିମ୍ବା ସାଙ୍ଗିତା ମଝିରେ ମଝିରେ ତାର ପ୍ରତିକ୍ରିୟା ଶୁଣାଉ ଥାଏ । ଶଳା ସରକାରକୁ କି ମାଡ଼ ମାଇଲୁ ବାବୁ !

ମନ ଟିକିଏ ଉଶ୍ୱାସ ଧରିଲା ଲିମ୍ବା ସାଥି ଯୋଗୁଁ । କିନ୍ତୁ ଯନ୍ତ୍ରଣାର ଉପଶମ ହେଉ ନ ଥାଏ । ଏଣେ ସେଠି ମୁଁ ଯେ ପ୍ରାୟ ୨୧ ମାସ ନିର୍ଜନ ଅବସ୍ଥାରେ ରହିଲି କାହାରି ଖବର କିଛି ପାଉ ନ ଥାଏ । ଘରୁ କୌଣସି ଚିଠି ଆସୁ ନ ଥିଲା । ବାହା ତ ହୋଇ ନ ଥାଏ— ସ୍ୱାଧୀନତା ପରେ ଯାଇ ବାହାହେବି । ସେଇଥା ରହିଲା । ବାହାଘର ହେଲା ସ୍ୱାଧୀନତା ପରେ । ମାଉ ବାପା ବୋଉଙ୍କ ଖବର ଜାଣିବା ଲାଗି ବେଳେ ବେଳେ ମନ ବ୍ୟାକୁଳ ହେଉ ଥାଏ । ଜଗନ୍ନାଥ ଦାସଙ୍କ ପରେ ଡାକ୍ତର ଦେବେନ୍ଦ୍ର ନାଥ ଦାସ ସୁପରିଣ୍ଟେଣ୍ଡେଣ୍ଟ ହୋଇ ଗଲେ । ସେ ସବୁ ପୂର୍ବ କଥା ଶୁଣାଇଲେ । ମୁଁ ଧରି ନେଲି ମୋର ଆଉ ନିସ୍ତାର ନାହିଁ ।

କିଛି ଦିନ ପରେ ସାର୍ ହଥର୍ଣ୍ଣ ଲୁଇ ପରିଦର୍ଶନରେ ଆସିଲେ । ସେ ଥିଲେ ଓଡ଼ିଶାର ଗଭର୍ଣ୍ଣର । ମୁଁ ତାଙ୍କୁ କିଛି କଡ଼ା କଥା ଶୁଣାଇ ଦେଲି । X'Ray ଲାଗି କଟକ ନ ପଠାଇ ମତେ କେମିତି ମାରି ଦେବାର ଚକ୍ରାନ୍ତ ହୋଇଛି ସ୍ପଷ୍ଟ କରିଦେଲି । ଗଭର୍ଣ୍ଣରକୁ ଜଣେ ବନ୍ଦୀ ହୋଇ ଏପରି କହିବା ହେତୁ ବଡ଼ ବଡ଼ ଗୋରା କର୍ମକର୍ତ୍ତା ଯେ ତାଙ୍କ ସାଥିରେ ଯାଇଥିଲେ କୋପରେ ମାରନ୍ତି କି ନ ମାରନ୍ତି । ସେତେବେଳକୁ ଇଂରେଜ ସରକାର ସହିତ କଂଗ୍ରେସର କଥାବାର୍ତ୍ତା ଆରମ୍ଭ ହୋଇ ଗଲାଣି । ସିମଲା ଚୁକ୍ତି ଅଳ୍ପ ଦିନ ପରେ ହୋଇଗଲା ।

ଲୁଇ ମୋ ପାଖରୁ ହସପିଟାଲ ଗଲେ । ସବୁ ରେକର୍ଡ ଦେଖିଲେ । ତତ୍‌କ୍ଷଣାତ୍ ଅର୍ଡର ଦେଲେ ମତେ ବନ୍ଦୀ ଭାବରେ କଟକ ବଦଳି । କଟକ ଜେନେରାଲ ହସ୍‌ପିଟାଲରେ X'Ray ଓ ଚିକିତ୍ସା ଲାଗି ବନ୍ଦୀ ଭାବରେ ରହିଲି । ଯେଉଁ ଡାକ୍ତର ପି. ସି. ରାୟ କଟକ ଜେଲରେ ଆରମ୍ଭରୁ ଦେଖୁଥିଲେ, ସେହି କଲେ X'Ray । ସେହି ଏକମାତ୍ର ଡାକ୍ତର ଯେ ଏ ବିଦ୍ୟା ଜାଣିଥିଲେ ।

ଏହି ଭିତରେ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ପାଖରୁ ଏକ ଚିଠି ଗଲା ଭୋଟର ହେବା ନିମନ୍ତେ ଦରଖାସ୍ତ କରିବା ପାଇଁ । ସେ ଫର୍ମ ଟାଇପ୍ କରି ପଠାଇ ଦେଇଥିଲେ । ସିମଲା ଚୁକ୍ତି ପରେ ନିର୍ବାଚନ ହେବା ନିଶ୍ଚିତ । କଂଗ୍ରେସ କର୍ମକର୍ତ୍ତାମାନେ ସେଥି ଲାଗି ପ୍ରସ୍ତୁତ ହେଉଥିଲେ । ମୁଁ ଜଣେ ଏଡ଼େ ବଡ଼ ସଂଗ୍ରାମୀ; ମତେ ଭୁଲିଯାଆନ୍ତେ କେମିତି ! କିନ୍ତୁ ମୁଁ ସେଥିରେ ଦସ୍ତଖତ କଲି ନାହିଁ କି ଫେରାଇ ଦେଲି ନାହିଁ । ମୁଁ କହିଲି ବ୍ରିଟିଶ ସରକାର ତ ଯାଇନାହିଁ, ଯୁଦ୍ଧ ସରିନାହିଁ— ଆହୁରି ଲଢ଼ାଇ କରିବାକୁ ହେବ । ମୁଁ କେମିତି ନିର୍ବାଚନରେ ପଶିବି !

卐

[ ୪୫ ]

# ଶେଷ ଜେଲ୍ ଜୀବନ

କୋରାପୁଟ ଜେଲରୁ କେବଳ କଟକ ଜେଲରେ ଓହ୍ଲାଇଲୁ । ସାଙ୍ଗେ ସାଙ୍ଗେ ନିଆଗଲା କଟକ ଜେନେରାଲ ହସ୍‌ପିଟାଲ । ଚିକିତ୍ସା ଆଦି କରାଗଲା । ପୁଣି ଫେରିଲି କଟକ ଜେଲ । କୋରାପୁଟ ଜେଲକୁ ଆଉ ଯିବାର ନ ଥିଲା । ନିର୍ବାଚନ ହାଓଆ ଦେଶରେ ବହି ସାରିଲାଣି । ବ୍ରିଟିଶ ସରକାର ସହ ଚୁକ୍ତି ହୋଇ ଯାଇଛି । ୧୯୪୬ ମସିହା ଫେବୃୟାରୀ, ମାର୍ଚ୍ଚ ମାସରେ ଆମର ଓଡ଼ିଶା ଆସେମ୍ବ୍ଲିକୁ ନିର୍ବାଚନ କରାଗଲା ।

ଆମେ ସବୁ କଟକ ଜେଲ ଭିତରେ ଭୀଷଣ ଉତ୍ତେଜନା ଭିତରେ ଥାଉ । ନିର୍ବାଚନରେ ଯୋଗ ଦେବା ଠିକ ହେଲା କି ନାହିଁ, ଭରି ଯୁକ୍ତି ତର୍କ ଉଠେ । ପୁଣି ନିର୍ବାଚନରେ ପ୍ରାର୍ଥୀ ବଛାବଛି ନେଇ ବିବାଦ ଉଠେ । ସମ୍ବାଦ ପତ୍ରରେ ସବୁକଥା ବାହାରୁ ଥାଏ । ଜେଲ ଭିତରେ ଠୁଳ ହୋଇ ଆମେ ଏହି ସବୁ କଥାର ଟିକିନିଖି ଆଲୋଚନା କରୁଥାଉଁ । କେତେକ ପ୍ରାର୍ଥୀ ଅଗଷ୍ଟ ଆନ୍ଦୋଳନର ବିରୋଧୀ ବୋଲି ଆମକୁ ଜଣାଥିଲା । ସେମାନଙ୍କୁ କଂଗ୍ରେସ ଆଣି ପ୍ରାର୍ଥୀ କରୁ ଥିବାର ସମ୍ବାଦ ପାଇ ଆମେ ଉତ୍ୟକ୍ତ ହୋଇ ଯାଉ । ମଝିରେ ମଝିରେ କଥା ବି ଉଠେ ଖଲାସ ବିଷୟରେ । ଯେତେ ଯାହା ମନ ଭିତରେ ଥାଉ, ଖଲାସ ହେବାକୁ କିଏ ନ ଚାହେଁ । କଂଗ୍ରେସ ଯଦି ମନ୍ତ୍ରୀ ମଣ୍ଡଳକୁ ଆସେ, ନିଶ୍ଚୟ ଆମମାନଙ୍କୁ ଖଲାସ କରିବ ଏ ବିଶ୍ୱାସ ରହିଥାଏ । ତାହା ସଙ୍ଗେ ସଙ୍ଗେ କଥା ଉଠେ ବ୍ରିଟିଶ ସରକାର ତ ଯାଇନାହିଁ; ଗଭର୍ଣ୍ଣର୍ ତ ରହିଛି । ସେ କଣ ସବୁ ରାଜବନ୍ଦୀଙ୍କି ଖଲାସ କରିଦେବ !

ଏମିତି ଭବନା ଚିନ୍ତା ଭିତରେ ତେଣେ ନିର୍ବାଚନ ଶେଷ ହୋଇଗଲା । ଓଡ଼ିଶା ଆସେମ୍ବ୍ଲିରେ ସେତେବେଳେ ମୋଟ ସ୍ଥାନ ଥାଏ ୬୦ । ନୂତନ ସଂବିଧାନ ପ୍ରଚଳନ ପରେ ଏହି ସଂଖ୍ୟା ବଢ଼ିଲା ୧୪୦କୁ । ପ୍ରଦେଶ ବଦଳରେ ରାଜ୍ୟ (State) ନାମ ଜାରି ହେଲା । ନିର୍ବାଚନ ଫଳାଫଳରୁ ଜଣାଗଲା– କଂଗ୍ରେସ ଦଳ ୬୦ଟି ସ୍ଥାନରୁ ବିନା ପ୍ରତିଦ୍ୱନ୍ଦିତାରେ ଅଧିକ ସଂଖ୍ୟକସ୍ଥାନ ଦଖଲ କରି ପାରିଛି । ଅର୍ଥାତ୍ ଅଗଷ୍ଟ ବିପ୍ଳବ ଏବଂ ବ୍ରିଟିଶ ସହିତ ଚୁକ୍ତି ଯୋଗୁଁ କଂଗ୍ରେସର ଏପରି ଅଖଣ୍ଡ ପ୍ରତିପତ୍ତି ଦେଶରେ ବିସ୍ତାର ହୋଇଥିଲା ଯେ କଂଗ୍ରେସ ବିରୁଦ୍ଧରେ ଅନ୍ୟମାନେ ପ୍ରାର୍ଥୀ ଛିଡ଼ା କରାଇବା ନିମନ୍ତେ ସାହସ କଲେ ନାହିଁ । କେବଳ କେତୋଟି ନିର୍ଦ୍ଦିଷ୍ଟ ସ୍ଥାନରେ ଯାହା ପ୍ରତିଯୋଗିତା ହୋଇଥିଲା ।

ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଓଡ଼ିଶାରେ ନୂତନ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ସେମାନେ ଶପଥ ନେଲେ ୧୯୪୬ ମସିହା ଏପ୍ରିଲ ମାସ ୨୩ ତାରିଖରେ । ସେହିଦିନ ଯାଇ ଅଫିସ କଲେ । ପ୍ରଥମ କାର୍ଯ୍ୟ ହେଲା ରାଜବନ୍ଦୀଙ୍କି ଖଲାସ କରିବାର । ବାଛବିଚାର ନ କରି ୧୯୪୨ ସଂଗ୍ରାମରେ ଯେତେ ଯେଉଁଠି ବନ୍ଦୀ ହୋଇଥିଲେ ସମସ୍ତଙ୍କ ଖଲାସ ଲାଗି ସେହିଦିନ ଅର୍ଡର ବାହାରିଲା । ସନ୍ଧ୍ୟା ପୂର୍ବରୁ ସବୁ ଜେଲରେ ଅର୍ଡର ପହଞ୍ଚି ପାରିଲା ନାହିଁ । ସନ୍ଧ୍ୟାରେ ଜେଲ ଅଫିସ ବନ୍ଦ ହୋଇଯାଏ । ଜେଲ ନିୟମ ଅନୁସାରେ ସଞ୍ଜ ହୋଇଗଲେ ଜେଲ ଫାଟକ ବନ୍ଦ ।

କେବଳ ଆମ ଓଡ଼ିଶା ଷଡ଼ଯନ୍ତ୍ର ମକଦ୍ଦମାର ସାଥିମାନଙ୍କର ଭାଗ୍ୟ ଖୋଲିଲା । ଏକ ସ୍ପେସାଲ ଅର୍ଡର ଠିକ ସମୟରେ କଟକ ଜେଲରେ ଆସି ପହଞ୍ଚି ଗଲା କେବଳ ଏହି କେସ୍‌ର ସାଥିମାନଙ୍କୁ ମୁକ୍ତ କରିଦେବା ଲାଗି । ଜେଲ ପାଚେରୀ ସେକଡ଼ରେ ଥାଏ ସେକ୍ରେଟରୀଏଟ୍– ଏବେ ଯେଉଁଠି ସିଟି ହାସପାତାଳ ହୋଇଛି । ତେଣୁ ଏଠିକି ଲୋକ ଦଉଡ଼ାଇ ଦେବା ସହଜ ଥିଲା ।

ଅର୍ଡର ଆସିଲା– ଅନ୍ୟ ସାଥିମାନଙ୍କ ସହ ମୁଁ ଖଲାସ ହେଲି । ଛ' ବର୍ଷରୁ ସେତେବେଳକୁ ୩୬ ମାସରୁ ଅଧିକ ଭୋଗକରି ସାରିଥିଲି । ବାହାରେ କି ବିପୁଳ ଅଭ୍ୟର୍ଥନା, ଆନନ୍ଦ ଓ ଉତ୍ତେଜନା । ଏମିତି ଦିନ ଆଉ କପାଳରେ ଆସିବ ନାହିଁ ।

ଜେଲ ଜୀବନର ସମାପ୍ତି ଘଟିଲା ।

卐



ଓଡ଼ିଶାର ବିଶିଷ୍ଟ ଜନ-ନାୟକ, ଅଗଷ୍ଟ ଆନ୍ଦୋଳନର ସଂଗ୍ରାମୀ ବୀର, ସମାଜବାଦୀ ଆନ୍ଦୋଳନର ଅନ୍ୟତମ ଅଗ୍ରଣୀ ନେତା ସୁରେନ୍ଦ୍ରନାଥ ଦ୍ୱିବେଦୀ କଟକ ଜିଲ୍ଲା, ସାଲେପୁର ଥାନା ଖଣ୍ଡସାହି ଗ୍ରାମରେ ୧୯୧୩ ମସିହା ଫେବୃୟାରୀ ୧୧ ତାରିଖରେ ଜନ୍ମଗ୍ରହଣ କରିଥିଲେ । ୧୯୩୦ ମସିହାରେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ ରେଭେନ୍‌ସା କଲେଜିଏଟ୍ ସ୍କୁଲ ୧୦ମ ଶ୍ରେଣୀରୁ ପାଠପଢ଼ା ଛାଡ଼ିଥିଲେ । ବାରମ୍ବାର ଇଂରେଜ ସରକାରଙ୍କ ଦ୍ୱାରା ଗିରଫ ହୋଇ ଜେଲ ଦଣ୍ଡ ଭୋଗ କରିଥିଲେ । ବାସ୍ତବରେ ଜେଲଖାନା ହିଁ ଥିଲା ତାଙ୍କ ପାଇଁ ବିଶ୍ୱବିଦ୍ୟାଳୟ । ଏହି କାରାଗାର ମଧ୍ୟରେ ପଣ୍ଡିତ ଜବାହାରଲାଲ ନେହରୁଙ୍କ 'ବିଶ୍ୱ ଇତିହାସ' ଓ 'ମୋ ଆତ୍ମକାହାଣୀ' ଗ୍ରନ୍ଥ ସେ ଓଡ଼ିଆ ଭାଷାରେ ଅନୁବାଦ କରିଥିଲେ ।

୧୯୪୦ରୁ ୧୯୪୮ ମସିହା ପର୍ଯ୍ୟନ୍ତ ସେ ଥିଲେ ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟ । ୧୯୪୬–୪୭ରେ ସେ ଉତ୍କଳ ପ୍ରଦେଶ କମିଟିର ସାଧାରଣ ସଂପାଦକ ଭାବରେ ନିର୍ବାଚିତ ହୋଇଥିଲେ । କିନ୍ତୁ ଭାରତ ସମାଜବାଦୀ ଆନ୍ଦୋଳନ ସଂଗଠିତ କରିବା ପାଇଁ ୧୯୪୭ରେ କଂଗ୍ରେସରୁ ଇସ୍ତଫା ଦେଇଥିଲେ । ୧୯୫୨ରେ ସୋସଲିଷ୍ଟ ପାର୍ଟି ସଭ୍ୟ ଭାବରେ ରାଜ୍ୟସଭାକୁ ଏବଂ ୧୯୫୭, ୧୯୬୨ ଓ ୧୯୬୭ ମସିହାରେ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ୧୯୬୨ରୁ ୧୯୭୦ ମସିହା ପର୍ଯ୍ୟନ୍ତ ସେ ଥିଲେ ଲୋକସଭାରେ ପ୍ରଜା-ସୋସଲିଷ୍ଟ ଦଳର ଦଳପତି ।

ତାଙ୍କର ଲିଖିତ ଗ୍ରନ୍ଥ "ମୋ ଜୀବନ ସଂଗ୍ରାମ", "ଜୟପ୍ରକାଶଙ୍କ ଜୟଯାତ୍ରା" "ଅଗଷ୍ଟ ବିପ୍ଳବ" ଓ "ରାଜନୀତି ବିଚାର" ମୌଳିକ ରାଜନୈତିକ ଓ ଆତ୍ମଜୀବନୀ ଗ୍ରନ୍ଥ ଭାବରେ ଉଚ୍ଚ ପ୍ରଶଂସିତ ।